


ଇଲାକ ପୁସ୍ତକମାଳା -୨୨

# ହେ ଅତୀତ କଥା କହ

ଲେଖକ :
**ଡକ୍ଟର ଅରବିନ୍ଦ ପଟ୍ଟନାୟକ**

ପ୍ରକାଶକ :
**ଦୀପଙ୍କର ପଟ୍ଟନାୟକ**
ଏ/୧୧ ଗ୍ରାଉଣ୍ଡଫ୍ଲୋର, ଲର୍ଡ଼ ଗୁଞ୍ଜନ ପ୍ୟାଲେସ୍
ଭୁବନେଶ୍ୱର - ୧୦

ମୁଦ୍ରକ :
**କେଦାର ପ୍ରିଣ୍ଟିଂ ପ୍ରେସ୍**
୧୭୦, ୟୁନିଟ୍-୯ (ଫ୍ଲାଟ୍) ଭୁବନେଶ୍ୱର
ପ୍ରକାଶନ - ୨୦୦୨

ମୂଲ୍ୟ - ୧୦୦.୦୦ଟଙ୍କା
(ଶହେ ଟଙ୍କା ମାତ୍ର)

## HE ATITA KATHA KAHA

Writer -
**Dr. Arabinda Pattanaik**

Publisher -
**Deepankar Pattanaik**
A/11, Ground Floor,
Lord Gunjan Palace,
Rasulgarh, Bhubaneswar-10


Printed at :
**KEDAR PRINTING PRESS**
170, Unit-9 (Flat) Bhubaneswar

Price - **Rs. 100/-** (One Hundred only)

# ମୁଖବନ୍ଧ

''ହେ ଅତୀତ କଥା କହ'' ଉଣିଶଟି ବିଶ୍ଳେଷଣାତ୍ମକ, ସୁଖ ପାଠ୍ୟ ପ୍ରବନ୍ଧକୁ ଘେନି ସଂକଳିତ ହୋଇଛି । ଶେଷ ପ୍ରବନ୍ଧର ନାମ ଅନୁସାରେ ସଂକଳନର ନାମ କରଣ କରାଯାଇଛି । ପୁରାଣ, ପରମ୍ପରା, ଲୋକ ଚଳଣି ଓ ବିଶ୍ୱାସଧାରା ଉପରେ ଆଧାରିତ ଏହି ପ୍ରବନ୍ଧ ଗୁଡ଼ିକ ବିଭିନ୍ନ ସମୟରେ ଭୁବନେଶ୍ୱର, ସମ୍ବଲପୁର, ରାଉରକେଲାରୁ ପ୍ରକାଶିତ ଅମୃତାୟନ, ଆଗାମୀ ଶତାବ୍ଦୀ, ଶ୍ରୀରାମ ମନ୍ଦିର ପତ୍ରିକା, ଯତ୍ କିଞ୍ଚିତ୍, ପ୍ରଗତି ଉତ୍କଳ ସଂଘର ସ୍ମରଣିକା ପାଇଁ ଲେଖାଯାଇଥିଲା । ତେଣୁ ଏଗୁଡ଼ିକ ସମୟ, ପ୍ରକାଶ ମାଧ୍ୟମ ତଥା ସଂପାଦକ ବା ଉଦ୍ୟୋକ୍ତାମାନେ ଲେଖା ଚାହିଁବା ବେଳେ, ସେତେବେଳକୁ ସମ୍ଭବତଃ, ଲେଖକଙ୍କର ଚିନ୍ତା ବା ମନରେ ଯାହା ଧରାପଡ଼ିଛି, ତାକୁ ହିଁ ଅବଲମ୍ବନ କରି ଲେଖା ଯାଇଛି । ଏଥିରେ ଲେଖକଙ୍କର ମୌଳିକ ଚିନ୍ତା, ବ୍ୟାପକ ଅଧ୍ୟୟନ ଓ ଗଭୀର ଅନୁଧ୍ୟାନ ପ୍ରତିଫଳିତ ହୋଇଛି । ଆମ ସଂସ୍କୃତିର ଅବବୋଧରେ ଏହି ସଂକଳନଟି ସହାୟକ ହେବ ବୋଲି ମୋର ଦୃଢ଼ ବିଶ୍ୱାସ । ଏହାର ଲେଖକ ଡକ୍ଟର ଅରବିନ୍ଦ ପଟ୍ଟନାୟକ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଜଣେ କୃତବିଦ୍ୟ ଲେଖକ । ସେ ଏହାର ପ୍ରକାଶ ଦାୟିତ୍ୱ ତଥା ସ୍ୱତ୍ୱ ଭାଷା ସାହିତ୍ୟ ସଂସ୍କୃତି ପ୍ରତିଷ୍ଠାନ (ILLAC)କୁ ଅର୍ପଣ କରିଛନ୍ତି । ସେଥିପାଇଁ ଅନୁଷ୍ଠାନ ତରଫରୁ ତାଙ୍କୁ ଧନ୍ୟବାଦ ଜଣାଉଛି ।

**ଶ୍ରୀପଞ୍ଚମୀ**

**ତା ୧୭.୨.୨୦୦୨**

(signature)
ସଭାପତି
**ଭାଷା ସାହିତ୍ୟ ସଂସ୍କୃତି ପ୍ରତିଷ୍ଠାନ**
ଭୁବନେଶ୍ୱର

# କୃତଜ୍ଞତା

କୃତଜ୍ଞତା ତ ବୋଝ ଉତାରିବା ନୁହେ, ଏକ ମଧୁର ସ୍ମୃତି । ଉପକାରର ସ୍ମରଣ । ସଂକ୍ଷିପ୍ତ ପ୍ରବନ୍ଧ ସଂକଳନ ପାଇଁ ବିଧାଡ଼ି ଲେଖିବା ବେଳେ କୃତଜ୍ଞତା ସ୍ୱୀକାର କରିବା ଗୋଟିଏ ପ୍ରୀତିକର କର୍ତ୍ତବ୍ୟ । ଏଥିରେ ସଂକଳିତ ପ୍ରବନ୍ଧ ଭିତରୁ ସମ୍ବଲପୁରରୁ ପ୍ରକାଶିତ ସ୍ମରଣିକା - ଯତ୍‌କିଞ୍ଚିତ୍‌ରେ ପାହାଡ଼, ରାଉରକେଲାରୁ ପ୍ରକାଶିତ ପ୍ରଗତି ଉତ୍କଳ ସଂଘ ସ୍ମରଣିକାରେ - ଗୋରୁ ଖୋଜା, ଭୁବନେଶ୍ୱର ଶ୍ରୀରାମ ମନ୍ଦିର ପ୍ରତ୍ରିକାରେ - ରାମେଷ୍ଟ ଫାଲ୍‌ଗୁନି ସଖା, ଅମୃତାୟନରେ - ଦୀପଂ ଜ୍ୟୋତିଃ ପ୍ରକାଶିତ ହୋଇଛି । ଅବଶିଷ୍ଟ ପ୍ରବନ୍ଧ ଗୁଡ଼ିକ ଆଗାମୀ ଶତାବ୍ଦୀର କେତେକ ସଂଖ୍ୟାରେ ପ୍ରକାଶ ପାଇଛି । ମୁଁ ଏହି ପ୍ରକାଶନ ଗୁଡ଼ିକ ନିକଟରେ କୃତଜ୍ଞ । ଏହି ପ୍ରସଙ୍ଗରେ ଆଗାମୀ ଶତାବ୍ଦୀର ପ୍ରତିଷ୍ଠାତା ସଂପାଦକ ବନ୍ଧୁ ସେକ୍ ମତ୍‌ଲୁବ୍ ଅଲ୍ଲୀଙ୍କୁ ସ୍ୱତନ୍ତ୍ର ଭାବରେ କୃତଜ୍ଞତା ଜଣାଉଛି । ଏହି ସଂକଳନ ପାଇଁ ବଛା ହୋଇଥିବା ପ୍ରବନ୍ଧମାନଙ୍କ ମଧ୍ୟରୁ ଶେଷ ପ୍ରବନ୍ଧଟିର ନାମ 'ହେ ଅତୀତ କଥା କହ' । ଏହି ନାମଟି ପ୍ରଫେସର ୰ ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧିଙ୍କର ଗୋଟିଏ ପ୍ରବନ୍ଧ ପଢ଼ିବା ବେଳେ ମନକୁ ଆସିଥିଲା । ତେଣୁ ମୁଁ ତାଙ୍କ ଲେଖା ନିକଟରେ ଋଣ ସ୍ୱୀକାର କରୁଛି ।

ଲେଖକ ଭାବରେ ମୋର ସ୍ୱତ୍ୱ ଭାଷା ସାହିତ୍ୟ ସଂସ୍କୃତି ପ୍ରତିଷ୍ଠାନ (Institute of Language Literature and Culture ସଂକ୍ଷିପ୍ତ ନାମ ILLAC)କୁ ଅର୍ପଣ କରିଛି । ଏହାର ସଭାପତି ଶ୍ରୀ ବିଘ୍ନରାଜ ପଟେଲ ଏଥିପାଇଁ ଆଗ୍ରହ ପ୍ରକାଶ କରିଛନ୍ତି ଓ ମୁଖବନ୍ଧ ଲେଖିଛନ୍ତି । ତାଙ୍କୁ ମୋର କୃତଜ୍ଞତା ଜଣାଉଛି । ଏହାର ପ୍ରକାଶକ ଶ୍ରୀ ଦୀପଙ୍କର ପଟ୍ଟନାୟକ ଭାଷା ସାହିତ୍ୟ ସଂସ୍କୃତି ପ୍ରତିଷ୍ଠାନ (ଇଲାକ)ର ଜଣେ ପ୍ରତିଷ୍ଠାତା ସଭ୍ୟ । ଏହାର ଶୁଦ୍ଧ ମୁଦ୍ରଣ ଦାୟିତ୍ୱ ତୁଲାଇଛନ୍ତି ଶ୍ରୀ ନିରଞ୍ଜନ ପଣ୍ଡା । ଏ ଦୁହିଁଙ୍କୁ ଧନ୍ୟବାଦ ଜଣାଉଛି ।

ଲେଖକର ବଳ ଓ ସମ୍ବଳ ତା'ର ପାଠକମାନେ । ଏହା ସେମାନଙ୍କ ଭିତରୁ କାହାରି ବି ମନକୁ ପାଇଲେ, କାମରେ ଲାଗିଲେ ଲେଖା ସାର୍ଥକ ହେବ ।

**ଶ୍ରୀପଞ୍ଚମୀ** **ଲେଖକ**

ତା ୧୭.୨.୨୦୦୨

# ସୂଚୀ

# ପାହାଡ଼

ପାହାଡ଼,

ଇଆରି ଉପରେ କେତେ କଥା, କେତେ ଗୀତ, କେତେ ପୁରାଣ ଉପାଖ୍ୟାନ ।

ହନୁମାନ ଗୋଟିଏ ହାତରେ ପାହାଡ଼, ଆର ହାତରେ ଗଦା ଧରି ଉତ୍ତାନ ପାଦ ହୋଇ ପ୍ଳବମାନ ଭଙ୍ଗୀରେ ଥିବା କେତେ ଚିତ୍ର ଦେଖିଛି । ଲକ୍ଷ୍ମଣ



ଶକ୍ତିଭେଦ- ହନୁମାନ ଗନ୍ଧମାର୍ଦ୍ଦନ ପର୍ବତ ଆଣିବା ପୁଣି ବାଟରେ ଭରତଙ୍କ ବାଟୁଳି ମାଡ଼ରେ ତଳକୁ ଖସିବା, ପେର୍ ସୁସ୍ଥ ହୋଇ ଫେରି ରାତିକ ଭିତରେ ଯଥା ସ୍ଥାନରେ ପହଞ୍ଚି ଯିବାର କଥା ଶୁଣିବାକୁ ସୁଖ ଲାଗୁଥିଲା । ଚିତ୍ରଟିଏ ଦେଖିଲେ ପିଲାଦିନେ ଦେଖିଥିବା ରାମଲୀଳାର ଅଭିନୟ ଆଖି ଆଗରେ ଦିଶିଗଲାପରି ଲାଗେ । କାନରେ ସତେ ଅବା ବାଜିଯାଏ ତହିଁର ପଦେ ପଦେ ଗୀତ । ଇଏତ ରାମାୟଣ ପୁରାଣର କଥା । ଆଉ ଏକ ଚିତ୍ର, ଭାଗବତ ପୁରାଣର ଆଉ ଗୋଟିଏ କଥା ମନେ ପକାଇ ଦିଏ ।

ନନ୍ଦନନ୍ଦନ କୃଷ୍ଣ ତ୍ରିଭଙ୍ଗ ଠାଣିରେ ଠିଆ ହୋଇ, ଗୋଟିଏ ହାତରେ ମୂରଲୀ ଏବଂ ଆର ହାତର କାଣିଆଙ୍ଗୁଠିରେ ଗୋଟାଏ ପାହାଡ଼କୁ ଛତା ଭଳି ଟେକି ଧରିଥିବାର ଚିତ୍ରଟି ବଡ଼ ମନଘେନା । ଇଏ ହେଲେ 'ମିରାକେ

ପ୍ରଭୁ ଗିରିଧରନାଗର' । ଆଉ ସେ ଧରିଥିବାର ପାହାଡ଼ଟି ହେଲା 'ଗିରିଗୋବର୍ଦ୍ଧନ' ।

ଦୁଇଟି ପାହାଡ଼ : ଗୋଟିଏ ଗନ୍ଧମାର୍ଦ୍ଦନ, ଆରଟି ଗୋବର୍ଦ୍ଧନ । ଗୋଟିଏ ବଞ୍ଚାଇଲା ଯୁଦ୍ଧ କରୁକରୁ ଇନ୍ଦ୍ରଜିତର ଶକ୍ତିଭେଦରେ ମୂର୍ଚ୍ଛା ଯାଇଥିବା ମହାବୀର



ଲକ୍ଷ୍ମଣଙ୍କୁ ଏବଂ ଆରଟି ରକ୍ଷାକଲା ଇନ୍ଦ୍ରଙ୍କ କୋପରୁ ଗୋପକୁ । କାର୍ତ୍ତିକ ମାସରେ ଗିରିଗୋବର୍ଦ୍ଧନ ପୂଜା ତିଥି ପଡ଼େ । ଏହା ମଧ୍ୟ ଗୋପାଳକୁଳର ବଡ଼ ପର୍ବ । ଇଆ ସହିତ ଗୁନ୍ଥା ହୋଇଥିବା ଉପାଖ୍ୟାନଟି ବଡ଼ ଚିତ୍ତାକର୍ଷକ ।

ଦିନେ କୃଷ୍ଣ ସାଙ୍ଗସାଥିଙ୍କ ମେଳରେ ଯମୁନା କୂଳରେ ବୁଲୁଥିଲେ । ଶୁଣିଲେ କ'ଣ ଗୋଟିଏ ମଉଛବର ଆୟୋଜନ ଚାଲିଛି । ସେଠାକୁ ଗଲେ । ଦେଖିଲେ - ଗୋପାଳମାନେ ବହୁ ସମ୍ଭାର ଠୁଳ କରିଛନ୍ତି । ସେଥିରେ ଇନ୍ଦ୍ରଦେବତାଙ୍କୁ ଖୁସି କରିବାକୁ ଯଜ୍ଞଟିଏ ହେବା କଥାଟା କୃଷ୍ଣଙ୍କ ମନକୁ ପାଇଲା ନାହିଁ । ଅପସନ୍ଦ ଲାଗିଲା । କହିଲେ - ''କିଓ, ଇନ୍ଦ୍ର କିଏ ? ତା'ଠି ଆମର କାମ କ'ଣ ? ତା' ପ୍ରୀତି ପାଇଁ ପୁଣି ଏତେ ଭିଆଣ, ଏତେ ବ୍ୟବସ୍ଥା ? କାହିଁକି ? କଅଣ ପାଇଁ ଏତେ ଆଡ଼ମ୍ବର, ଏତେ ଆୟୋଜନ ମ ?'' ଯଜ୍ଞର ଆୟୋଜନରେ ମାତିଥିବା ବୟସ୍କ ଗୋପାଳମାନେ ବକା ଶକଟା ବିଧ୍ୱଂସୀ କୃଷ୍ଣଙ୍କ କଥା ଶୁଣିଲେ । କ'ଣ ବା ଉତ୍ତର ଦିଅନ୍ତେ ସେମାନେ । ତାଙ୍କୁ ବରଗି ଦେଲେ ନନ୍ଦରଜାଙ୍କ ପାଖକୁ । ବାପାଙ୍କୁ କୃଷ୍ଣଙ୍କର ସେହି ପ୍ରଶ୍ନ ।

ନନ୍ଦ ବଡ଼ ଅଡୁଆରେ ପଡ଼ିଲେ । କାହ୍ନୁ ଛାଡ଼ିବା ପିଲା ନୁହେଁ । ତେଣେ ପୁଣି ଇନ୍ଦ୍ର ବିଗଡ଼ିଗଲେ ମହା ଅଘଟଣ ଘଟିଯିବ । ଅବସ୍ଥାଟା ସତେ ଯେମିତି 'ଗାଈ ମାଇଲେ ମଲି, ଗାଈ କି ମାଇଲେ ମଲି' ।

କାହ୍ନୁଙ୍କ ପ୍ରଶ୍ନ ଓ ପରାମର୍ଶ କାଟିବା କଷ୍ଟ । ସେ କହୁଛନ୍ତି - ଅକାରଣ ଏ ଆୟୋଜନ, ଇଆ ପଛରେ କୌଣସି ଯୁକ୍ତି ଯୁକ୍ତ କାରଣ ନାହିଁ । ଏତେ ଗୁଡ଼ାଏ ଜିନିଷ ବୃଥାରେ ନଷ୍ଟକରି ଦିଅ ନାହିଁ । କୃଷ୍ଣଙ୍କର ମୁଣ୍ଡରୁ ଝୁଙ୍କଟା ଖସାଇବାକୁ ନନ୍ଦ ଉପାୟ ପାଉଥିଲେ । ଚାଲିଲା ବାପ ପୁଅଙ୍କ ଭିତରେ ଉକ୍ତି ପ୍ରତ୍ୟୁକ୍ତି ।

ନନ୍ଦ ବୁଝାଇଲେ- "ବାପାରେ, ଏମିତି କଥା କହନ୍ତି ନାହିଁ । ଇନ୍ଦ୍ର ଆମର ଦେବ୍‌ତା, ତାଙ୍କର ପ୍ରୀତି ପାଇଁ ପରମ୍ପରା କ୍ରମେ ଆମେ ଏଇ ଯଜ୍ଞ କରିଆସୁଛୁ । କାଳ କାଳ ଧରି ଏହା ଚଳିଆସୁଛି । ଇନ୍ଦ୍ର ସନ୍ତୁଷ୍ଟ ହେଲେ ମେଘ ବରଷିବ । ପାଳକ ଭଲ ହେବ । ପୃଥିବୀ ଶସ୍ୟଶାଳିନୀ ହେବ । ସେ ରାଗିଗଲେ ଅପାଳକ ପଡ଼ିବ । ଫସଲ ଉଧେଇବ ନାହିଁ । ପାହାଡ଼ କି ପଡ଼ିଆରେ ଘାସ ବକଟେ ସୁଦ୍ଧା କଅଁଳିବ ନାଇଁ । ପୂର୍ବ କାଳରୁ ଚଳି ଆସୁଥିବା ବିଧିବିଧାନମାନ ବନ୍ଦ କରିଦେବା ଅନୁଚିତ । କୃପଣ ପଣରେ ବନ୍ଦ କରିଦେଲେ ବୋଲି ଲୋକେ କୁହା କୁହି ହେବେ । ନାନା ବିପ୍ରାତ ଘଟିବ । ତୁ ବାଳୁତ ବୁଦ୍ଧି ଛାଡ଼ । ଏମିତି କଥା କହନା" । କୃଷ୍ଣଚନ୍ଦ୍ର ଭାବିଥିବେ - "ମୁଁ ସିନା ବାଳୁତ, ଏମାନେ ବାତୁଳ ।" ପରମ୍ପରା ନାମକ ଭୁତଟିକୁ ଏମାନଙ୍କ ମନରୁ ଛଡ଼ାଇବାକୁ ହେବ । ଏମାନଙ୍କ ଭିତରେ ପଶି, ବସାବାନ୍ଧି ଯାଇଥିବା 'ଡର'ଟିକୁ ଦୂରକରିବାକୁ ପଡ଼ିବ ।"

ନଟବର କୃଷ୍ଣ ଏବଂ ନଟରାଜ ଶିବଙ୍କ ମଧ୍ୟରେ ପାର୍ଥକ୍ୟ ହେଉଛି- ଲାଳିତ୍ୟ ଓ ଉଗ୍ରତା । କୃଷ୍ଣଙ୍କୁ ବଂଶୀଧର, ଗିରିଧର ଓ ଚକ୍ରଧର ତିନି ରୂପରେ ଉପସ୍ଥାପିତ କରାଯାଇଛି । ଭାଗବତ ପୁରାଣ ଓ ମହାଭାରତ ଉଭୟରେ ତାଙ୍କର ଲୀଳା ଓ ଭୂମିକା ବିଶ୍ଳେଷଣ କଲେ, ତାଙ୍କଠାରେ ଲଳିତ ଓ ଉଗ୍ରଦୁଇଟିଯାକ ଗୁଣ ଥିବାର ଲକ୍ଷ୍ୟ କରାଯିବ, ନଟରାଜ ଶିବଙ୍କ ତାଣ୍ଡବର ପ୍ରଚଣ୍ଡତା ପାର୍ବତୀ ଓ ଗଣେଶଙ୍କ ଉପସ୍ଥିତିରେ କମିଯାଇ ଲଳିତ ହୋଇ ଆସିବାର କେତେକ ପ୍ରତ୍ନତାତ୍ତ୍ୱିକ ଦୃଷ୍ଟାନ୍ତ ଅଛି । ନନ୍ଦଙ୍କ ନିକଟରେ କୃଷ୍ଣ ନମ୍ର, ଅଥଚ ଦୃଢ଼ ହେବାର ଗୋଟିଏ ଦୃଷ୍ଟାନ୍ତ ହେଉଛି ଇନ୍ଦ୍ର ଯଜ୍ଞ ବନ୍ଦ କରାଇବାର ପ୍ରସଙ୍ଗ । କୃଷ୍ଣ, ଗୋପାଳମାନଙ୍କ ମନରୁ 'ଭୟ' ଦୂର କରିବାର ନିଷ୍ପତ୍ତି ନେଇଛନ୍ତି । ଗୋଟାଏ ଜାତିକୁ ବଢ଼ିବାକୁ ହେଲେ, ସମ୍ମାନର ସହିତ ବଞ୍ଚିବାକୁ ହେଲେ, ପ୍ରଥମେ "ନିର୍ଭୟ' ହେବାକୁ ପଡ଼ିବ । ଆଉ ଗୋଟାଏ ଦୋଷ - 'ପରମ୍ପରା' ପ୍ରତି ଦୁର୍ବଳତା । ଶ୍ରେୟ ଓ ପରିସ୍ଥିତିର କଷଟିରେ ପରମ୍ପରାକୁ ରଖିବାକୁ ହେବ । ଯେଉଁତକ ବା ଯାହା ଯାହା କରଣୀୟ

ତାହା ସବୁଦିଗରୁ ବୁଝିବିଚାରି ସ୍ଥିର କରିବାକୁ ହେବ । ନନ୍ଦ ଓ କୃଷ୍ଣଙ୍କ ଉକ୍ତି ପ୍ରତ୍ୟୁକ୍ତି ଭିତରୁ ଏହା ବାହାରୁଛି ।

ନନ୍ଦଙ୍କ ସହିତ ଆଲୋଚନା ପ୍ରସଙ୍ଗରେ କୃଷ୍ଣ ଦୁଇ ପ୍ରକାର ଲୋକଙ୍କର ଦୃଷ୍ଟାନ୍ତ ଦେଇ କହିଛନ୍ତି -

ଜ୍ଞାତ୍ୱାଜ୍ଞାତ୍ୱାଚ କର୍ମଣି ଜନୋଽୟଃମନୁତିଷ୍ଠତି
ବିଦୁଷଃ କର୍ମସିଦ୍ଧିଃ ସ୍ୟାତ୍ତଥା ନାବିଦୁଷୋ ଭବେତ୍.
ତତ୍ର ତାବତ୍ କ୍ରିୟାଯୋଗୋ ଭବତାଂ କିଂ ବିଚାରିତଃ
ଅଥବା ଲୌକିକସ୍ତନ୍ମେ ପୃଚ୍ଛତଃ ସାଧୁ ଭଣ୍ୟତାମ୍ ।

ଗୋଟିଏ କାମ କଲା ଆଗରୁ ଭଲ ଭାବରେ ଭାବିଚିନ୍ତି ତା'ର ପରିଣତି କଳନା କରି, ସେଥିରେ ଲାଗିହେବା, ପୁଣି ମଧ୍ୟ ଏପରି ନ କରି, ସମସ୍ତେ ଯାହା କରୁଛନ୍ତି ଆମେ ବି ସେଇଆ କରିବା ବୋଲି ମନକୁ ବାଗେଇ ଦେଇ ତାକୁ ଯଥାର୍ଥ ବୋଲି ମାନିଯାଇ ସେପରି କାମଟିରେ ଲାଗିଯାଇହେବ । ଏ ଦୁଇଟାଯାକ ସମ୍ଭବ । କିନ୍ତୁ ଫଳ ବା ପରିଣତି ଦୃଷ୍ଟିରୁ ଦେଖିଲେ, ଯେଉଁମାନେ ସବୁଦିଗରୁ ବୁଝିବିଚାରି ପରିଣତି ବିଷୟରେ କଳନା କରି କାମ କରନ୍ତି, ସେଇମାନେ ହିଁ ସଫଳତା ବା ସୁପରିଣତି ଲାଭ କରିବେ । ଆପଣ କ'ଣ କରୁଛନ୍ତି ?

କୃଷ୍ଣ ନନ୍ଦଙ୍କୁ ବୁଝାଇ ଦେଲେ ଯେ, ଇନ୍ଦ୍ର ଗୋଟିଏ ପଦ ବା ପୋଜିସନ । ଏହା ତପୋଲବ୍ଧ ପଦ । ଇନ୍ଦ୍ର ଠାକୁର ନୁହଁନ୍ତି ।

ଇନ୍ଦ୍ର ଯେ ତପେ ବଡ଼ପଣ ।   ଜଗତ ବିଷ୍ଣୁର ଭିଆଣ ।।

ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତରେ କୃଷ୍ଣଙ୍କ ବକ୍ତବ୍ୟଟି ସୁନ୍ଦର ଭାବରେ ଫୁଟିଛି । ସେ 'ତପସ୍ୟା' କୁ ଗୋଟିଏ କର୍ମ ଏବଂ ଏପରି 'କର୍ମ' ମାନଙ୍କର ଫଳ ବିଷୟରେ କହିଛନ୍ତି -

ଏ ଜୀବ ନିଜ କର୍ମ ଫଳ । ଭୁଞ୍ଜଇ ରହି ଏ ଶୟଳ ।।
କର୍ମର ମତେ ଦୁଃଖ ସୁଖ । ଜନ୍ମ ମରଣ ହୁଏ ଦେଖ ।।
କର୍ମଟି ଦୁଃଖ ସୁଖ ଦାତା । ବିଶ୍ୱ ସଂସାରେ ବଳବନ୍ତା ।।
କର୍ମ ହୁଁ ନାହିଁ ଆନ ଦେବ । ଭୋ ତାତ କର୍ମ ପଦେ ସେବ ।।

ଯେଉଁଠି ଆମେ ଚଳପ୍ରଚଳ ହେଉଛେ, ଯେଉଁ ଭୂମି, ଯେଉଁ ନଦୀ, ଯେଉଁ ଗିରି ଆମ ଜୀବନର କର୍ମକ୍ଷେତ୍ର ହୋଇଛି, ସେଇ ଆମର ଦେବତା । କୃଷ୍ଣ ବୁଝାଇଛି -

ଗହନ ବନ ଆମ୍ଭଘର । ଗୋରୁ ଚରାଇ ନଦୀ ତୀର ॥
ନିର୍ଝର ଜଳ ପାନ କରି । ଆମ୍ଭ ଦେବତା ବନ ଗିରି ॥
ତୁମ୍ଭର ଯଜ୍ଞ ଯେବେ ସତ । କହୁଛି ଶୁଣିବା ତଦନ୍ତ ॥
ଗୋରୁ ବ୍ରାହ୍ମଣ ପ୍ରତିପାଳ । ଯଜ୍ଞ କରିବା ଗିରିତଳ ॥
ପୂଜିବା ଗୋବର୍ଦ୍ଧନ ଶିର । ଯେ ଇନ୍ଦ୍ର-ଯଜ୍ଞର ବେଭାର ॥

ନନ୍ଦ ବୁଝିଗଲେ । ଇନ୍ଦ୍ରଯଜ୍ଞ ପାଇଁ ଆୟୋଜିତ ସମ୍ଭାରରେ ଗିରିଗୋବର୍ଦ୍ଧନ ପୂଜା କରାଗଲା । ଗୋପବାସୀମାନେ ନିଜର କର୍ମ ଓ ଲୀଳା ଖେଳାର ସ୍ଥଳକୁ ଦେବତାର ଆସନରେ ବସାଇଲେ । କିନ୍ତୁ ପରିଣତି କଅଣ ହେଲା ?

ଇନ୍ଦ୍ର କୋପ କଲେ । ପ୍ରବଳ ବୃଷ୍ଟି ଓ ବଜ୍ରପାତରେ ଗୋପବାସୀଙ୍କୁ ଦଣ୍ଡଦେବାକୁ ଉଦ୍ୟତ ହେଲେ । କୃଷ୍ଣ ନିଜ କାଣି ଆଙ୍ଗୁଠିରେ ଗୋବର୍ଦ୍ଧନ ଗିରିକୁ ଟେକି ଧରିଲେ । ନିଜର ଜନ୍ମ ଓ କର୍ମ ଭୂମିକୁ ଊର୍ଦ୍ଧ୍ୱକୁ ଉଠାଇ, ତାରି ତଳେ ଆଶ୍ରୟ ଦେବାର ଏକ ପ୍ରତୀକାତ୍ମକ ପ୍ରକାଶ ହୁଏତ ହୋଇପାରେ ଏଇ ଉପାଖ୍ୟାନ । ଧର୍ମଧାରାର ଇତିହାସ ଦୃଷ୍ଟିରୁ ଏହା ମଧ୍ୟ ହୋଇପାରେ ବୈଦିକ ଦେବତା ଓ ବୈଦିକ ଯଜ୍ଞ ବିଧିର ଅବକ୍ଷୟ କାଳ । ବୈଦିକ ଯଜ୍ଞ ପରିବର୍ତ୍ତେ ଭକ୍ତି ମାର୍ଗର 'ପୂଜା' ବିଧି ପ୍ରଚଳନର ଆରମ୍ଭ କାଳ ବୋଲି ଏହାକୁ କୁହାଯାଇପାରେ । ସେ ଯାହା ହେଉ, ଉପାଖ୍ୟାନ ଅନୁସାରେ ଏହା ଥିଲା ସାତ ଦିନର ସଂଗ୍ରାମ ।

ଇନ୍ଦ୍ର ସପତ ଦିନ ବୃଷ୍ଟିକଲା । ଜଳଘାତେ ପଥର ବରଷିଲା ॥
କିନ୍ତୁ ହେଲା କଣ ?
ଇନ୍ଦ୍ର ହାରିଣ ଶରଣ ପଶିଲା । ଗୋପେ ଗୋବିନ୍ଦ ନାମ ଦେଇଗଲା ॥

ଜିତିଗଲେ ଗିରଧର ଗୋପେନ୍ଦ୍ର । କୃଷ୍ଣ ଖାଲି ଜିତିଲେ ନାହିଁ ତ; ଗୋପବାସୀଙ୍କୁ 'ଅଭୟ' ଦାନ କଲେ । ଗୋଟାଏ ଜାତି ବା ଜନଗୋଷ୍ଠୀକୁ ଏହା ଏକ ମହାନ ଦାନ । ଜାତି ଭିତରେ ଭୟ ଓ ଦାରିଦ୍ର୍ୟ ଥିବାଯାଏ, ଉତ୍ସାହ ଓ

ବୀରତ୍ୱର ସଞ୍ଚାର ହେବ ନାହିଁ । ଯଜ୍ଞ କଲାବେଳେ ସୁଦ୍ଧା ଆର୍ଯ୍ୟ ଜନଗୋଷ୍ଠୀ ପ୍ରାର୍ଥନା କରୁଥିଲେ -

କାଲେ ବର୍ଷତୁ ପର୍ଜନ୍ୟାଃ
ପୃଥିବୀ ଶସ୍ୟ ଶାଳିନୀ
ଦେଶୋଽୟଂ କ୍ଷୋଭ ରହିତଃ
ସଜ୍ଜନାଃ ସନ୍ତୁ ନିର୍ଭୟାଃ

ଦେଶ ବା ସମାଜରେ ସଜ୍ଜନମାନେ ନିର୍ଭୟ ନରହିଲେ ସଭ୍ୟତା ଓ ସଂସ୍କୃତିରେ ବିକୃତି ଓ ବିପର୍ଯ୍ୟୟ ପଶିଯାଏ । ମହାତ୍ମାଗାନ୍ଧୀଙ୍କ ପ୍ରାର୍ଥନା ରାମଧୂନ୍‌ରେ ଗୋଟିଏ ପଦ ଅଛି 'ନିର୍ଭୟ କର ପ୍ରଭୁ ରାଜା ରାମ ।'' ଗୋପବାସୀଙ୍କ ହୃଦୟରୁ ଭୟ ଦୂର କରି, ସେମାନଙ୍କ ଭିତରେ ଉତ୍ସାହ ଓ ବୀରତ୍ୱ ସଞ୍ଚାର କରାଇବାରେ କୃଷ୍ଣ ନେତୃତ୍ୱ ନେଇଥିଲେ । ଲୋକମାନଙ୍କ ଭିତରୁ ଭୟ ଓ ପରନିର୍ଭରତା ଦୂରକରି ଉତ୍ସାହ ଓ ସତ୍‌ସାହସ ସୃଷ୍ଟିକରିବା ତ ନେତାର ଦାୟିତ୍ୱ । ଗୋପବାସୀ କାଳ କାଳ ଧରି 'ଭୟରେ' ଇନ୍ଦ୍ରଙ୍କୁ ପୂଜା କରୁଥିଲେ । କୃଷ୍ଣ ସେ ଭୟ ଭାଙ୍ଗିଦେଲେ । 'ଇନ୍ଦ୍ରଯଜ୍ଞ' ପରିବର୍ତ୍ତେ 'ଗୋବର୍ଦ୍ଧନପୂଜା' ଚଳିଲା । ଗୋପାଳମାନେ ଗୋବର୍ଦ୍ଧନଙ୍କୁ ପୂଜା କଲେ ଭକ୍ତି ଓ କୃତଜ୍ଞତାରେ, ଭୟରେ ନୁହେଁ ।

ପାହାଡ଼,

ହିମାଳୟ କଥା କହୁନାହିଁ, ସେ ତ ନଗାଧିରାଜ; ପାହାଡ଼ ପର୍ବତମାନଙ୍କ ଭିତରେ ରାଜା, ପୁଣି ଦେବତାତ୍ମା ସିଏ । ପାର୍ବତୀ ତାଙ୍କର କନ୍ୟା, ନଟରାଜ ଶିବ ତାଙ୍କର ଜାମାତା । ତ୍ରିଶୂଳ ଓ ଡମ୍ବରୁ ଧର ନଟରାଜ ଶିବ, କୃଷ୍ଣଙ୍କ ପରି ମୟୂର ଚୂଳିଆ, ଗିରିଧର ନୁହନ୍ତି । ସେ ଚନ୍ଦ୍ରଚୂଡ଼, ଗଙ୍ଗାଧର । ଶିବଙ୍କର ଶ୍ୱଶୁର ହିମାଳୟ ବହୁ ଋଷି, ଗନ୍ଧର୍ବ ଦେବତାଙ୍କର ତପସ୍ୟା ଓ ଆଶ୍ରୟସ୍ଥଳ । ମୁଁ ଏଠାରେ ସେ ଦେବାତ୍ମା ହିମାଳୟ କଥା କହୁନାହିଁ । କହୁନାହିଁ ମଧ୍ୟ ଅଷ୍ଟକୁଳାଚଳ କଥା । କହୁଛି ଓ ଭାବୁଛି କେବଳ ଦୁଇଟି ପାହାଡ଼ ବିଷୟରେ । ତାହା ମହୀରୁହ ହେଲେ ମଧ୍ୟ ନଗ ବା ଅଚଳ ନୁହେଁ । ତା'ର ଉତ୍‌ଥାନ ଅଛି । ଗତି ଅଛି । ହନୁମାନଙ୍କ ବାମଭୁଜର ପାପୁଲିରେ ଗତି କରେ ଗନ୍ଧମାର୍ଦ୍ଦନ, ତାର ସମସ୍ତ ଔଷଧି ବୃକ୍ଷ, ଲତା, ଗୁଳ୍ମାଦି ସମେତ । କୃଷ୍ଣଙ୍କର ବାମଭୁଜ କନିଷ୍ଠାଙ୍ଗୁଳି ଅଗ୍ରରେ ଉତ୍‌ଥାନ ହୁଏ ଗୋବର୍ଦ୍ଧନର । ରାମ ଏବଂ କୃଷ୍ଣଙ୍କୁ କେନ୍ଦ୍ରକରି ଫିଟିଥିବା ଭକ୍ତିମାର୍ଗ କେତେ

ଆଖ୍ୟାନ, ଉପାଖ୍ୟାନ, ପର୍ବ, ଉତ୍ସବ ଧର୍ମକୃତ୍ୟକୁ ଘେନି ମହିମା ମଣ୍ଡିତ ହୋଇଛି । ତଥ୍‌ମଧ୍ୟରୁ ଏଇ ଦୁଇଟି ଉପଖ୍ୟାନରେ ବର୍ଣ୍ଣିତ 'ପାହାଡ଼' ହୁଏତ ହୋଇପାରନ୍ତି ଗୋଟିଏ ଗୋଟିଏ ପ୍ରତୀକ୍, ଏଇ ବାଟେ ପ୍ରସରି ପାରିଥାଏ କିଛି ବାର୍ତ୍ତା ଅଥବା ସଙ୍କେତ, ଏହା ସତ୍ତ୍ୱେ ମୋ ମନକୁ, କଳ୍ପନାକୁ, ଆଚ୍ଛନ୍ନ କରି ରହିଛି ଦୁଇଟି ପାହାଡ଼ ଓ ତାର ଉପାଖ୍ୟାନ ।

ମାତ୍ର ଦୁଇଟି ଚିତ୍ର । ଦୁଇଟି ପାହାଡ଼ । ଦୁଇଟି ଅବତାରର ଲୀଳା ପ୍ରସଙ୍ଗ । ଏଇ ଦୁଇଟିକୁ ଦେଖି ଦେଖି ଭାବୁଛି - କେତେ ବିରାଟ ଓ ମହାନ ଆମର ସଂସ୍କୃତି ! ଗୋଟିଏ ଗୋଟିଏ ଶବ୍ଦ, ଗୋଟିଏ ଗୋଟିଏ ଚିତ୍ର କେତେଦୂରକୁ ବିସ୍ତାରିତ କରି ନିଏ ଆମ ଦୃଷ୍ଟିର ଦିଗ୍‌ବଳୟକୁ । କେତେ କେତେ ଦୃଶ୍ୟ ଉନ୍ମୋଚିତ କରି ଧରି ରଖେ ଆମ ଆଖି ଆଗରେ !

--o--

# ଉଜି ଗାଆଁରେ କୁଜି

ଓଡ଼ିଆରେ ପ୍ରବାଦଟିଏ ଅଛି - ''ଉଜ୍ଜି ଗାଆଁରେ କୁଜି, ଯୋଉ ଗାଆଁରେ ଦିଅଁଦେବତା ନାହାନ୍ତି, ସେଠି ଶିଳପୁଆଟିଏ ପୂଜି ।'' ପୁରାକାଳରେ ବଟାବଟି ଯନ୍ତ୍ର (ଗ୍ରାଇଣ୍ଡର) ବାହାରି ନଥିଲେ କଅଣ ହେଲା, ବଟାବଟି କାମଟି ତ ଥିଲା । ସେଥିପାଇଁ ଦୁଇଟି ଛୋଟ ବଡ଼ ଶିଳା ବ୍ୟବହାର କରାଯାଉଥିଲା । ଗୋଟିଏ ଅପେକ୍ଷାକୃତ ବଡ଼ ଆୟତାକାର ପ୍ରସ୍ତର-ଫଳକ ଉପରେ ଛୋଟ ଲମ୍ବାଳିଆ ବର୍ତ୍ତୁଳାକାର ଶିଳା ବ୍ୟବହାର କରି ବିରି, ଚାଉଳ, ହଳଦି, ମସଲା ଆଦି ବଟା ବଟି କରାଯାଉଥିଲା । ସେଥି ଭିତରୁ ବଡ଼ଟିର ନାଁ ଶିଳ ଓ ଛୋଟଟିର ନା ଶିଳପୁଆ । ଏହା ଏବେ ବି ଚଳୁଛି । ପୂରାପୂରି ଅପ୍ରଚଳିତ ନୁହେଁ । କିନ୍ତୁ ଶିଳପୁଆ ତ ଶାଳଗ୍ରାମ ବା ନାରାୟଣ ଶିଳାନୁହେଁ, ତେବେ ତାକୁ ଦିଅଁ ଦେବତାଙ୍କ ପ୍ରତୀକ ବା ପ୍ରତିମାର ବିକଳ୍ପ ରୂପେ ସ୍ଥାପନ କରି ପୂଜିବାର କଥା ଉଠିଲା କେମିତି ଓ କାହିଁକି ? ପ୍ରବାଦଟିର ବ୍ୟଞ୍ଜନା ବା ବ୍ୟଙ୍ଗାର୍ଥ ଯାହା ହୋଇଥାଉ ପଛକେ, ଏଇଟି ବଡ଼ ଗହନ ପ୍ରଶ୍ନ ।

ମଣିଷ ଯେତେବେଳେ ନାନା ଗୋଷ୍ଠୀ ବା ଜାତି ଭାବରେ ଦଳ ଦଳ ହୋଇ ବଣରୁ ବଣ, ସ୍ଥାନରୁ ସ୍ଥାନ ବୁଲୁଥିଲା, ସେତେବେଳେ ପାହାଡ଼ରେ ଦୈବୀ ଶକ୍ତି ବିରାଜମାନ କରିଥିବାର କଳ୍ପନା କରୁଥିଲା । ସେତେବେଳେ ଦେବତାଙ୍କୁ ପାହାଡ଼ରେ ଓ ତାଙ୍କର ପ୍ରତୀକକୁ ଘରେ ବା ପାଖରେ ରଖି ପୂଜା କରିବାର ଧାରା ବୋଧ ହୁଏ ବାହାରି ଥିବ । ବରହୋର ବୋଲି ଛୋଟ ନାଗପୁର ଅଞ୍ଚଳର ଗୋଟିଏ ପାର୍ବତୀୟ ଭ୍ରମଣକାରୀ ଜାତି, ସେମାନଙ୍କ ଦେବତା ଭାବରେ ବୁରୁବୋଙ୍ଗା (ପାର୍ବତ୍ୟ ଦେବତା) ଏବଂ ଓରା ବୋଙ୍ଗା (ଗୃହ ଦେବତା)ଙ୍କୁ ପୂଜା କରୁଥିଲେ । କାଳକ୍ରମେ ଗୋଟିଏ ଗୋଟିଏ ଜନଗୋଷ୍ଠୀ ବଣ ଜଙ୍ଗଲ କାଟି ନଗର ଜନପଦ ବସାଇ ଘରଦ୍ୱାର ତୋଳି ରହିଛନ୍ତି । ସଭ୍ୟତା ପାଦେ ପାଦେ ଆଗେଇଛି । ତା' ସହିତ ପୁରୁଣା ବିଶ୍ୱାସ ଓ ପ୍ରଥା ବଦଳିଛି ବା ଉଦୟ ହୋଇଛି, ନୂଆ ନୂଆ ବିଶ୍ୱାସ ଓ ପ୍ରଥା ବା ରୀତି; ଏଇଠୁ ଖୋଜିବା ଆମ ପ୍ରଶ୍ନର ଉତ୍ତର ।

ଜନ ସମୂହ ଯେଉଁଠି ବସତି ସ୍ଥାପନ କରି ରହନ୍ତି, ସେହି ସ୍ଥାନକୁ ଅର୍ଥାତ୍ ଜନସମୂହ ବା ଜନଗ୍ରାମର ବସତିକୁ 'ଗ୍ରାମ' ଓ ଲୋକ ମୁଖରେ - "ଗାଁ" କୁହାଯାଏ । ଗାଁ ମୁଣ୍ଡରେ ଗୋଟିଏ ଗଛ ମୂଳେ ମାତୃଦେବୀଙ୍କର ପ୍ରତୀକ ରୂପେ ଶିଳାଟିଏ ସ୍ଥାପନ କରି ତହିଁରେ ଚୁଆ, ହଳଦି, ସିନ୍ଦୂର ଲେପନ କରି ଗ୍ରାମଦେବୀ ଭାବରେ ପୂଜା କରାଯାଏ । ଇଏ ହେଲେ ଗାଁର 'ମା' । ରକ୍ଷାକର୍ତ୍ତ୍ରୀ । ରାତିରେ ଗାଁକୁ ଜଗିବେ, ଗାଁ ସାରା ବୁଲିବେ । ସେଥିପାଇଁ ତାଙ୍କ ପାଖରେ ଘୋଡ଼ା, ହାତୀ, ବାଘ ଆଦି ବାହନ ମାଟିରେ ଗଢ଼େଇ ପୋଡ଼େଇ ସେଇ ପୂଜା ସ୍ଥାନରେ ତାଙ୍କରି ଉଦ୍ଦେଶ୍ୟରେ ସମର୍ପଣ କରାଯାଇଥାଏ । ଗାଁ ଲୋକେ ତାଙ୍କୁ 'ମାଆ' ବୋଲି ମାନନ୍ତି ।

'ଲୋକେ' କହିଲେ ଯାହା ବୁଝାଏ, ସେଇ 'ଲୋକେ' ବା ମାମୁଲି ମଣିଷମାନେ ରଜା, ମନ୍ତ୍ରୀ ସାଧବ କଟୁଆଳ ନଥିଲେ । ସେମାନେ ଅତି ସାଧାରଣ ସ୍ତରର ମଣିଷ । 'ଗ୍ରାମଦେବୀ' ସେହି ଲୋକମାନଙ୍କ ଦ୍ୱାରା ପ୍ରତିଷ୍ଠିତା, ପୂଜିତା ଦେବୀ । ତେଣୁ ଲୋକଦେବୀ । ବୋଧହୁଏ ସେଥିପାଇଁ ଗ୍ରାମଦେବୀମାନଙ୍କର ବିଜେସ୍ଥଳୀ ଗୋଟିଏ ଗୋଟିଏ ଗଛମୂଳ । ସେଠି ତାଙ୍କ ପାଇଁ ଖୁବ୍ ହେଲେ ଚଉତରାଟିଏ ତିଆରି ହୋଇଥାଏ । କିନ୍ତୁ ଦେବାଳୟ, ବୃହତ୍ ଆକାରର ବେଢ଼ା, ପୂଜା ବିଧିର ଆଟୋପ ଆଡ଼ମ୍ବର ନଥାଏ । କେବେ କୌଣସି ଅବସ୍ଥା ସମ୍ପନ୍ନ ଧନାଢ଼୍ୟ ବ୍ୟକ୍ତିଙ୍କର ମାନସିକ ପୂରଣ ହେଲେ, ସେଠି ହୁଏତ ଗୃହ ଅଥବା ମନ୍ଦିର ନିର୍ମାଣର ସମ୍ଭାବନା ଉଠିଥାଏ ।

ଗାଁ ତ ଖାଲି ମାମୁଲି ମଣିଷଙ୍କୁ ଘେନି ଗଠିତ ହୋଇ ନଥାଏ । ସେଠି ନାନାସ୍ତରର, ନାନା ଜାତିର, ବୃତ୍ତିର ଓ ସାମର୍ଥ୍ୟର ମଣିଷ ବସବାସ କରନ୍ତି । ସେଥିଲାଗି କୁହାଯାଇଛି "ସହସ୍ର ଛୁଞ୍ଚିରେ ଶାବଳ ହୁଏ ନାହିଁ କି ସହସ୍ର ମୂଳିଆଁରେ ଗାଁ ହୁଏ ନାହିଁ ।"

ଗାଁ ମାନଙ୍କରେ ହୁଏତ ପରବର୍ତ୍ତୀ କାଳରେ ଶିବ, ବିଷ୍ଣୁ ବା ଅନ୍ୟ କୌଣସି ଦେବଦେବୀଙ୍କର ମନ୍ଦିର କୋଉଠି କେମିତି ତିଆରି ହୋଇଥିବ । କିନ୍ତୁ ସେଇ ମନ୍ଦିରମାନଙ୍କରେ ପୂଜକ, ସେବକ ଆଦି ନିଯୋଗ, ନୈବେଦ୍ୟ, ପୂଜା, ଯାନିଯାତରା ଆଦିର ବିଧିବିଧାନ ଗ୍ରାମଦେବୀଙ୍କର ଆସ୍ଥାନ, ସେବକ, ପୂଜା ନୈବେଦ୍ୟ, ଭୋଗରାଗ, ଯାନି ଯାତରା ଆଦିର ବିଧିବିଧାନ ଠାରୁ ଭିନ୍ନ, ଅଥଚ ଦେଖିଲେ

ମନେହୁଏ, ଏହି ଗ୍ରାମଦେବୀ ଓ ତାଙ୍କର ଆସ୍ଥାନ 'ଗ୍ରାମ' ବା 'ସମୂହ' ଜନବସତିର ପ୍ରଥମ ପୂଜା ପୀଠ । ଏଇଠି ମନଭିତରୁ ପ୍ରଶ୍ନଟିଏ ଉଠି ଆସେ ଲୋକେ ମାଆ ବା ମାତୃଦେବୀଙ୍କ ପ୍ରତୀକ ସ୍ଥାପନ କରି ଯେପରି ପ୍ରଥମେ ତାଙ୍କୁ "ମାଆ" ବୋଲି ମାନି ନେଇ ଭକ୍ତି, ଭରସା ସମର୍ପି ଦେଇ ଥାଆନ୍ତି, ସେପରି 'ପିତୃ ଦେବତା'ଙ୍କର ପ୍ରତୀକଟିଏ ସ୍ଥାପନ କରି ତାଙ୍କୁ ଗାଁର 'ବାପା' ବୋଲି ମାନି ପୂଜା ଆସ୍ଥାନଟିଏ ମାନ କରି ନଥାନ୍ତି କାହିଁକି ? ଛାଡ଼ନ୍ତୁ, ସେକଥା ପଣ୍ଡିତମାନେ କହିବେ । କୌଣସି କୌଣସି ପଣ୍ଡିତଙ୍କ ମତ ହେଲା- ଏହା ମାତୃ କୈନ୍ଦ୍ରିକ ସମାଜର ଗୋଟିଏ ଗୋଟିଏ ଶଙ୍କୁ । ସେକଥା ଏବେ ଥାଉ, ଆମ ମନରେ ଆଦ୍ୟରୁ କଥାଟିଏ ଉଠିଥିଲା "ଉଜି ଗାଁରେ କୁଜି, ଯେଉଁ ଗାଆଁରେ ଦିଅଁ ଦେବତା ନାହାନ୍ତି, ସେଠି ଶିଳପୁଆଟିଏ ପୂଜି ।"

ଶିଳ-ଶିଳୁ ପୁଆ ପୂଜା ଯେ ନାହିଁ ତା ନୁହେଁ । ବୁଧେଇ ଓଷା, ଷଠି ଓଷାରେ ଶିଳ -ଶିଳପୁଆ ପୂଜାହୁଏ । ଶିଳକୁ 'ମା' ବା ମାତୃଦେବୀ ଓ ଶିଳପୁଆକୁ ତାଙ୍କର କାଖର ବା କୋଳର ସନ୍ତାନ ଭାବେ କଳ୍ପନା କରି ବା ମାନିନେଇ ପୂଜା କରାଯାଏ । ଏଇଠି ପୁଣି ପ୍ରଶ୍ନ ଉଠିପାରେ ମା' ଓ ତାଙ୍କ କୋଳର ସନ୍ତାନ ଭାବରେ ଶିଳକୁ ମାତୃଦେବୀ ବା ଶିଳପୁଆକୁ ପୁଅ ବା ପୁତ୍ର ବୋଲି କାହିଁକି କଳ୍ପନା କରାଯାଇଛି ? ବାପା, ଆଉ ତାଙ୍କ ପୁଅ ବୋଲି କ'ଣ କଳ୍ପନା କରାଯାଇପାରି ନଥାନ୍ତା ? ଏଇଠି ପଣ୍ଡିତମାନେ ପୁଣି ସେଇ ମାତୃକୈନ୍ଦ୍ରିକ ସଭ୍ୟତା ଓ ତା'ର ପ୍ରାଚୀନତା କଥା କହିବେ । ସଭ୍ୟତାର ଆଦି ସ୍ତରରେ କିପରି ମାତୃତ୍ୱ ଥିଲା ନିଶ୍ଚିତ ଏବଂ ସେଇଠୁ ସଭ୍ୟତାର କ୍ରମ ବିକାଶ ଆରମ୍ଭ ହୋଇଛି, ସେଇ କଥା ବଖାଣିବେ । ତା' ହୁଏତ ସ୍ୱାଭାବିକ, କାହିଁକି ନା, ପିତୃ କୈନ୍ଦ୍ରିକ ସଭ୍ୟତାର କ୍ରମ ବିକାଶ ଘଟିଛି ମାତୃ କୈନ୍ଦ୍ରିକ ସଭ୍ୟତାର ଉପରେ । ସେତେବେଳେ ହୁଏତ କେଉଁଠି କେମିତି ତାର ଗୁରୁତ୍ୱକୁ ସମାନ ମର୍ଯ୍ୟାଦାରେ ରଖି କିମ୍ବା ଟିକିଏ ନ୍ୟୁନ କରି ଦିଆଯାଇଛି । ଆମେ ଶିଳ୍ପ ଶିଳ୍ପର ବିକାଶ ପରେ ଯେଉଁ ସ୍ଥାପତ୍ୟ, ପ୍ରତିମା ଦେଖୁଛୁ, ସେଠି ହର-ପାର୍ବତୀ, ଲକ୍ଷ୍ମୀ-ନାରାୟଣ ଅଥବା ରାଧା କୃଷ୍ଣଙ୍କୁ ଦେଖୁଛୁ ସିନା, ପିତୃ ଦେବତାଙ୍କ କୋଳରେ କିମ୍ବା କାଖରେ ତାଙ୍କର ସନ୍ତାନମାନଙ୍କୁ ଧରାଯାଇଥିବାର ଦୃଶ୍ୟ ପ୍ରାୟ ମିଳୁନି । ଅନନ୍ତ ଶୟନରେ ଥିବା ବିଷ୍ଣୁ ଜଗତର ପିତା ବୋଲି ହିନ୍ଦୁ ପୁରାଣର କଳ୍ପନା । କିନ୍ତୁ ତାଙ୍କ ସମୀପରେ ଶ୍ରୀଦେବୀ, ଭୂଦେବୀ ବା ଲକ୍ଷ୍ମୀ, ସରସ୍ୱତୀ ଥାଆନ୍ତି । ତାଙ୍କ ନାଭିରୁ ଯେଉଁ ପଦ୍ମଫୁଲ

ଫୁଟିଥାଏ, ତାର ନାଡ଼ ଉଠିଯାଇଥାଏ ଅନେକ ଉର୍ଦ୍ଧ୍ୱକୁ ଏବଂ ତା' ଉପରେ ଆସୀନ ହୋଇ ଥାଆନ୍ତି ବ୍ରହ୍ମା । କିନ୍ତୁ ବ୍ରହ୍ମାଙ୍କୁ ବିଷ୍ଣୁଙ୍କର ସନ୍ତାନ ବୋଲି କୁହାଯାଇ ନାହିଁ, ବରଂ ଯେଉଁ ଦେବତା-ତ୍ରୟଙ୍କର ବର୍ଣ୍ଣନା ଅଛି, ସେମାନେ ହେଲେ- ବ୍ରହ୍ମା, ବିଷ୍ଣୁ, ମହେଶ୍ୱର । ଏଇଥିରୁ ଦେବ ଦେବୀ କଳ୍ପନାରେ ସଭ୍ୟତାର କ୍ରମ ବିକାଶରେ ମାତୃଦେବୀ ଓ ତାଙ୍କର ପ୍ରାଚୀନତା ଓ ଗୁରୁତ୍ୱ ବିଷୟରେ ବେଶ୍ କିଛି ଅନୁମାନ କରାଯାଇ ପାରିବ ।

ହିନ୍ଦୁ ପୁରାଣ ଶାସ୍ତ୍ରରେ ଆକାଶକୁ ପିତା ଓ ଧରିତ୍ରୀକୁ ମାତା ବୋଲି ବର୍ଣ୍ଣନା କରାଯାଇଛି । ଏଇଥିରୁ ହୁଏତ ବିଷ୍ଣୁ ଓ ଭୂଦେବୀଙ୍କର କଳ୍ପନା ଆସିଯାଇଛି । ପଣ୍ଡିତମାନେ କହନ୍ତି - ଜନନୀ ବା ପ୍ରଜନନର ଦେବୀ ଭାବରେ ପ୍ରଥମେ ଧରିତ୍ରୀ ମାତାଙ୍କ ପୂଜାରୁ ହିଁ ମାତୃପୂଜା ବା ମାତୃଦେବୀଙ୍କ ପୂଜାବିଧିଗୁଡ଼ିକର ବିକାଶ ହୋଇଥିଲା । ତେବେ ସେ ଯାହା ହେଉ, ଆମ ମନରେ ଉଠିଛି - ଶିଳ ଶିଳପୁଆର କଥା ।

କଥାରେ ଅଛି, ଲୋକେ ଉପଲକ୍ଷ୍ୟ ଦେଇ କହନ୍ତି - 'ଶିଳ ଶିଳପୁଆ ଗଗନେ ଉଡୁଛନ୍ତି, ଶିମିଳି ତୁଳା କହୁଛି ମତେ ରଖ ।' ଯେଉଁଠି ବଡ଼ ବଡ଼ ଲୋକଙ୍କ ସ୍ଥିତି ଟଳ ମଟଳ, ସେଠି ସାମାନ୍ୟ ମଣିଷଟିର ସ୍ଥିତି ସମ୍ଭାଳିବା କଥା ଉଠିଲା ବେଳେ ଏଇ ଉପଲକ୍ଷ୍ୟ ଦିଆଯାଏ । କିନ୍ତୁ ଆମେ ଯେଉଁ ଶିଳ ଶିଳପୁଆ' ପ୍ରସଙ୍ଗ ଉଠାଇଛୁ, ତାହା ଗଗନରେ ଉଡ଼ିଗଲା ଭଳି ନୁହେଁ । ଶିଳ ଶିଳପୁଆ ପୂଜା ବିଧି ଓ ତା ସହିତ ସମ୍ପୃକ୍ତ ଓଷା ବା ବ୍ରତକଥା ଗୁଡ଼ିକ ବିଶ୍ଳେଷଣ କଲେ, ଏହାର ଗୁରୁତ୍ୱ ବୁଝି ହେବ ।

-୦-

# ଆଲୋକ ବର୍ତ୍ତିକା

କୌଣସି ଗୋଟିଏ ଓଡ଼ିଆ ସିନେମାର ଗୀତରୁ ପଦଟିଏ ମନେ ପଡ଼ିଗଲା- 'ଚଉରାର ମୂଳେ ସୁନା ସୋହାଗୀ, ସଳିତା ଜାଳେ ସତୀ ମୋ ଲାଗି.....' ଗୀତିକାର ବୋଧହୁଏ ପରଶୁରାମ ପଟ୍ଟନାୟକ । ସେ ଯାହାହେଉ, ଏଇ ପଦକ ମୋ ମନରେ ଚଉରା ମୂଳେ 'ସଞ୍ଜବତୀ' ଜଳିବାର ସ୍ମୃତି ଜଗାଇଦେଲା । ଏଥିରେ ପୁଣି କିଛି କାମନା ନିବେଦନର ସଂକେତ ମଧ୍ୟ ଅଛି । ମନ୍ଦିର, ଦେବ ଦେବୀଙ୍କ ସ୍ଥାନ, ଚଉରାମୂଳ ମାନଙ୍କରେ ଦୀପଟିଏ କି ଘୃତ ସଳିତାଟିଏ ଜଳାଇବା ଅଥବା ଚର୍ଚ୍ଚରେ ମହମବତୀ ଜଳାଇବା, କିଛି ନା କିଛି କାମନା ପ୍ରକାଶ ବା ଭକ୍ତି ନିବେଦନର ସୂଚନା ବହନ କରେ । ଟିକିଏ ବୁଦ୍ଧି ଖେଳାଇଲେ ଏଇ ତଥ୍ୟଟି ସ୍ପଷ୍ଟ ହୋଇଯିବ ।

'ଗ୍ରାମ' ଅର୍ଥ ସମୂହ । ଯେଉଁଠି ଜନସମୂହ ଘରଦ୍ୱାର କରି ବସବାସ କରନ୍ତି, ତାକୁ ଗ୍ରାମ କୁହାଯାଏ । ଆମ ଏଠି ରାଜ ପ୍ରତିଷ୍ଠିତ ଓ ସ୍ୱତଃ ଗଢ଼ି ଉଠିଥିବା ଗ୍ରାମ ଦେଖାଯାଏ । ରାଜ ପ୍ରତିଷ୍ଠିତ ଗ୍ରାମଗୁଡ଼ିକରେ ବିଭିନ୍ନ ଜାତି ପାଟକର ଲୋକ ଗୋଟିଏ ଗୋଟିଏ ସାଇ ବା ଅଞ୍ଚଳରେ ଠାଆ ଠାଆ ହୋଇ ରହନ୍ତି । ଗ୍ରାମର ନିର୍ଦ୍ଦିଷ୍ଟ ସ୍ଥାନରେ ଶିବ ଓ ବିଷ୍ଣୁ ମନ୍ଦିର, କୂପ, ପୁଷ୍କରିଣୀ ଆଦି ଥାଏ । ନଦୀ କୂଳରେ ଗ୍ରାମ ଥିଲେ ତାର ଅବସ୍ଥିତି ତଦନୁସାରେ ହୋଇଥାଏ । ରାଜାମାନେ ଯେଉଁ ଶାସନ କରବାଡ଼ ବସାଉଥିଲେ, ସେଥିରେ ମଧ୍ୟ ବ୍ୟବସ୍ଥିତ ଢ଼ଙ୍ଗ ଲକ୍ଷ୍ୟ କରାଯାଏ । ମାତ୍ର ସ୍ୱତଃ ପ୍ରତିଷ୍ଠିତ ଅଥବା ସ୍ୱତଃ ସଂଗଠିତ ଗ୍ରାମରେ ଏପରି ଶୃଙ୍ଖଳା ଦେଖାଯାଏ ନାହିଁ । ଆଜିକାଲି ସରକାର ବସାଉଥିବା କଲୋନୀ ବା ବସତିମାନଙ୍କରେ ମଧ୍ୟ ନିମ୍ନ-ଆୟ, ମଧ୍ୟମ-ଆୟ, ଉଚ୍ଚ-ଆୟ ବର୍ଗର ଜନଗୋଷ୍ଠୀଙ୍କ ଭିନେ ଭିନେ ଗୃହ ପୁଞ୍ଜକୁ ଭିନେ ଭିନେ ଢ଼ଙ୍ଗ ଓ ଆକାର ଆୟତନ ବିଶିଷ୍ଟ କରି ତୋଳାଇ ଦେଉଛନ୍ତି । ସେଠି କିନ୍ତୁ ମନ୍ଦିର, ଦେବସ୍ଥାନ ଆଦି ଜନ ଗୋଷ୍ଠୀର ସ୍ୱତଃସ୍ଫୂର୍ତ୍ତ ଉଦ୍ୟମରେ ଗଢ଼ା ହୋଇଯାଉଛି । ପୁରୁଣା ଗ୍ରାମ ବା ଗାଁମାନଙ୍କରେ ଗ୍ରାମଦେବୀ ବା ଗାଁ ଠାକୁରାଣୀ ଥାଆନ୍ତି । ସେମାନେ ପ୍ରାୟ ଗଛମୂଳେ ଆସନ ଜମାଇ ଥାଆନ୍ତି । ତା' ଛଡ଼ା ଘରେ ଘରେ ଅଗଣାରେ 'ଚଉରା' ଓ ରୋଷେଇ ଘରେ 'ବଡ଼ ବଡୁଆ' ହେଉଛି ପୂଜାପୂଜିର ସ୍ଥାନ ।

ଏଗୁଡ଼ିକ କୋଉକାଳୁ ଚଳି ଆସୁଛି । ଏଣିକି ଅବଶ୍ୟ ଏଥିରେ ବ୍ୟତିକ୍ରମ ଘଟିଲାଣି । ଘର ତିଆରିର ରୀତି ବଦଳି ଗଲାଣି । ବସତି ବସାଇବାର ଯୋଜନା ମଧ୍ୟ ଯୁଗ ରୁଚି ଆଦରି ନେଉଛି । ତେବେ ଗ୍ରାମ ଦେବତା ଓ ବନଦେବତାଙ୍କ କଥା ନିଆରା ।

ଗ୍ରାମ ଦେବତା ଓ ବନ ଦେବତାମାନେ ବହୁତ ପୁରୁଣା । ପ୍ରାଚୀନ କାଳରୁ ଗ୍ରାମ ଓ ବନାଞ୍ଚଳରେ ସେମାନେ ଭକ୍ତମାନଙ୍କ ପାଇଁ ଅଛନ୍ତି । ଭକ୍ତମାନଙ୍କ ଦ୍ୱାରା ତାଙ୍କର ପୂଜାବିଧି, ପର୍ବ ପର୍ବାଣୀ ଚଳି ଆସୁଛି । ମଣିଷ ବା ମଣିଷ ସମାଜର ଛୋଟ ବଡ଼ 'କାମନା' ବା ଆଶା ଆକାଂକ୍ଷା ସହିତ ଏମାନଙ୍କର ସମ୍ପର୍କ । ଭୟରେ ଭରସା ପାଇବାକୁ, ନିରାଶ୍ରୟ ଅନୁଭବ କଲେ ଆଶ୍ରା ପାଇବାକୁ ମଣିଷ ଏଠାକୁ ଧାଇଁ ଆସେ । ସେମାନଙ୍କ ପ୍ରିୟ ଦିନମାନ ମଧ୍ୟ ପରମ୍ପରା କ୍ରମେ ପବିତ୍ର ତିଥି ବା ବାର ଭାବରେ ପାଳିତ ହୋଇ ଆସୁଛି । ସେଦିନ ସେଇ ସେଇ ସ୍ଥାନମାନଙ୍କରେ ଜନ ସମାଗମ ହୁଏ । ମେଳା ଜମେ । ପୂଜା ପର୍ବ ପାଳିତ ହୁଏ । 'କାମନା' ଓ 'ମାୟା'କୁ ଯିଏ ଯାହା କହୁ, ଏହା ମଣିଷକୁ ସମାଜ ଓ ସଂସ୍କାର ସହିତ ବାନ୍ଧି ରଖିଛି ଏବଂ ବହୁ ଦେବଦେବୀ ଓ ସେମାନଙ୍କର ମହିମା କଥା (Myth) ସୃଷ୍ଟି ହୋଇ ଜୀବନକୁ ତା' ସହିତ ଛନ୍ଦି ଦେଇଛି ।

ସିମ୍‌ଲା, ସୋଲାନ୍, ନଇନିତାଲ ଆଦି ପ୍ରସିଦ୍ଧ ଗ୍ରୀଷ୍ମ ନିବାସ ଓ ପର୍ଯ୍ୟଟନ ସ୍ଥଳଗୁଡ଼ିକ ଯେ ଶ୍ୟାମଳା ଦେବୀ, ସୋଲୋନେଶ୍ୱରୀ, ନୈନା ଦେବୀ ଓ ତାଙ୍କର 'ତାଲ' ବା 'ସରୋବର' ଭାବରେ ବନାଞ୍ଚଳର ଜନମାନବଙ୍କର ପବିତ୍ର ପୀଠ ଥିଲା ଏବଂ ଏହି ବନଦେବୀମାନେ ସେମାନଙ୍କର ସାମୂହିକ ବା ବ୍ୟକ୍ତିଗତ ଜୀବନ ସହିତ ଛନ୍ଦି ହୋଇ ଯାଇଥିଲେ, ଏକଥା ଅନୁସନ୍ଧାନ କଲେ ଧରା ପଡ଼ିବ ସିନା; ନୋହିଲେ ଜାଣିହେବ ନାହିଁ । କାରଣ, ସେଠାରୁ ଆଦିମ ଜନବସତିମାନ ଘୁଞ୍ଚି ଯାଇଛି ବା ଉଠି ଯାଇଛି । ଭାରତ ପରି ଇଟାଲି, ଗ୍ରୀସ୍ ଆଦିର ସଭ୍ୟତା ବହୁ ପ୍ରାଚୀନ । ଇଟାଲିର ଦିଆନା (Diana) ଏବଂ ଗ୍ରୀକ୍ ଗୃହପାଳିତ ପଶୁ ଓ କ୍ରୀଡ଼ାର ଦେବତା ଆର୍‌ଟେ ମିସ୍- (Arte mis)ଙ୍କ କଥା ଫ୍ରିଜର ତାଙ୍କ ଗୋଲଡ଼େନ୍ ବୋ (Golden Bough) ଗ୍ରନ୍ଥମାଳାରେ ଲେଖିଛନ୍ତି । ଏ ଦୁହେଁ ଏକା ଗୋଷ୍ଠୀର ଦେବତା ।

ଜେମ୍‌ସ ଫ୍ରିଜର ନେମି (Nemi)ଠାରେ ଥିବା ଦିଆନାଙ୍କ ପୂଜା ପାର୍ବଣକୁ ଲକ୍ଷ୍ୟ କରି ତାଙ୍କୁ ବନଦେବୀ ବୋଲି ଅନୁଭବ କରିଛନ୍ତି । ସେ ଦେବୀ ଶିକାରୀ

ଓ ମତ୍ସ୍ୟଜୀବୀମାନଙ୍କର ଦେବୀ । ସେମାନେ ତାଙ୍କର ପୂଜାବିଧି କରନ୍ତି । ସେହି ଦେବୀ ଡିଆନା ବନ୍ଧ୍ୟାଙ୍କୁ ସନ୍ତାନ ଧାରଣ କ୍ଷମତା ଓ ଆସନ୍ନ ପ୍ରସବାଙ୍କୁ ସୁଖ ପ୍ରସବ ଲାଗି ବର ପ୍ରଦାନ କରନ୍ତି । ପୁଣି ଅରଣ୍ୟର ଜୀବଜନ୍ତୁ ଓ ଗୃହପାଳିତ ପଶୁଙ୍କର ସୁରକ୍ଷା ଓ ସଂଖ୍ୟାବୃଦ୍ଧି ତାଙ୍କରି କଲ୍ୟାଣ ଓ ଶୁଭଦୃଷ୍ଟି ଯୋଗୁଁ ହୋଇପାରେ ବୋଲି ବିଶ୍ୱାସ କରାଯାଉଥିଲା । ଡିଆନାଙ୍କ ପୀଠରେ ଉତ୍ସର୍ଗ କରାଯାଇଥିବା ମୂର୍ତ୍ତିଗୁଡ଼ିକ ମଧ୍ୟରେ କାଖରେ ସନ୍ତାନ ଥିବା ନାରୀ ମୂର୍ତ୍ତି, ପ୍ରସବ କରୁଥିବା ଜନନୀ ନିକଟରେ ସନ୍ତାନକୁ କୋଳକୁ ନେଉଥିବା ନାରୀ ମୂର୍ତ୍ତି, ଗଢ଼ା ଯାଇଥିବା ପୁରୁଷ ଓ ନାରୀଙ୍କର ପ୍ରଜନନ ଅଙ୍ଗ ଦେଖିବାକୁ ମିଳିଛି । ଏଗୁଡ଼ିକୁ ଲକ୍ଷ୍ୟ କରି ଫ୍ରିଜର ଲେଖିଛନ୍ତି - "From the votive offerings which have been found on the site, it appears that she was conceived of especially as a huntrees, and further as blessing men and women with offspring and expectant mother as easy delivery." ସେ ପୁଣି ଲେଖିଛନ୍ତି -"A few rude images of cows, oxen, horses and pigs dug upon the site may perhaps indicate that Diana was here (at Nemi) worshipped as the patroness of domestic animals as well as of wild creaturess of the wood." ଡିଆନାଙ୍କର ବାର୍ଷିକ ପର୍ବ ପଡ଼େ ଅଗଷ୍ଟ ୧୩ ତାରିଖରେ । ତାଙ୍କ ପୂଜା ଓ ପର୍ବ ସହିତ ଅଗ୍ନି ଓ ଆଲୋକର ଗୁରୁତ୍ୱ ଓ ପ୍ରାଧାନ୍ୟକୁ ମଧ୍ୟ ଫ୍ରିଜର ଲକ୍ଷ୍ୟ କରିଛନ୍ତି ।

ଅଗଷ୍ଟ ମାସରେ ଡିଆନାଙ୍କର ଯେଉଁ ବାର୍ଷିକ ଉତ୍ସବ ଅନୁଷ୍ଠିତ ହୁଏ, ସେଦିନ ତାଙ୍କ ମନ୍ଦିରରେ ଆଲୋକ ଦିହୁଡ଼ିମାନ ପ୍ରଜ୍ୱଳିତ କରାଯାଏ ଏବଂ ଇଟାଲିର ପ୍ରତି ଘରେ ଚୁଲିମୂଳେ କିଛି ପୂଜାଧିଜା ଅନୁଷ୍ଠିତ ହୁଏ । ହାତରେ ଆଲୋକର ଦିହୁଡ଼ି ଧରିଥିବା ବ୍ରୋଞ୍ଜ ନିର୍ମିତ ଦେବୀ ପ୍ରତିମା ତାଙ୍କ ନିକଟରେ ସ୍ଥାପିତ ହୋଇଥିବାର ଦେଖାଯାଏ । ଯେଉଁ ନାରୀଙ୍କର ମାନସିକ ପୂରଣ ହୁଏ, ସେ ହାତରେ ଦିହୁଡ଼ି ଓ ଫୁଲ ମାଳ ଧରି ମନ୍ଦିର ନିକଟକୁ ଆସନ୍ତି । ଆଉ ମଧ୍ୟ ସମ୍ରାଟ ଓ ତାଙ୍କ ପରିବାରର ମଙ୍ଗଳକାମନା କରି କେହି କେହି ନେମିଠାରେ ଥିବା ତୀର୍ଥ ସ୍ଥାନରେ ଦୀପ ଜାଳୁଥିବାରୁ ଜଣାଯାଇଛି । ସେଠାରୁ ଆବିଷ୍କୃତ ହୋଇଥିବା ମାଟିର ଦୀପରୁ ଏହା ଜଣାପଡ଼ିଛି । କାଥଲିକ୍‌ମାନେ ଚର୍ଚ୍ଚରେ ପବିତ୍ର ବର୍ତ୍ତିକା ଭାବରେ ମହମବତୀ ଅର୍ଚ୍ଚନା କରିବା ମଧ୍ୟ ଏହିପରି ଗୋଟିଏ କୃତ୍ୟ ହୋଇପାରେ ।

ଏହା ଫ୍ରିଜରଙ୍କର ଅନୁମାନ । ନିର୍ଭରଯୋଗ୍ୟ ତଥ୍ୟାବଳୀ ଉପରେ ବିଶ୍ଳେଷଣ କଲାବେଳେ ଯେତେଗୁଡ଼ିଏ ଅନୁମାନ ବା ସମ୍ଭାବନା ଦେଖାଯାଏ, ବୁଦ୍ଧି ଖଟାଇ ଧୈର୍ଯ୍ୟର ସହିତ ସେଗୁଡ଼ିକର ପୁଙ୍ଖାନୁପୁଙ୍ଖ ବିଚାର କଲେ ଗ୍ରହଣଯୋଗ୍ୟ ସିଦ୍ଧାନ୍ତରେ ପହଞ୍ଚି ହେବ । ପ୍ରାଚୀନ ବିଶ୍ୱାସ ଓ ଧର୍ମକୃତ୍ୟ ଗୁଡ଼ିକ ଉପରେ ସାର୍ ଜେମ୍ସ ଜର୍ଜ ଫ୍ରିଜରଙ୍କ ଆଲୋଚନା ପଢ଼ିଲେ ଏପରି ଅନୁଭବ ହୁଏ । ସେ ଶହେ କି ବିଶାଶହେ ବର୍ଷ ତଳେ ଗବେଷଣା କରି ତାଙ୍କର ବିଚାର ଉପସ୍ଥାପନ କରିଥିଲେ । ଏ ଭିତରେ ପୃଥିବୀର ବିଭିନ୍ନ ସମାଜରେ ବିଶେଷତଃ ପାଶ୍ଚାତ୍ୟ ସମାଜରେ ତୁମୂଳ ପରିବର୍ତ୍ତନ ଘଟିଗଲାଣି । କିନ୍ତୁ ଠାକୁରଙ୍କ ଠାରେ ଦୀପଟିଏ ବସାଇ କାମନା ନିବେଦନ କରିବାର ରୀତି ଏବେ ମଧ୍ୟ ବିଭିନ୍ନ ହିନ୍ଦୁ ମନ୍ଦିରମାନଙ୍କରେ ଲକ୍ଷ୍ୟ କରାଯାଏ । ଏବଂବିଧ ରୀତି କେବଳ ହିନ୍ଦୁମାନଙ୍କ ମଧ୍ୟରେ ସୀମିତ ନୁହେଁ ବୋଲି ଉପରୋକ୍ତ ଆଲୋଚନାରୁ ଉପଲବ୍ଧ ହେବ ।

ମନ୍ଦିର୍, ତୁଳସୀ ଚଉରା, ରୋଷେଇ ଘରର ଈଶାଣ କୋଣରେ ବଡ଼ ବଡୁଆଙ୍କ ପାଖରେ ଦୀପ ବା ସଞ୍ଜବତୀ ଜଳାଇ ସ୍ଥାପିତ କରିବା ବେଳେ କିଛି କାମନା, ଭକ୍ତି, ପରିବାରର କଲ୍ୟାଣ ବାଞ୍ଛା କରାଯାଏ । ପରମ୍ପରା କ୍ରମେ ଏ ପ୍ରକାର କୃତ୍ୟ ଚଳି ଆସୁଛି । ଅବଶ୍ୟ ଧୀରେ ସୁସ୍ଥେ ହେଉ ବା ଦ୍ରୁତ ଗତିରେ ହେଉ, ସମାଜରେ ପରିବର୍ତ୍ତନ ଘଟିବା ସ୍ୱାଭାବିକ । ଆଜିକାଲି ଆମମାନଙ୍କର ଗୃହ ନିର୍ମାଣ ଯୋଜନା ଓ ଶୈଳୀରେ ଅଗଣା ପ୍ରାୟ ରହୁ ନାହିଁ । ପାକଶାଳାରେ 'ବଡ଼ବଡୁଆ'ଙ୍କ ଆସ୍ଥାନ ରହୁନାହିଁ । ଏପରି ସ୍ଥଳେ ସାମାଜିକ ପରିବର୍ତ୍ତନ ଘଟୁନାହିଁ ବୋଲି କିଏ କହିବ ? କିନ୍ତୁ ଏହି ପରିବର୍ତ୍ତନ ସତ୍ତ୍ୱେ ଦୀପ ପରିବର୍ତ୍ତେ ଆଲୋକ ଓ ଧୂପ ଦେବାର ବିଧି ଭିତରେ ପୂର୍ବ ପରମ୍ପରା ଉଜ୍ଜୀବିତ ରହୁଛି । ବଡ଼ବଡୁଆ ବା ତୁଳସୀ ସ୍ଥାନରେ ନୂତନ ନୂତନ ଧର୍ମଗୁରୁ (ବାବା/ମାଆ/ଗୁରୁ ମହାରାଜ) ମାନଙ୍କର ଆଲୋକଚିତ୍ର ବା ଫଟୋ ଏହି ଗନ୍ଧ ଓ ଆଲୋକ ଗ୍ରହଣ କରୁଛନ୍ତି । ଏମାନଙ୍କ ଠାରେ କ'ଣ ନିଷ୍କାମ ଭକ୍ତି ଅର୍ପଣ କରାଯାଉଛି ? ଆଲୋକ ବର୍ତ୍ତିକା ତ କାମନାର ପ୍ରତୀକ !

ଆଶା, ଆକାଂକ୍ଷା ଓ କାମନା ଯେ ମନୁଷ୍ୟ ଭିତରେ ଥିବା ସାମର୍ଥ୍ୟ ବା ଶକ୍ତିକୁ ଜାଗ୍ରତ କରି କର୍ମରେ ନିୟୋଜିତ କରେ ଏବଂ ତାକୁ ସଂସାର ପଥରେ ଆଗକୁ ଆଗକୁ ବାଟ କଢ଼ାଇନିଏ, ପୁଣି ଏଥିରେ ପଛରୁ କୌଣସି ଶକ୍ତି ଠେଲି ଠେଲି ନେବାରେ ସହାୟତା କରେ, ଏହା ଅନେକଙ୍କ ଅନୁଭବର କଥା । ସୁତରାଂ ତାହାରି ଉଦ୍ଦେଶ୍ୟରେ ଆଲୋକ ବର୍ତ୍ତିକା ନିବେଦନ ତାତ୍ପର୍ଯ୍ୟପୂର୍ଣ୍ଣ ।

-୦-

# ଗୋରୁ ଖୋଜା

ଅଗନା-ଅଗ୍ନି ବନସ୍ତ । କାଠିଟିଏ ପଡ଼ିଲେ ଢ଼ିଙ୍କିଟାଏ ପଡ଼ିଲାପରି ଶୁଭୁଛି । ପତରଟାଏ ପଇଲେ କୁଲାଟାଏ ପଇଲା ପରି ଶୁଭୁଛି । ଜଂଗଲ ଆଉ ଜଂଗଲ । ଘଞ୍ଚ, ନିବିଡ଼, ଭୟଙ୍କର । ଗୁରୁଙ୍କର ଧେନୁ ବାହୁଡ଼ି ନାଇଁ । ଶିଷ୍ୟ ଖୋଜୁଛନ୍ତି । ଆଶ୍ରମର ଗାଈ, ପବିତ୍ର ମହାନ । ସଂଧ୍ୟା ହେଲାଣି । ଫେରିବାକୁ ହେବ । ସମସ୍ତେ ଫେରିବେଣି । ଗୋଟିଏ ଗାଈ ରହି ଯାଇଛି । ତାକୁ ଖୋଜି ବାହାର କରିବାକୁ ହେବ । ଶିଷ୍ୟ ତରୁଣ-ତପସ୍ୱୀ ଖୋଜୁଛନ୍ତି । ରାତ୍ରି ଆସନ୍ନ । ଖୋଜି ଖୋଜି ଅବସନ୍ନ । ତଥାପି କେଉଁଠି ଦିଶୁନି । ବାଘ ହେଣ୍ଟାଳୁଛି ରହି ରହିକା । ଆଶଙ୍କା ଘୁମୁରୁଛି ମନରେ ଗୋରୁଟି ବାଘର ଉଦରସ୍ଥ ହୋଇ ନାହିଁ ତ ? ଚାଲିଛି ଗୋରୁ ଖୋଜା ।

ଏଣେ ଖୋଜା ଚାଲିଛି ଓଡ଼ିଶାର ସଂସ୍କୃତି । ସିଏ ଗଲା କୁଆଡ଼େ ? ରାଉରକେଲା, ସମ୍ୱଲପୁର, ଭୁବନେଶ୍ୱର, ବାଲେଶ୍ୱର, ବାରିପଦା, ବ୍ରହ୍ମପୁର, ସୁନାବେଡ଼ା, ପାରଳାଖେମୁଣ୍ଡି ସବୁଠି ଖୋଜା ହେଉଛି । କୋଉଠି ଅଛି ? କେମିତି ଅଛି ? କେତେ ଅଛି ? ଶୁଭୁଛି ବାଘର ହେଣ୍ଟାଳ । ଦିଶି ଯାଉଛି ଅରଣ୍ୟର ବ୍ୟାପ୍ତି; ଘୋଟି ଆସୁଥିବା ଅନ୍ଧାର । ବିସ୍ତୃତି ଓ ଅନ୍ଧାର ଭିତରେ ଖୋଜିବା ଯେତିକି କଷ୍ଟ ଓ ସମୟ ସାପେକ୍ଷ ସେତିକି ସେ କାହାଦ୍ୱାରା ଗର୍ଭିତ ହେବାର ଆଶଙ୍କା । ତଥାପି ଚାଲିଛି ଖୋଜା......... ପବିତ୍ର କର୍ତ୍ତବ୍ୟ । ଜ୍ଞାନତପସ୍ୱୀଗଣ ଲାଗିଛନ୍ତି । ଅନନ୍ତ ଓ ନିରବଚ୍ଛିନ୍ନ ଏଇ - 'ଗୋ ଏଷଣା' !

ପକାଘରେ ମାଣବସା ଝୋଟି ଦେଇ ହେଉନି । ଦାମିକା ଚଟାଣରେ ଆଲିମ୍ପନ ଧରୁନି । କାର୍ତ୍ତିକ ମାସରେ ମୁରୁଜ ପକାଇବାକୁ ଚଉରା ମୂଳ ନାହିଁ କି ହବିଷିଆଳୀ ନାହାନ୍ତି । ଦଶହରାରେ ମୁଦ୍‌ଗର ଚାଳନା, ଫରିଖେଳ, ପାଇକ କୁହାଟ ଶୁଭୁନି । ମୃଣ୍ମୟି ମୂର୍ତ୍ତି ପୂଜାରେ କଳା ଓ ସଂଗୀତର ଚର୍ଚ୍ଚା ପାଇଁ କେଉଁଠି କେମିତି ଆୟୋଜନ ହୁଏତ ହେଉଛି । କିନ୍ତୁ ଆଖଡ଼ା ଘର ନାହିଁ କି ସେଠି ବୀରାଷ୍ଟମୀରେ ବୀରତ୍ୱର ପରାକାଷ୍ଠା ଦେଖାଇବା, ପାରଦର୍ଶିତାର ପ୍ରତିଯୋଗିତାର ସୁବିଧା ନାହିଁ, ଓଡ଼ିଆର ଖାଦ୍ୟ ପିଠା ପଣା, ରନ୍ଧନକଳା ଆଦି ସ୍ୱକୀୟତା

ହରାଉଛି । ଗୋଟାଏ ଜାତି ସୁସ୍ଥ ସବଳ ଓ ପ୍ରାଣ ପ୍ରାଚୁର୍ଯ୍ୟ ଘେନି ବଢ଼ିବା କଥା । ଉଚ୍ଚ ଆଶା ଓ ଆକାଙ୍କ୍ଷା ଘେନି ସେ ଉନ୍ନତିର ଉଚ୍ଚତର ସୋପାନକୁ ପାଦ ବଢ଼ାଇବ । ବଡ଼ରୁ ବଡ଼ ହେବ । ସଂସ୍କୃତି ସେଥିପାଇଁ ରାହା ଦିଏ । ସାହା ହୁଏ । ସଂସ୍କୃତିର ପରମ୍ପରା ଓ ସାଂପ୍ରତିକ ସ୍ଥିତିରୁ ଭବିଷ୍ୟତର କଳନା କରିହୁଏ । ଏ ସଂସ୍କୃତିର ଲୋକେ କ'ଣ କରି ପାରିବେ କେତେ ବାଟ ଯାଇ ପାରିବେ; ଯା ଦେହି କ'ଣ ହେବ ନାହିଁ ଅନୁମାନ କରିହେବ ।

କାର୍ତ୍ତିକ ପୂର୍ଣ୍ଣିମାରେ ବୋଇତ ଭସାଉଥିବା ଜାତିର କୈବର୍ତ୍ତମାନେ ଏବେ ବି ଦୂର-ଦରିଆରୁ ମାଛ ଧରନ୍ତି । କିନ୍ତୁ ତହୁଁ ଅଧିକ ? ନୌବାଳକ ତାଲିମ କେନ୍ଦ୍ର ଖୋଲୁଛି । ନୌବାହିନୀରେ ଧୁରୀଣ ହେବାର ଆଶା କରା ହେବ । ଦରିଆ ପାରି ବଣିଜ ଏମାନଙ୍କ ଦ୍ୱାରା ହୋଇ ପାରିବ । ବୀରତ୍ୱର ଅନେକ ପର୍ବ ଅଛି । ତା'ର ପାଳନ ପରମ୍ପରା ବଦଳି ଆସୁଛି । କିନ୍ତୁ ଏମାନେ ସୈନ୍ୟ ବାହିନୀରେ ପାରଦର୍ଶିତା ଦେଖାଇ ପାରିବେ । କଳା ନିପୁଣତା, ଶିଳା-ଶିଳ୍ପ ପୂରା ଚାଲି ଯାଇନି । ତାକୁ ଜୀବନ୍ତ କରି ହେବ । ଏ ମାଟି ରତ୍ନଗର୍ଭା । ଏ ମାଟିର ନଦୀ ଓ ପାଖ ଦରିଆ ବି ରତ୍ନଗର୍ଭା । ଏ ଦେଶର ଲୋକେ ପରିଶ୍ରମୀ ଓ ସାହସୀ ଥିଲେ । ତାଙ୍କୁ ନେଇ ଖଣିଜ ସମ୍ପଦର ଆବିଷ୍କାର ଓ ବିନିଯୋଗ ହୋଇପାରିବ । ଶିଳ୍ପାୟନ ସମ୍ଭବ ହେବ ଏ ମାଟିରେ । ଏ ମାଟିର ପିଲାକୁ ସେ ଦିଗରେ ଉପଯୁକ୍ତ ତାଲିମ ଦେବାଲାଗି ଉପଯୁକ୍ତ ଅନୁଷ୍ଠାନ ଗଢ଼ି ଉଠିଲେ, ପରିଷଦ ପ୍ରତିଷ୍ଠିତ ହୋଇ ଆବ୍‌ହାଓ୍ୱା ଖେଳିଲେ ଜାତି ଉଠିବ ଓ ଉଠାଇବ ତାରି ପାଖ ପଡ଼ୋଶୀଙ୍କୁ ।

ଆମର ସଂଗଠନ ଓ ଶୃଙ୍ଖଳା ଓ ଆତ୍ମ ସମୀକ୍ଷା ହେବାର କଥା ଉପଯୁକ୍ତ ମାର୍ଗରେ । ଅନେକ ସମୟରେ ଆମର ଆତ୍ମ-ସମାଲୋଚନା ଭୁଲ ବାଟରେ ଯାଉଛି । ଏପରିକି ଆମେ ଅନାବଶ୍ୟକ ଭାବେ ଦୋହରାଉଛେ କେତୋଟି ଗତବନ୍ଧା କଥା । ଗୋଟିଏ ଉଦାହରଣ ଦିଏ ।

ଆମେ କଣ ସତରେ ସମୟାନୁବର୍ତ୍ତୀ ନୋହୁଁ ? ସମୟାନୁବର୍ତ୍ତୀ ନ ହେବାଟା କ'ଣ ଆମର ପରମ୍ପରା ? "ଭାରତୀୟ ସମୟାନୁବର୍ତ୍ତୀତା" କଥାଟା ତାଚ୍ଛଲ୍ୟ ମନ୍ତବ୍ୟ ଭାବରେ କେମିତି ଉଠିଲା ? ଆମର ବିବାହ ବିଷୟରେ ବିଚାର କରନ୍ତୁ । ସମୟ ବା ଲଗ୍ନ ଗଡ଼ିଯିବାକୁ କେହି କେବେ ଦିଏ କି ? ସେହିପରି ପର୍ବକଥା ଦେଖନ୍ତୁ; ଯେଉଁ ମୁହୂର୍ତ୍ତରେ ପୂଜା ଆରମ୍ଭ, ଜୀବନ୍ୟାସ, ଚକ୍ଷୁ ଦାନ,

ଉତ୍ସର୍ଗ ଆଦିର ବିଧି ସେଥିରୁ ବିଚ୍ୟୁତ ହେବାର ଦେଖାଯାଏ କି ? ଗାଁରେ ସକାଳ ନୋହୁଣୁ କାଳିଅନ୍ଧାରୁ ଉଠି ଅଗଣାରେ "ପବିତ୍ର ପାଣି" ପକାଇବା, ଜୁମ ଲୁଚିଗଲେ ସଂଞ୍ଜବତୀ ଲଗାଇବା ଇତ୍ୟାଦିରେ କେହି କେବେ ସମୟ ଗଡ଼ାଏ ? ଚାଷବାସ ବିଧି ଦେଖନ୍ତୁ - ଅକ୍ଷୟତୃତୀୟା ଦିନ ହଳ ଅନୁକୂଳ ନକରି ଚତୁର୍ଥୀ ଦିନ କରାଯାଏ କି ? ପରମ୍ପରାର ବିଶ୍ଳେଷଣ କରନ୍ତୁ । ଯେଉଁ ମୁହୂର୍ତ୍ତ ଯେଉଁ ତିଥି ବା ଦିନରେ ଯାହା ହେବାର କଥା, ତାହା ହୁଏ । ଭାରତୀୟ ଏବଂ ଓଡ଼ିଆମାନେ ସମୟାନୁବର୍ତ୍ତୀ । "ଭାରତୀୟ ସମୟାନୁବର୍ତ୍ତିତା" ହସନବଜର କଥା ହେଲା ଏହି ସାଂପ୍ରତିକ କାଳରେ । ହୁଏତ ଭଡ଼ା ମଟର, ରେଳ ଚଳାଚଳରେ ପରିଚାଳନାଗତ ତ୍ରୁଟି ହେତୁ ସମୟର ଠିକଣା ନଥିବାରୁ ଏପରି ଘଟିଲା । କଥାଟା ଜଳ ଜଳ ହୋଇ ଦିଶୁଛି । ଅଫିସ କଚେରୀ ସଭାସମିତିରେ ବ୍ୟକ୍ତି ବିଶେଷ, ଅଧିକାରୀ ବା ଉଦ୍ୟୋକ୍ତାମାନଙ୍କ ଢ଼ିଲାମି ପାଇଁ କଥାଟା ବ୍ୟାପି ଆମକୁ ପଦାରେ ପକାଉଛି । ଜାତି ଉପରେ ଦୋଷ ଲଦି ଦେଇ ଆମେ ବ୍ୟକ୍ତିଗତ ତ୍ରୁଟିକୁ ଘୋଡ଼ାଇବାର ଚେଷ୍ଟା କରୁଛୁ । ଏଇକଥା ଭାବିଲାବେଳେ ମଧୁବାବୁ ଆଖି ଆଗକୁ ଚାଲି ଆସନ୍ତି । ତାଙ୍କରି କଥା ମନେ ପଡ଼ିଯାଏ । ତାଙ୍କର ବାଣୀ କାନରେ ଶୁଭିଯାଏ । ଜାତୀୟ ଚରିତ୍ର ସଂପର୍କରେ କେତେ କେତେ ଦାମିକା କଥା ସେ ନବତାଇଛନ୍ତି ।

ଓଡ଼ିଆ ଲୋକଙ୍କ ଭିତରେ ଏକତା ନାହିଁ ବୋଲି କୁହାଯାଏ । "ଓଡ଼ିଆଏ କେବେ ଏକାଠି ହେବେ ? ଏଠି ପରା ଏକୁଁ ଆରେକ ବଳିୟାର ! କେହି କାହାରିକି ଦେଖି ପାରନ୍ତି ନାହିଁ । ଜଣେ ଉଠିଗଲା ବେଳେ ଆରକ ତା' ଗୋଡ଼ ଟାଣି ଧରେ" - ଏମିତି କଥାମାନ ଶୁଣାଯାଏ । କିନ୍ତୁ ଧଉଳି ବା ଖଣ୍ଡଗିରିଠାରେ ଛିଡ଼ା ହେଲେ ଅଶୋକାଷ୍ଟମୀ ବା ରଥଯାତ୍ରା ଦିନ ଭୁବନେଶ୍ୱର ବା ପୁରୀ ଇତ୍ୟାଦିରେ ବିଚାରକ୍ଷମ ମନଘେନି ପହୁଞ୍ଚିଲେ ସେକଥା ଭାବିହେବ ? ଅନେକ ଲୋକ ଧଉଳି ପାଖେ କଳିଙ୍ଗ ଯୁଦ୍ଧରେ ମରିଛନ୍ତି । ଲକ୍ଷ ଲକ୍ଷ ସେମାନଙ୍କର ସଂଖ୍ୟା । ଲଢୁ ଲଢୁ ଯୁଦ୍ଧ ଭୂଇଁରେ ସେମାନେ ପ୍ରାଣବଳୀ ଦେଇଛନ୍ତି । ପରାସ୍ତ ଓ ବିକଳାଙ୍ଗ ହୋଇ ବନ୍ଦୀ ହୋଇଛନ୍ତି । ଏକାଠି ଏତେ ଲୋକ ଦେଶ ମାତୃକାର ସ୍ୱାଧୀନତା ରକ୍ଷା ପାଇଁ ପ୍ରାଣପାତ ଯାଏ ସଂଗ୍ରାମ କରିବା କ'ଣ ସାମାନ୍ୟ କଥା ? ହୁଏତ ବିପୁଳ ସଂଖ୍ୟାରେ ସଂଗଠିତ ହୋଇ ଯୁଦ୍ଧକୁ ନଆସି ଥିଲେ କିମ୍ବା ଛତ୍ରଭଙ୍ଗ ଦେଇ ପଳାଇଥିଲେ ନିହତ, ଆହତ, ବିକଳାଙ୍ଗ ଓ ବନ୍ଦୀଙ୍କର ସଂଖ୍ୟା ଏତେ ହୋଇ ନଥାନ୍ତା । ଏମାନେ ପୁଣି ଘାଇଲା ବାଘ ପରି ଅଶୋକଙ୍କୁ ତ୍ରସ୍ତ କରୁଥିଲେ ।

ବିଭିନ୍ନ ସ୍ଥାନରେ ଅଶୋକଙ୍କର ଶିଳାଲେଖର ସ୍ୱରରୁ ଏହା ଧରିହୁଏ । ଖଣ୍ଡଗିରିରେ ଖାରବେଳଙ୍କ ଶିଳାଲେଖ ଦେଖିଲେ ଜଣାପଡ଼େ କେମିତି ଏ ଜାତିର ବୀରମାନେ ସଂଗଠିତ ହୋଇ ଭାରତର ଏକ ବିଶାଳ ଅଞ୍ଚଳରେ ସାମ୍ରାଜ୍ୟ ବିସ୍ତାର କରି ପାରିଥିଲେ । ବିଦେଶୀ ଶତ୍ରୁକୁ ପରାହତ କରି ଏକ ବିସ୍ତୀର୍ଣ୍ଣ ଭାରତୀୟ ଅଞ୍ଚଳକୁ ଆପଣାର କରି ରଖିଥିଲେ । ଅବଶ୍ୟ କେଉଁ ଭାରତୀୟ ଜାତି ଅନ୍ୟ କେଉଁ ଭାରତୀୟ ଜାତି ଉପରେ ଆଧିପତ୍ୟ ବିସ୍ତାର କଲା ସେଇଟା ବଡ଼ କଥା ନୁହେଁ । ବରଂ ସାଂପ୍ରତିକ ବିଚାରରେ ସେଇଟା ପୁରୁଣାକାଳିଆ ଚିନ୍ତା । ମୋର କହିବାର କଥା ସଂଗ୍ରାମରେ ବିଜୟ ଓ ପରାଜୟ କଥା ବିଚାର କରନ୍ତୁ । ପୁରୀ ରଥଯାତ୍ରାରେ ସମସ୍ତେ ଏକାଠି ହୋଇ ଜାତି ବର୍ଣ୍ଣ ନିର୍ବିଶେଷରେ ଦଉଡ଼ି ଟାଣିଲେ ରଥ ଚାଲେ । ଜାତି ସେମିତି ଚାଲିବ । କାଞ୍ଚିକାବେରୀ କିମ୍ବଦନ୍ତୀ ଏଇଠି ମନେ ପଡ଼େ । ଗୋପବନ୍ଧୁ ସେକଥା ମନେ ପକାଇ କହିଥିଲେ - "ଏ ଦେଶର ନେତା ନିଜେ ନାରାୟଣ" । ଦେବତା ବି ଏକତାର ବନ୍ଧନରୁ ବାଦ୍ ଯାଇ ନାହାନ୍ତି ।

କଳା ସାଧନାରେ ବି ଏ ଜାତି ଏକାଠି ଠିଆ ହୋଇଛି । ଏକତା ଶୃଙ୍ଖଳା ଓ ସଂଗଠନ ଫଳରେ ଏହାର କଳା କୁଶଳତା ଏତେ ସୁନ୍ଦର ଓ ଚିରନ୍ତନ ମୂଲ୍ୟ ଘେନି ପୁରୀ, କୋଣାର୍କ, ଭୁବନେଶ୍ୱର, ଖିଚିଂ ଆଦିରେ ଫୁଟି ପାରିଛି । କାଠଯୋଡ଼ିର ପଥରବନ୍ଧ ତ ଜଣାଶୁଣା କଥା । ପର୍ବପର୍ବାଣୀ ଉତ୍ସବ ଭିତରେ ଆମେ ଏକାଠି ହୋଇ ଧର୍ମକାମ କରୁ । ଏକତା, ସଂଗଠନ, ଶୃଙ୍ଖଳା ଆମର ପରମ୍ପରା ।

ବିଳାସ ଆମର ପରମ୍ପରା କି ? ହୁଏତ ହୋଇଥିବ । କିନ୍ତୁ ମୋଗଲ ବିଳାସ ଓ ଆମ ବିଳାସ ଏକା କଥା ନୁହେଁ । ଯେଉଁ ନରସିଂହ ସୂର୍ଯ୍ୟମନ୍ଦିର କଲେ ସେ ହୁଏତ କଳାପ୍ରିୟ ଓ ବିଳାସୀ ହୋଇଥିଲେ ସମୁଦ୍ର କୂଳରେ ନିଜ ପାଇଁ ସୁନ୍ଦର ପ୍ରାସାଦ ତୋଳାଇ ପାରିଥାନ୍ତେ । ଭୁବନେଶ୍ୱରର ବିଭିନ୍ନ ମନ୍ଦିର ନିର୍ମାତାଗଣ ଯଯାତି ବା ଅନ୍ୟ ସୋମବଂଶ ନୃପତିମାନେ ନିଜ ପାଇଁ ଚମତ୍କାର କାରୁକାର୍ଯ୍ୟ ଖଚିତ ସୁଦୃଢ଼ ପ୍ରାସାଦ ତୋଳାଇ ପାରିଥାନ୍ତେ । ମହାନ୍-ବିଜେତା ଅନଙ୍ଗ, କପିଳେନ୍ଦ୍ର ପ୍ରଭୃତି ମହାନଦୀ ଏବଂ କାଠଯୋଡ଼ି କୂଳରେ କଟକଠାରେ ବାରବାଟୀ ଦୂର୍ଗକୁ ଆହୁରି ବିସ୍ତୃତ, ଦୃଢ଼, ମଜବୁତ୍ ଓ ଚମତ୍କାର କରି ତୋଳାଇ ପାରିଥାନ୍ତେ । ସେମାନେ ଚାହିଁଥିଲେ ଭାରତର ଯେ କୌଣସି ଦୁର୍ଗ ଓ ପ୍ରାସାଦ ଠାରୁ ଅଧିକ ଉନ୍ନତ କରି ପାରିଥାନ୍ତେ । କିନ୍ତୁ ତାହା କରି ନାହାନ୍ତି । ସେମାନେ ଯାହା କରିଛନ୍ତି, ଦେବତାଙ୍କ ପାଇଁ, ସର୍ବସାଧାରଣଙ୍କ ପାଇଁ, ତ୍ୟାଗ, ସଂଗଠନ

ଶକ୍ତି ଓ ବସ୍ଥଳତା ପରମ୍ପରା ସୃଷ୍ଟି କରିଛି । ସେଥିପାଇଁ ସହଯୋଗ ପାଇଛନ୍ତି । ବିଦ୍ରୋହ ବା ବିପ୍ଲବ ହୋଇନାହିଁ, ସେମାନଙ୍କ ରାଜ୍ୟରେ । ପରେ ଯେତେବେଳେ ଏଥିରେ ଖିଲାପ ହେଲା ସେତେବେଳେ ବିଦ୍ରୋହ ଦେଖାଦେଲା । ତାହା ଏବର କଥା ।

ଆମର କେତେ ଅର୍ବାଚୀନ ଚିନ୍ତା ଓ ପ୍ରଥା ଆମର ପାରମ୍ପାରିକ ସଂସ୍କୃତିର ସ୍ୱୀକୃତି ନପାଇ ପଶିଆସିଛି ଏବଂ ଚଳିଯାଇଛି । ଜାତିପ୍ରଥା ଏବଂ ଘୃଣା ଆମର ପରମ୍ପରା ନୁହେଁ । ଆମ ନୃତ୍ୟ, ସଂଗୀତ ଓ ବାଦ୍ୟ ବିଶାରଦ ଗୋଷ୍ଠୀ ଉପଯୁକ୍ତ ମର୍ଯ୍ୟାଦା ନପାଇବାଟା ପରମ୍ପରା ନୁହେଁ । ବରଂ ସେମାନେ ଉପଯୁକ୍ତ ମର୍ଯ୍ୟାଦା ପାଉଥିବାର ପ୍ରମାଣ, ମନ୍ଦିର ଗାତ୍ରରେ ଶିଳା-ଶିଳ୍ପ ଓ ପାର୍ବଣ ବିଧିରେ ରହିଅଛି ।

ବିସ୍ତୃତି ଓ ବିସ୍ମୃତି ଭିତରୁ ଆମକୁ ଆମର ସଂସ୍କୃତିକୁ ଖୋଜିବାକୁ ହେବ । ବାଘ ପେଟରେ ପଡ଼ିବା ଆଗରୁ, କିମ୍ବା ଅରଣ୍ୟରେ ଅନ୍ଧାର ଘୋଟିବା ପୂର୍ବରୁ ଆମକୁ ଧେନୁକୁ ଖୋଜିଆଣି ଆଶ୍ରମରେ ପହଞ୍ଚାଇବାକୁ ପଡ଼ିବ । ଗୋରୁ ଖୋଜାରେ ବି ସମୟ ସୀମା ଅଛି । ଗବେଷଣାରେ ଯେଉଁଟା ଆଗ ଓ ଶୀଘ୍ର ହୋଇଯିବା ଉଚିତ ସେ କ୍ଷେତ୍ରରେ ବିଳମ୍ବ ଅନୁଚିତ । ସେ ଦିଗରେ ଯୋଗ୍ୟ ବ୍ୟକ୍ତିମାନଙ୍କର ମିଳିତ ଏବଂ ସଂଗଠିତ ଉଦ୍ୟମ ଲୋଡ଼ା ।

ଆମର ଦିଗ ମୋଡ଼ ହୋଇଯାଇଛି । ଭଂଜ ଜୟନ୍ତୀ ହେଉଛି । ସୁଖର କଥା । ସେ ବିଷୟରେ ପଦେ କୁହେ । ଭଂଜ ବୋଧହୁଏ ଭୁଲ୍ ବୁଝାମଣା ଭିତରେ ହନ୍ତସନ୍ତ ହେଉଥିବା ଗୋଟିଏ ପ୍ରତିଭା । ତାଙ୍କର ପ୍ରତିଭା, ପୌରୁଷ ଓ ସ୍ୱାଭିମାନ ଅନନ୍ୟ । ସଂସ୍କୃତର ପ୍ରତିସ୍ପର୍ଦ୍ଧାରେ ଓଡ଼ିଆ ଭାଷା ସାହିତ୍ୟକୁ ଛିଡ଼ା କରାଇବାରେ ତାଙ୍କର ତପସ୍ୟା ବୃଥାଯିବା ଉଚିତ ନୁହେଁ । "ଘେନ ନୈଷଧ ପରାଏ, କହେ ଉପଇନ୍ଦ୍ର ବୁଧ ପ୍ରମୋଦ କରାଏ" ବା "କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ କୈକୁଣ୍ଠନାଥ ସାକ୍ଷାତ, ଜାତ କଲେ କ୍ଷୀରାର୍ଣ୍ଣବୁ ରସ ମୋର ଗିରାର୍ଣ୍ଣବୁ ରସଗୀତ" କହିଲାବେଳେ ସେ ଓଡ଼ିଆ କାବ୍ୟକୁ କେଉଁ ସ୍ତରକୁ ଉଠାଇ ନେଇଥିଲେ କଳ୍ପନା କରନ୍ତୁ । "କହେ ଉପଇନ୍ଦ୍ର ଉତ୍ତମ କବିବୃନ୍ଦ ବିଚିତ୍ର ମାର୍ଗେ ମୋ ସଞ୍ଚର" କହିବା ବେଳେ କିପରି ନେତୃତ୍ୱର ଆହ୍ୱାନ ଦେଉଛନ୍ତି ଭାବିବାର କଥା । ତାଙ୍କ ଜୟନ୍ତୀରେ କେବଳ ତାଙ୍କର ବିପୁଳ ବିଚିତ୍ର ସୃଷ୍ଟି ସମ୍ଭାର କଥା ପକାଇ ଅଳଙ୍କାର ଚର୍ଚ୍ଚାରେ ଆତ୍ମ ବିଭୋର ନ ହୋଇ, ତାଙ୍କର ଶପଥ ଓ ସାଧନାର କଥା ସ୍ମରଣ କରିବା

ଉଚିତ । ଆଜି ଓଡ଼ିଆ ଭାଷା ଏକ ଭିନ୍ନ ପରିସ୍ଥିତିର ସମ୍ମୁଖୀନ ହୋଇଛି । ଆଗରେ ତା'ର ଯୁଗର ଆହ୍ୱାନ । ବିଜ୍ଞାନ ଓ ଟେକ୍‌ନୋଲଜୀ ଯୁଗରେ ଭାଷାକୁ ବିଭିନ୍ନ ବୈଜ୍ଞାନିକ ଓ ବୈଷୟିକ ବିଦ୍ୟାର ମାଧ୍ୟମ ହେବାକୁ ପଡ଼ିବ । ଯୁଗ ଚିନ୍ତା, ଯୁଗର ଆବଶ୍ୟକତା ଓ ରୁଚି ବଦଳିଛି । ଭାଷା ଓ ସାହିତ୍ୟକୁ ତହିଁର ଭାଜନ ହେବାକୁ ହେବ । ଆମ ଭାଷାରେ ପଦାର୍ଥ ବିଜ୍ଞାନ, ପରମାଣୁ ତତ୍ତ୍ୱ, ଯାନ୍ତ୍ରିକ ବିଜ୍ଞାନ ଇତ୍ୟାଦିରୁ ନୃତତ୍ତ୍ୱ ଓ ଚିକିତ୍ସା ବିଦ୍ୟା ଇତ୍ୟାଦିରେ ଖାଲି ଗ୍ରନ୍ଥ ନୁହେଁ ଏପରି ପ୍ରାମାଣିକ ଗ୍ରନ୍ଥ ଲେଖିବାକୁ ହେବ ଯେ ଯାହାକୁ ଅନୁବାଦ କରିବା ·ଲାଗି କିମ୍ବା ଓଡ଼ିଆରେ ପଢ଼ିବା ପାଇଁ ଲୋକେ ଓଡ଼ିଆ ଶିଖିବେ । ଏହି ପ୍ରତ୍ୟୟ କ'ଣ ଉପେନ୍ଦ୍ର ଭଂଜଙ୍କ ଦାୟାଦମାନଙ୍କ ପ୍ରାଣରେ ଆସିବ ନାହିଁ ?

ସବୁ କ୍ଷେତ୍ରରେ ଆମର ଗବେଷଣା ହେବା ଉଚିତ । ମୌଳିକ ଗବେଷଣା ହେଲେ ମାତୃଭାଷାରେ ତାହା ପ୍ରଥମେ ପ୍ରକାଶିତ ହେବ । ପ୍ରସାର ପାଇଁ ଅନ୍ୟାନ୍ୟ ବିଶ୍ୱ-ବିଦିତ ଭାଷାରେ ଅନୁବାଦ ଓ ପୁନର୍ଲିଖନ କରାଯିବ । ଆମେ ଅନ୍ୟ ଭାଷାକୁ ସମ୍ମାନ କରିବୁ ' ଏବଂ ସମସ୍ତ ସମ୍ମାନିତ ଭାଷା ଭିତରେ ଆମ ଭାଷାକୁ ଗଣିବାକୁ ଚାହିଁବୁ । ଆମେ ବିଶିଷ୍ଟ ଜାତି ଭାବରେ ଅନ୍ୟାନ୍ୟ ଉନ୍ନତ ଜାତିମାନଙ୍କ ସହିତ ସମାସ୍କନ୍ଦ ହୋଇ ଛିଡ଼ା ହେବୁ । ଏଇ ଆତ୍ମ ପ୍ରତ୍ୟୟ ଏବଂ ଉପଯୁକ୍ତ ସାଧନ ପାଇଁ ପ୍ରେରଣା ପାଇବା ଓ ଦେବାରେ ଭଂଜ ଜୟନ୍ତୀର ନିର୍ଦ୍ଦିଷ୍ଟ ଭୂମିକା ଅଛି । କେବଳ ଭଂଜ କାହିଁକି ଯେ କୌଣସି କବି ଓ ସାହିତ୍ୟସ୍ରଷ୍ଟାଙ୍କ ଜୟନ୍ତୀରେ ଆମେ ଏପରି ଚିନ୍ତା କରିବା ଓ ଶପଥ ନେବାର କଥା । ମଧୁସୂଦନଙ୍କ ଜୟନ୍ତୀ ଓ ଶ୍ରାଦ୍ଧ ଓଡ଼ିଆ ଜାତି ପାଇଁ ଗୋଟିଏ ପବିତ୍ର ଦିବସ ।

''ଉଠରେ ଉଠରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ ।''

ପଦଟି ଏବେବି ପ୍ରାଣରେ ସ୍ପନ୍ଦନ ଆଣେ । କିନ୍ତୁ 'ଜୀବିତ ପ୍ରାଣ'ରେ ସିନା ସ୍ପନ୍ଦନ ଆସିବ ! ଅବଶ୍ୟ ଯା ମାନେ ନୁହେଁ, ଆମେ ମୃତ ବୋଲି ଆତ୍ମ ସମାଲୋଚନା କରି ତୃପ୍ତି ଓ ଶାନ୍ତିରେ ବସି ପଡ଼ିବା । ସେ ଦିଗରେ ଯୋଜନା ଓ ସଂଗଠନ ଲୋଡ଼ା । କେମିତି ଏ ଜାତିକୁ ଆତ୍ମ ସଚେତନ କରି ତା' ମନରେ ଆତ୍ମ ପ୍ରତ୍ୟୟ ଜାଗ୍ରତ କରିବାକୁ ହେବ ଏବଂ ସେମାନଙ୍କୁ ସଂଗଠିତ କରି ଜାତିକୁ ଏକ ଜାତି ଭାବରେ ସମର୍ଥ ଓ ଜାତୀୟତା ବୋଧ, ସାମର୍ଥ୍ୟରେ

ସ୍ୱାଭିମାନୀ କରି ଛିଡ଼ା କରାଇବାକୁ ପଡ଼ିବ ସେ ଦିଗରେ ଗବେଷଣା ଓ ସଂଗଠନ ଲୋଡ଼ା ।

ରାଉରକେଲା ଓଡ଼ିଆ ଜାତିର ଆଧୁନିକ ତୀର୍ଥ । ସେଇଠି ସତେ ଯେପରି ଇସ୍ପାତ କାରଖାନାର ଧୂଆଁକୁ ଚାହିଁ ବେଦବ୍ୟାସରୁ ଇଂଗିତ ଆସେ -

''ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ନିବୋଧତ

କ୍ଷୁରସ୍ୟ ଧାରା ନିଶିତା ଦୁରତ୍ୟୟା

ଦୁର୍ଗଂ ପଥସ୍ତତ୍କବୟୋ ବଦନ୍ତି ।''

ପୁଣି ନବ ପ୍ରତିଷ୍ଠିତ ମଧୁସୂଦନଙ୍କ ବ୍ରୋଞ୍ଜ ମୂର୍ତ୍ତି ଜୀବନ୍ୟାସ ପାଇ କହି ଉଠେ -

''ଉଠରେ ଉଠରେ ଉତ୍କଳ ସନ୍ତାନ

ଉଠିବୁ ତୁ କେବେ ଦିନେ ।''

-o-

# ରାମେଷ୍ଟ ଫାଲ୍‌ଗୁନି ସଖା

କ୍ୟାଲେଣ୍ଡରଟିଏ ଆଣିଥିଲି । କୁରୁକ୍ଷେତ୍ର ସମରାଙ୍ଗନର ପୃଷ୍ଠଭୂମିରେ ଗୋଟିଏ ରଥର ଚିତ୍ର । ଧନୁର୍ଦ୍ଧର ପାର୍ଥ ସେଥିରେ ରଥୀ ଏବଂ ଚକ୍ରଧର କୃଷ୍ଣ ତା'ର ସାରଥି । ରଥଟିର ଧ୍ୱଜାରେ ହନୁମାନଙ୍କର ଚିତ୍ର ଅତି ସ୍ପଷ୍ଟ ଓ ପ୍ରଭାବଦୀପ୍ତ । ମନେ ପଡ଼ିଗଲା କୌଣସି ଗୋଟିଏ ଶ୍ଳୋକର ଅଂଶ- ''ରାମେଷ୍ଟ



ଫାଲ୍‌ଗୁନି ସଖା, ପିଙ୍ଗାକ୍ଷୋଽମିତ ବିକ୍ରମଃ ।'' ଆକ୍ଷି ଆଗରେ ସତେ ଯେମିତି ରାମାୟଣରୁ ମହାଭାରତ, ରାମେଶ୍ୱରମ୍‌ରୁ କୁରୁକ୍ଷେତ୍ର ପର୍ଯ୍ୟନ୍ତ ବିରାଟ ଇଲାକା ବିସ୍ତୃତ ହୋଇଗଲା । ମୋର ପ୍ରିୟତମ ଭାରତ ଭୂମିର ପବିତ୍ର ପରମ୍ପରା ଆଖି ଆଗରେ ଉଦ୍‌ଭାସିତ ହୋଇ ଉଠିଲା । ସ୍ମୃତିପଟରୁ ଗୁଞ୍ଜରିତ ହୋଇ ଉଠିଲା -

''ଗାୟନ୍ତି ଦେବାଃ କୀଳ ଗୀତିକାନି ଧନ୍ୟାସ୍ତେ ଯେ ଭାରତ ଭୂମିଭାଗେ
ସ୍ୱର୍ଗାପବର୍ଗାସ୍ପଦମାର୍ଗଭୂତେ ଭବନ୍ତି ଭୂୟଃ ପୁରୁଷାଃ ସୁରତ୍ୱାତ୍ ।

ସ୍ୱର୍ଗ ଏବଂ ଅପବର୍ଗପ୍ରଦ ଏହି ଭାରତ ଭୂମି ଦେବ ବନ୍ଦିତ । ସ୍ୱର୍ଗ ଏବଂ ମୋକ୍ଷର ଦ୍ୱାର ସ୍ୱରୂପ ଭାରତଭୂମିରେ ମାନବ ରୂପ ଧାରଣ କରି ପୁନର୍ଜନ୍ମ ଗ୍ରହଣ କରୁଥିବା ଦେବତାମାନେ ମଧ୍ୟ ନିଜକୁ ଧନ୍ୟ ମନେ କରନ୍ତି । ଏହି ଦେବ ବିଚରଣ ଭୂମି ଭାରତର ବନ, ବିଲ, ଗିରି, କାନ୍ତାର, ନଦୀ, ହ୍ରଦ, ସମୁଦ୍ର ପ୍ରତିଟି ଅଂଶ ପବିତ୍ର ଓ ମହାନ୍ ।

ରାମାୟଣ କିଷ୍କିନ୍ଧା କାଣ୍ଡର ଘଟଣା । ଋଷ୍ୟମୂକ ପର୍ବତରେ ରାମ ଓ ଲକ୍ଷ୍ମଣ, ସୀତାଙ୍କୁ ଖୋଜି ଖୋଜି ବୁଲୁଛନ୍ତି । ଉପେନ୍ଦ୍ରଭଞ୍ଜଙ୍କ ବୈଦେହୀଶ ବିଳାସରେ ଏହାର ବର୍ଣ୍ଣନା ତ ଅତ୍ୟନ୍ତ ଜୀବନ୍ତ । ମୁଁ କିନ୍ତୁ ମୂଳ ରାମାୟଣର କଥା କହୁଛି । ସୁଗ୍ରୀବ ତ୍ରସ୍ତ ହୋଇଗଲେ । କେତେକ ବାନର ଭୟଭୀତ ହୋଇ ମାତଙ୍ଗ ମୁନିଙ୍କ ଆଶ୍ରମରେ ପଶିଗଲେ । କେହି କେହି ତ୍ରସ୍ତ ଭାବରେ ସୁଗ୍ରୀବଙ୍କୁ ଘେରିବସିଲେ । ସାହସ ଦେବାକୁ ଥିଲେ କେବଳ ହନୁମାନ । ସେ ସୁଗ୍ରୀବଙ୍କୁ ଅଭୟ ଶୁଣାଇଲେ । ତାଙ୍କରି ଅନୁରୋଧ କ୍ରମେ ଭିକ୍ଷୁବେଶ ଧାରଣ କରି ରାମ ଲକ୍ଷ୍ମଣଙ୍କ ନିକଟରେ ପହଞ୍ଚିଲେ । ଅତ୍ୟନ୍ତ ମର୍ଯ୍ୟାଦାପୂର୍ଣ୍ଣ, ବିନମ୍ର, ପ୍ରାଜ୍ଞସୁଲଭ ଢଙ୍ଗରେ ମଧୁର ଆଳାପ

କରି ପରିଚୟ ମାଗିଲେ । ନିଜର ପରିଚୟ ଦେଲେ । ତାଙ୍କର କଥା ଶୁଣି ଶ୍ରୀରାମ ଲକ୍ଷ୍ମଣଙ୍କୁ କହିଲେ -

''ସଚିବୋଽୟଂ କପୀନ୍ଦ୍ରସ୍ୟ ସୁଗ୍ରୀବସ୍ୟ ମହାତ୍ମନଃ ।
ତମେବ କାଙ୍‌କ୍ଷମାଣସ୍ୟ ମମାନ୍ତିକମିହା ଗତଃ ।।
ଅଭିଭାଷସ୍ୱ ସୌମିତ୍ରେ ସୁଗ୍ରୀବସଚିବଂ କପିମ୍ ।
ବାକ୍ୟଜ୍ଞଃ ମଧୁରୈର୍ବାକ୍ୟୈଃ ସ୍ନେହଯୁକ୍ତମରିଂଦମମ୍ ।।
ନାନୃଗ୍‌ବେଦବିନୀତସ୍ୟ ନାଯଜୁର୍ବେଦ ଧାରିଣଃ ।
ନାସାମବେଦବିଦୁଷଃ ଶକ୍ୟମେବଂ ବିଭାଷିତୁମ୍ ।।
ନୂନଂ ବ୍ୟାକରଣଂ କୃତ୍ସ୍ନମନେନ ବହୁଧା ଶ୍ରୁତମ୍ ।
ବହୁବ୍ୟାହରତାନେନ ନ କିଞ୍ଚିଦପଶବ୍ଦିତମ୍ ।।
ନ ମୁଖେ ନେତ୍ରୟୋଶ୍ଚାପି ଲଲାଟେ ଚ ଭ୍ରୁବୋସ୍ତଥା ।
ଅନ୍ୟେଷ୍ୱପି ଚ ସର୍ବେଷୁ ଦୋଷଃ ସମ୍ବିଦିତଃ କ୍ୱଚିତ୍ ।।
ଅବିସ୍ତର ମସଂଦିଗ୍ଧ ମବିଲମ୍ବିତମବ୍ୟଥମ୍ ।
ଉରସ୍ଥଂ କଣ୍ଠଗଂ ବାକ୍ୟଂ ବର୍ତ୍ତତେ ମଧ୍ୟମସ୍ୱରମ୍ ।।
ସଂସ୍କାର କ୍ରମସଂପନ୍ନାମଦ୍ରୁତାମ ବିଳମ୍ବିତାମ୍ ।
ଉଚ୍ଚାରୟତି କଲ୍ୟାଣୀଂ ବାଚଂ ହୃଦୟ ହର୍ଷିଣୀମ୍ ।।

'' ଏ ବାନରାଧିପତି ସୁଗ୍ରୀବଙ୍କର ମନ୍ତ୍ରୀ । ତାଙ୍କରି ଇଚ୍ଛାରେ ମୋ ନିକଟକୁ ଆସିଛନ୍ତି । ସୌମିତ୍ରେ, ସୁଗ୍ରୀବଙ୍କର ମନ୍ତ୍ରୀ ଏହି ବାନରଙ୍କ ସହିତ ତୁମେ କଥାବାର୍ତ୍ତା କର । ଏ କଥା ବୁଝିବା ଲୋକ, ସ୍ନେହଶୀଳ, ଶତ୍ରୁ ଦମନକାରୀ । ତୁମେ ମଧୁର ବଚନ କହି ଏହାଙ୍କ ସଙ୍ଗେ ଆଳାପ କର । ଯେ ଋଗ୍‌ବେଦ ଶିକ୍ଷା କରିନାହିଁ, ଯିଏ ସାମବେଦରେ ବିଦ୍ୱାନ ନୁହେଁ, ସିଏ କଦାପି ଏପରି କଥାବାର୍ତ୍ତା କରି ପାରିବ ନାହିଁ । ଏ ନିଶ୍ଚୟ ସମସ୍ତ ବ୍ୟାକରଣ ଶାସ୍ତ୍ର ବହୁବାର ଶୁଣିଛନ୍ତି । କାରଣ ବହୁତ କଥା କହିଲେ ମଧ୍ୟ ଇଏ କୌଣସି ଅଶୁଦ୍ଧ ଶବ୍ଦ ବ୍ୟବହାର କରି ନାହାନ୍ତି । ଏହାଙ୍କର ମୁଖ, ଚକ୍ଷୁ, ଲଲାଟ, ଭ୍ରୂଲତା ବା ଅନ୍ୟ କୌଣସି ଅଙ୍ଗରେ ମଧ୍ୟ କଥା କହିଲା ବେଳେ କୌଣସି ଦୋଷ ଲକ୍ଷିତ ହୋଇନାହିଁ । ଇଏ ଅତି ସଂକ୍ଷେପରେ ବକ୍ତବ୍ୟ ପ୍ରକାଶ କରିଛନ୍ତି । ଏହାଙ୍କ କଥାରେ ଏପରି କିଛି ନାହିଁ ଯେଉଁଥିରେ କି

ଲେଶମାତ୍ର ସନ୍ଦେହ ହେବ । କଥା କହିବାରେ ଟିକିଏ ହେଲେ ବିଳମ୍ବ ହୋଇ ନାହିଁ ବା ଏହାଙ୍କ କଥାରେ ବାଧିବା ଭଳି କିଛି ନାହିଁ । ହୃଦୟର ଭାବ ମଧ୍ୟମ ସ୍ୱରରେ କହିଛନ୍ତି । ଅତି ଉଚ୍ଚ ଅଥବା ଅତି ନିମ୍ନ ସ୍ୱରରେ କହିନାହାନ୍ତି । ଅଧିକ ଚଞ୍ଚଳ ଭାବରେ ନୁହେଁ କି ଅଧିକ ବିଳମ୍ବରେ ନୁହେଁ, ସଂସ୍କାର ଓ ଉଚ୍ଚାରଣର ଶାସ୍ତ୍ରୀୟ ପଦ୍ଧତି ଅନୁସାରେ ମଧୁର ବଚନ କହି ହୃଦୟକୁ ପ୍ରସନ୍ନ କରି ଦେଇଛନ୍ତି ।'' ଭାଷା ଶିକ୍ଷା ଓ ବ୍ୟବହାରର କି ଅପୂର୍ବ ପରମ୍ପରା ଏ ଦେଶରେ ପ୍ରଚଳିତ ଥିଲା ! ହନୁମାନ୍‌ଙ୍କର ଶୁଦ୍ଧ, ସୁନ୍ଦର, ବିଚିତ୍ର ବାକ୍ୟ ଶୁଣି ଶ୍ରୀରାମଚନ୍ଦ୍ରଙ୍କର ହୃଦୟ ରସସ୍ନାତ ହୋଇଯାଇଛି । ସେ ବିହ୍ୱଳ ହୋଇ ଉଠିଛନ୍ତି ।

ସୁଗ୍ରୀବ ସୀତାଙ୍କର ସନ୍ଦେଶ ଆଣିବା ପାଇଁ ଋକ୍ଷ ବାନର-ଯୂଥଙ୍କୁ ପୂର୍ବ, ପଶ୍ଚିମ, ଉତ୍ତର ଦିଗକୁ ଯିବାଲାଗି ନିର୍ଦ୍ଦେଶ ଦେଇସାରି ହନୁମାନଙ୍କ ନିକଟରେ ପହଞ୍ଚିଲେ । ତାଙ୍କୁ ପ୍ରୀତିପୂର୍ଣ୍ଣ ବାକ୍ୟରେ କହିଲେ- ''ହେ ବାନର ଶ୍ରେଷ୍ଠ, କି ପୃଥିବୀ, କି ଅନ୍ତରୀକ୍ଷ, କି ଆକାଶ, କି ସ୍ୱର୍ଗ, କି ଜଳ କୌଣସିଠାରେ ତୁମର ଗତିର ପ୍ରତିବନ୍ଧକ ନାହିଁ । ଅସୁର, ଗନ୍ଧର୍ବ, ନାଗ, ନର, ଦେବତା ପ୍ରଭୃତି ସକଳ ଲୋକ ଏବଂ ସାଗର ପର୍ବତ, ସମଗ୍ର ପୃଥିବୀ ତୁମକୁ ବିଦିତ ଅଛି । ହେ କପି ଶ୍ରେଷ୍ଠ, ଗତି, ବେଗ, ତେଜ ଏବଂ ଲଘୁତା ଏ ସମସ୍ତ ବିଷୟରେ ତୁମେ ନିଜର ପରାକ୍ରମୀ ପିତା ବାୟୁଙ୍କ ସହିତ ସମାନ । ଏ ପୃଥିବୀରେ ତୁମଭଳି ତେଜସ୍ୱୀ ପ୍ରାଣୀ କେହିନାହିଁ । ହେ ନୀତିଜ୍ଞ ହନୁମାନ୍, ତୁମଠାରେ ବଳ, ବୁଦ୍ଧି, ପରାକ୍ରମ, ଦେଶକାଳୋଚିତ କର୍ତ୍ତବ୍ୟ ସାଧନ ଓ ନୀତିଜ୍ଞାନ ବିଦ୍ୟମାନ । ସୀତା କିପରି ମିଳିବେ, ସେକଥା ତୁମେ ହିଁ ଚିନ୍ତାକର ।'' ଏହି ସମୟରେ ହନୁମାନଙ୍କୁ ଦେଖି ଶ୍ରୀରାମଚନ୍ଦ୍ର ନିଜକୁ କୃତାର୍ଥ ମନେକରିଛନ୍ତି । କେବଳ ହନୁମାନ ହିଁ ସୀତାଙ୍କୁ ଠାବ କରିପାରିବେ ବୋଲି ପ୍ରତ୍ୟୟ ପ୍ରକାଶ କରି, ନିଜର ନାମାଙ୍କିତ ମୁଦ୍ରିକାଟି ତାଙ୍କ ହାତକୁ ବଢ଼ାଇ ଦେଇଛନ୍ତି । ବହୁ ସମ୍ମାନଜନକ ସମ୍ବୋଧନ କରି ନିଜର ଆସ୍ଥା ସ୍ଥାପନ କରିଛନ୍ତି । ସେହି ମୁଦ୍ରିକାଟିକୁ ଦେଖିଲେ ସୀତା ତାଙ୍କୁ ଶ୍ରୀରାମ ଦୂତ ବୋଲି ଚିହ୍ନି ପାରିବେ ଏବଂ ତାଙ୍କ ମନରେ କୌଣସି ଉଦ୍‌ବେଗ ଜାତ ହେବନାହିଁ ବୋଲି ସୂଚନା ଦେଇଛନ୍ତି । ହନୁମାନ ଯେତେବେଳେ ସେହି ମୁଦ୍ରିକାଟିକୁ ମୁଣ୍ଡରେ ଲଗାଇ, ପ୍ରଣାମ କରି ବିଶାଳ ବାନରସେନା ସହିତ ଯାଇଛନ୍ତି, ସେତିକି ବେଳେ ଶ୍ରୀରାମଚନ୍ଦ୍ର କହିଛନ୍ତି -

ଅତିବଳ ବଳମାଶ୍ରି ତସ୍ତବାହମ୍
ହରିବର ବିକ୍ରମୈରନଳ୍ପୈଃ
ପବନସୁତ ଯଥାଧିଗମ୍ୟତେ ସା
ଜନକ ସୁତା ହନୁମଂସ୍ତଥା କୁରୁଷ୍ୱ ।।

'ହେ ବାୟୁପୁତ୍ର, ଅତିବଳୀ ହନୁମାନ ! ମୁଁ ତୁମ ବଳକୁ ଆଶ୍ରା କରିଛି । ସୀତା ଯେପରି ମିଳିବେ ବିଶେଷ ପରାକ୍ରମର ସହିତ ତୁମେ ତାହାର ବିଧାନ କର ।'

ସମ୍ପାତିଙ୍କଠାରୁ ଲଙ୍କାର ସନ୍ଦେଶ ପାଇବା ପରେ ସମୁଦ୍ର ଲଙ୍ଘନର ମନ୍ତ୍ରଣା ପଡ଼ିଛି । ଅଙ୍ଗଦ ସସମ୍ମାନରେ ପଚାରିଛନ୍ତି -

କ ଇଦାନୀଂ ମହାତେଜା ଲଂଘୟିଷ୍ୟତି ସାଗରମ୍ ।
କଃ କରିଷ୍ୟତି ସୁଗ୍ରୀବଂ ସତ୍ୟସନ୍ଧମରିନ୍ଦମମ୍ ।।
କୋ ବୀରୋ ଯୋଜନଶତଂ ଲଙ୍ଘୟତେ ପ୍ଲବଙ୍ଗମଃ
ଇମାଂଶ୍ଚ ଯୂଥପାନ୍ ସର୍ବାନ୍ମୋଚୟେ କୋ ମହାଭୟାତ୍ ।।
ଯଦି କଶ୍ଚିତ୍ସମର୍ଥୋ ବଃ ସାଗରପ୍ଲବନେ ହରିଃ ।
ସ ଦଦାତ୍ୱିହ ନଃ ଶୀଘ୍ରଂ ପୁଣ୍ୟାମଭୟ ଦକ୍ଷିଣାମ୍ ।।''

କେଉଁ ମହାତେଜା ବର୍ତ୍ତମାନ ଏହି ସାଗରକୁ ପାରିହୋଇ ଯାଇପାରିବେ ? କିଏ ଶତ୍ରୁହନ୍ତା ସୁଗ୍ରୀବଙ୍କୁ ସତ୍ୟ ପ୍ରତିଜ୍ଞା କରିପାରିବେ ? କେଉଁ ବୀର ବାନର ଶତଯୋଜନ ବିସ୍ତୃତ ସମୁଦ୍ରକୁ ଲଙ୍ଘନ କରି ଏହି ବାନର ଦଳପତିମାନଙ୍କୁ ଭୟରୁ ତ୍ରାଣ କରିପାରିବେ ? ଆପଣ ମାନଙ୍କ ମଧ୍ୟରୁ ଯଦି କୌଣସି ବାନର ସମର୍ଥ ଅଟନ୍ତି ତେବେ ଶୀଘ୍ର ଆମ୍ଭଙ୍କୁ ପବିତ୍ର ଅଭୟ ଦକ୍ଷିଣା ପ୍ରଦାନ କରନ୍ତୁ ।'' ଅଙ୍ଗଦଙ୍କ କଥା ଶୁଣି କାହାରି ପାଟିରୁ କଥା ବାହାରିଲା ନାହିଁ । ସମସ୍ତଙ୍କ ମୁଖମଣ୍ଡଳ ମ୍ଳାନ ହୋଇଗଲା । କିଛି ସମୟ ପରେ ମନରେ ଦମ୍ଭ ବାନ୍ଧି ଗଜ, ଗବାକ୍ଷ, ଗବୟ, ଗନ୍ଧମାର୍ଦ୍ଦନ, ଶରଭ, ମୈନ୍ଦ, ଦ୍ୱିବିନ୍ଦ, ଅଙ୍ଗଦ, ଜାମ୍ବବାନ ନିଜ ନିଜ ଗମନ ଶକ୍ତି ପ୍ରକାଶ କଲେ । କିନ୍ତୁ ସମୁଦ୍ର ଲଙ୍ଘନ କରି କାର୍ଯ୍ୟରେ ସିଦ୍ଧି ହାସଲ କରି ପୁଣି ଫେରି ଆସିବା ଲାଗି କାହାରି ସାହସ କୁଳେଇଲା ନାହିଁ। ସେତେବେଳେ ହନୁମାନ ଗୋଟିଏ କଣରେ ଚୂପ୍‌ଚାପ୍ ବସି କଅଣ

ଭାବୁଥିଲେ । ବୟୋଜ୍ୟେଷ୍ଠ ମହାବୀର ଜାମ୍ବବାନ ବଡ଼ ଦମ୍ଭ ବାନ୍ଧି ତାଙ୍କ ନିକଟରେ ପହଞ୍ଚିଲେ ।

ଜାମ୍ବବାନ ହନୁମାନଙ୍କର ଶକ୍ତି ଜାଣନ୍ତି । ସେ ତାଙ୍କୁ ସମ୍ବୋଧନ କରି କହିଲେ-

ବୀର ବାନର ଲୋକସ୍ୟ ସର୍ବଶାସ୍ତ୍ରବିଦାଂବର
ତୂଷ୍ଣୀ ମେକାନ୍ତମାଶ୍ରିତ୍ୟ ହନୁମନ୍ କିଂ ନଜଳ୍ପସି ॥
ହନୁମନ୍ ହରିରାଜସ୍ୟ ସୁଗ୍ରୀବସ୍ୟ ସମୋ ହ୍ୟସି
ରାମ ଲକ୍ଷ୍ମଣୟୋଶ୍ଚାପି ତେଜସଃ ଚ ବଳେନ ଚ ॥
ଅରିଷ୍ଟ ନେମିନଃ ପୁତ୍ରୋ ବୈନତେୟୋ ମହାବଳଃ
ଗରୁଡ଼ାନିବ ବିଖ୍ୟାତ ଉତ୍ତମଃ ସର୍ବ ପକ୍ଷିଣାମ୍ ॥
ବହୁଶୋ ହି ମୟା ଦୃଷ୍ଟଃ ସାଗରେ ସ ମହାବଳଃ
ଭୁଜଙ୍ଗାନୁଦ୍ଧରନ୍ ପକ୍ଷୀ ମହାବାହୁର୍ମହାବଳଃ ॥
ପକ୍ଷୟୋର୍ଯଦ୍ ବଳଂ ତସ୍ୟ ଭୁଜ ବୀର୍ଯବଳଂ ତବ ।
ବିକ୍ରମଶ୍ଚାପି ତେଜଶ୍ଚ ନତେ ତେନାପହୀୟତେ
ବଳଂ ବୁଦ୍ଧିଶ୍ଚ ତେଜଶ୍ଚ ସତ୍ତ୍ୱଂ ଚ ହରି ପୁଙ୍ଗବ
ବିଶିଷ୍ଟଂ ସର୍ବଭୂତେଷୁ କିମାତ୍ମାନଂ ନ ସଜସେ ॥

"ହେ ସର୍ବଶାସ୍ତ୍ରଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ ବାନର ଜଗତର ପ୍ରଧାନବୀର ହନୁମାନ, ତୁମେ କାହିଁକି ତୁନି ହୋଇ ଏକାକୀ ବସି ରହିଛ ? କାହିଁକି କିଛି କହୁନାହଁ ? ହେ ହନୁମାନ୍ ତୁମେ ବାନରରାଜା ସୁଗ୍ରୀବଙ୍କ ସମାନ ଏବଂ ତେଜ ଓ ବଳରେ ରାମ ଏବଂ ଲକ୍ଷ୍ମଣଙ୍କର ମଧ୍ୟ ସମକକ୍ଷ । ଅରିଷ୍ଟ ନେମିଙ୍କ ପୁତ୍ର, ସମସ୍ତ ପକ୍ଷୀଙ୍କ ମଧ୍ୟରେ ଶ୍ରେଷ୍ଠ, ମହାବଳୀ ବିନତା ପୁତ୍ରଙ୍କ ଭଳି ତୁମେ ବିଖ୍ୟାତ । ସେହି ମହାବଳୀ, ମହାବାହୁ ଗରୁଡ଼ ପକ୍ଷୀଙ୍କୁ ମୁଁ ଅନେକବାର ସମୁଦ୍ର ମଧ୍ୟରେ ସର୍ପମାନଙ୍କୁ ତ ଧରିବାର ଦେଖିଛି । ତାଙ୍କ ପକ୍ଷରେ ଯେପରି ବଳ ଅଛି, ତୁମର ବାହୁରେ ସେହିପରି ବଳଅଛି । ପରାକ୍ରମ ଓ ତେଜରେ ସେ ତୁମକୁ ବଳିଯିବେ ନାହିଁ । ହେ ବାନରାଗ୍ରଣୀ, ସବୁ ପ୍ରାଣୀଙ୍କଠାରେ ଯେତେ ବଳ, ବୁଦ୍ଧି ଓ ତେଜ ଅଛି, ତାହାଠାରୁ ତୁମର ବଳ ବୁଦ୍ଧି ଏବଂ ପରାକ୍ରମ ଅଧିକ । ତୁମେ ନିଜକୁ ସଜିତ କରୁନାହଁ କାହିଁକି ?"

ଏହି ପ୍ରସଙ୍ଗରେ ରାମଚରିତ ମାନସରେ ତୁଳସୀଦାସ ବର୍ଣ୍ଣନା କରିଛନ୍ତି-

"କହଇ ରିଛ ପତି ସୁନୁ ହନୁମାନା
କା ଚୂପ୍ ସାଧି ରହେ ହୁ ବଳବାନା ।।
ପବନ ତନୟ  ବଳାପବନ ସମାନା
ବୁଦ୍ଧି ବିବେକ ବିଜ୍ଞାନ ନିଧାନା ।।
କଓ୍ୱନ ସୋ କାଜ କଠିନ ଜଗମାହିଁ
ଜୋ  ନହିଁ ହୋଇ ତାତ ତୁଲ୍ୟ ପାହିଁ
ରାମ କାଜ ଲାଗି ତବ ଅବତାରା
ସୁନ ତହିଁ ଭୟଉ ପର୍ବତାକାରା
କନକ ବରନ ତନ ତେଜ  ବିରାଜା
ମାନହୁଁ ଅପର ଗିରିହ୍ନ କର ରାଜା
ସିଂହନାଦ କରି ବାର ହିଁ ବାରା
ଲୀଲ ହିଁ ନାଘଉଁ ଜଳନିଧି ଖାରା
ସହିତ ସହାୟ ରାବନ ହିଁ ମାରୀ
ଆନଉଁ ଇହାଁ । ତ୍ରିକୂଟ ଉପାରୀ ।।

ଋକ୍ଷପତି ଜାମ୍ବବାନ କହିଲେ- 'ହେ ହନୁମାନ୍, ହେ ବଳବାନ ଶୁଣ, ତୁମେ କାହିଁକି ଚୁପ୍‌ଚାପ୍ ହୋଇ  ବସିଛ ? ତୁମେ ବାୟୁଙ୍କର ପୁତ୍ର ଏବଂ ବାୟୁଙ୍କ ପରି ବଳବାନ୍ । ତୁମେ ବୁଦ୍ଧି, ବିବେକ, ବିଜ୍ଞାନର ଆକର । ହେ ବତ୍ସ, ତୁମ ହାତରେ ନ ହୋଇପାରିଲା ଭଳି କୌଣସି କାର୍ଯ୍ୟ ଜଗତରେ ନାହିଁ । ଶ୍ରୀରାମଙ୍କ କାର୍ଯ୍ୟ ସାଧନ ଲାଗି ତୁମେ ଅବତାର ଗ୍ରହଣ କରିଛ । ଏହା ଶୁଣୁ ଶୁଣୁ ହନୁମାନ କାୟା ବିସ୍ତାର କରି ପର୍ବତ ପରି ବିଶାଳ ରୂପ ଧାରଣ କଲେ । ତାଙ୍କର ସ୍ୱର୍ଣ୍ଣକାନ୍ତି ଶରୀର ଅପୂର୍ବ ତେଜରେ ଶୋଭାମଣ୍ଡିତ ହେଲା । ସତେ ଯେପରି କି ସେ ପର୍ବତରାଜ ସୁମେରୁଙ୍କ ଦ୍ୱିତୀୟ ଅବତାର । ସେ ବାରମ୍ବାର ସିଂହନାଦ କଲେ ଏବଂ କହିଲେ - "ମୁଁ ଏହି କ୍ଷୀର ସମୁଦ୍ରକୁ ଅକ୍ଳେଶରେ ପାନ କରିବି । ସହାୟକମାନଙ୍କ ସହିତ ରାବଣକୁ ମାରି, ତ୍ରିକୂଟ ପର୍ବତକୁ ଉପାଡ଼ି ଏଠାକୁ ଆଣିପାରିବି ।"

ଶତ ଯୋଜନ ସମୁଦ୍ର ଲଙ୍ଘନ ନିମନ୍ତେ ନିଜକୁ ପ୍ରସ୍ତୁତ କରି, ଶରୀର ମଧ୍ୟରେ ବେଗପୂର୍ଣ୍ଣ  କରୁଥିବା ବାୟୁ ପୁତ୍ର ହନୁମାନଙ୍କର ସୌନ୍ଦର୍ଯ୍ୟ ଓ ବିରାଟତ୍ୱର ବର୍ଣ୍ଣନା କରି ବାଲ୍ମୀକି ଲେଖିଛନ୍ତି-

ପ୍ରହୃଷ୍ଟା ବିସ୍ମିତାଶ୍ଚାପି ତେ ବୀକ୍ଷନ୍ତେ ସମନ୍ତତଃ ।
ତ୍ରିବିକ୍ରମଂ କୃତୋତ୍ସାହଂ ନାରାୟଣମିବ ପ୍ରଜାଃ ॥
ସଂସ୍ତୂୟମାନୋ ହନୁମାନ ବ୍ୟବର୍ଧତ୍ ମହାବଳଃ ।
ସମାବିଦ୍ଧ୍ୟ ଚ ଲାଙ୍ଗୁଳଂ ହର୍ଷାତ୍ ବଳ ମୁପେୟିବାନ୍ ॥
ତସ୍ୟ ସଂସ୍ତୂୟମାନସ୍ୟ ବୃଦ୍ଧୈର୍ବାନର ପୁଙ୍ଗବୈଃ ।
ତେଜସା ପୂର୍ଯମାଣସ୍ୟ ରୂପମାସୀଦନୁତ୍ତମମ୍ ॥
ଯଥା ବିଜୃମ୍ଭତେ ସିଂହୋ ବିବୃତେ ଗିରିଗହ୍ୱରେ ।
ମାରୁତସ୍ୟୌରସଃ ପୁତ୍ର ସ୍ତଥା ସଂପ୍ରତି ଜୃମ୍ଭତେ ॥
ଅଶୋଭତ ମୁଖଂ ତସ୍ୟ ଜୃମ୍ଭମାଣସ୍ୟ ଧୀମତଃ ।
ଆମ୍ବରୀଷୋପମଂ ଦୀପ୍ତଂ ବିଧୂଧା ଇବ ପାବକଃ ॥

'ଯେପରି ଉତ୍ସାହସମ୍ପନ୍ନ ବାମନଙ୍କୁ ତ୍ରିବିକ୍ରମ-କ୍ଷେପ କଲାବେଳେ ପ୍ରଜାମାନେ ନିରୀକ୍ଷଣ କରିଥିଲେ, ସେହିପରି ସେହି ବାନରମାନେ ଆନନ୍ଦିତ ଓ ବିସ୍ମିତ ହୋଇ ହନୁମାନଙ୍କୁ ଅବଲୋକନ କଲେ । ମହାବୀର ହନୁମାନ ପ୍ରଶଂସିତ ହୋଇ ନିଜର ଶରୀରକୁ ବଢ଼ାଇବାକୁ ଲାଗିଲେ ଏବଂ ଲାଙ୍ଗୁଳ ବାଡ଼େଇ ଓ ହର୍ଷିତ ହୋଇ ବଳ ସଞ୍ଚୟ କଲେ । ବୃଦ୍ଧ ଓ ଶ୍ରେଷ୍ଠ ବାନରମାନଙ୍କ ଦ୍ୱାରା ପ୍ରଶଂସିତ ହୋଇ ହନୁମାନଙ୍କର ଶରୀର ତେଜରେ ପୂରିଉଠିଲା ଏବଂ ତାଙ୍କର ରୂପ ଅତିଶୟ ସୁନ୍ଦର ହୋଇ ଉଠିଲା । ବିଶାଳ ପର୍ବତ ଗୁହା ମଧ୍ୟରେ ସିଂହ ଯେପରି ହାଇମାରେ, ସେହିପରି ବାୟୁପୁତ୍ର ହନୁମାନ ହାଇ ମାରିଲେ । ହାଇ ମାରିଲା ବେଳେ ସେହି ବୁଦ୍ଧିମାନ ହନୁମାନଙ୍କର ମୁଖ ଅମ୍ବରୀଷ ବା ସୂର୍ଯ୍ୟଙ୍କ ସମାନ ଶୋଭା ପାଇଲା ଏବଂ ଧୂମହୀନ ଅଗ୍ନିସଦୃଶ ଦେଖାଗଲା ।'' ଭବଭୂତି 'ଉତ୍ତରରାମଚରିତ'ରେ ହନୁମାନଙ୍କ ବୀରତ୍ୱର ବର୍ଣ୍ଣନା କରିଛନ୍ତି । କାଳିଦାସ ରଘୁବଂଶରେ ହନୁମାନଙ୍କ ସାଗର ଲଙ୍ଘନ ଏବଂ ଲକ୍ଷ୍ମଣ ଶକ୍ତିଭେଦ ସମୟରେ ଗନ୍ଧମାର୍ଦ୍ଦନ ଆଣିବାର ଉଲ୍ଲେଖ କରିଛନ୍ତି । ମହାଭାରତରେ ବୃଦ୍ଧ ହନୁମାନଙ୍କର ଲାଙ୍ଗୁଳଟିକୁ ମଧ୍ୟ ଉଠାଇବାରେ ଭୀମ ସମର୍ଥ ହୋଇ ନାହାନ୍ତି । ଅର୍ଜ୍ଜୁନଙ୍କ ରଥର ସୁରକ୍ଷା ଲାଗି ହନୁମାନଙ୍କୁ ନିବେଦନ କରାଯାଇଛି । ସତେ ଯେପରି ''ଅତୁଳିତ ବଳଧାମଂ ହେମଶୈଳାଭ ଦେହମ୍'' ହନୁମାନ ଶକ୍ତି, ବିକ୍ରମ, ବୀରତ୍ୱର ମୂର୍ତ୍ତିମନ୍ତରୂପ ।

ତୁଳସୀଦାସ ହନୁମାନଙ୍କର ବନ୍ଦନା କରି 'ଚାଳିଶା'ରେ କହିଛନ୍ତି- ପ୍ରଭୁ ମୁଦ୍ରିକା ମେଲି ମୁଖଁମାହି, ଉଦଧି ଲଙ୍ଘି ଗୟେ ଅଚରଜ ନାହିଁ ।' ଏହି ଜଳଧି

ଲଙ୍ଘନ ବେଳେ ଆମେ ବାଲ୍ମୀକି ରାମାୟଣରେ ରାମଭକ୍ତ ହନୁମାନଙ୍କ ଅପେକ୍ଷା ବୀର ହନୁମାନଙ୍କୁ ହିଁ ଦେଖିଥାଉ । ସ୍ୱୟଂ ରାମ ଚନ୍ଦ୍ର, ଯାହାଙ୍କ ବଳକୁ ଆଶ୍ରୟ କରିଥିଲେ, ସେହି ହନୁମାନ କହିଥିଲେ-

ଅରୁଜତ୍ ପର୍ବତାଗ୍ରାଣି ହୁତାଶନ ସଖୋଽନିଳଃ ।
ବଳବାନପ୍ରମେୟଶ୍ଚ ବାୟୁରାକାଶ ଗୋଚରଃ ।।
ତସ୍ୟାହଂ ଶୀଘ୍ରବେଗସ୍ୟ ଶୀଘ୍ରଗସ୍ୟ ମହାତ୍ମନଃ ।
ମାରୁତ ସ୍ୟୌରସଃ ପୁତ୍ରଃ ପ୍ଳବନେନାସ୍ମି ତତ୍ସମଃ ।।
ଉତ୍ସହେୟଂ ହି ବିସ୍ତୀର୍ଣ୍ଣମାଲିଖନ୍ତ ମିବାମ୍ବରମ୍ ।
-ମେରୁଂଗିରିମନସଙ୍ଗେନ ପରିଗନ୍ତୁଂ ସହସ୍ରଶଃ ।।
ବାୟୁବେଗ ପ୍ରଣୁନ୍ନେନ ସାଗରେଣାହମୁତ୍ସହେ ।
ସମାପ୍ଳାବୟିତୁଂ ଲୋକଂ ସପର୍ବତନଦୀହ୍ରଦଂ ।।
ମମୋରୁଜଙ୍ଘାବେଗେନ ଭବିଷ୍ୟତି ସମୁତ୍ଥିତଃ ।।
ସମୁତ୍ଥିତ ମହାଗ୍ରାହଃ ସମୁଦ୍ରୋ ବରୁଣାକର ।।
ପନ୍ନଗାଶନମାକାଶେ ପତନ୍ତଂ ପକ୍ଷି ସେବିତମ୍ ।।
ବୈନତେୟ ମହଂ ଶକ୍ତଃ ପରିଗନ୍ତୁଂ ସହସ୍ରଶଃ ।।
ଉଦୟାତ୍ ପ୍ରସ୍ଥିତଂ ବାପି ଜ୍ୱଳନ୍ତଂ ରଶ୍ମିମାଳିନମ୍ ।।
ଅନସ୍ତମିତ ମାଦିତ୍ୟମହଂ ଗନ୍ତୁଂ ସମୁତ୍ସହେ ।।

ପର୍ବତ ଶିଖରମାନଙ୍କୁ ବ୍ୟଥିତକାରୀ, ଅଗ୍ନିସଖା, ଅସୀମ-ଆକାଶ-ବିହାରୀ, ଶୀଘ୍ରଗାମୀ, ବଳବାନ ମହାତ୍ମା ପବନଙ୍କର ମୁଁ ସନ୍ତାନ, ଗମନ ବିଷୟରେ ମୁଁ ତାଙ୍କରି ସହିତ ସମାନ । ଯେଉଁ ମେରୁ ପର୍ବତ ବିସ୍ତୀର୍ଣ୍ଣ ଆକାଶକୁ ସ୍ପର୍ଶ କରିଛି, ସେହି ପର୍ବତ ଉପରେ ଆଶ୍ରୟ ନ ନେଇ ମଧ୍ୟ ମୁଁ ସହସ୍ରବାର ଯିବା ଆସିବା କରିବାକୁ ସାହସ କରୁଛି । ବାହୁବେଗ ଦ୍ୱାରା ସମୁଦ୍ରକୁ ଉଦ୍‌ବେଳିତ କରି ମୁଁ ପର୍ବତ, ନଦୀ ଓ ହ୍ରଦ ସହିତ ସମଗ୍ର ସଂସାରକୁ ବୁଡ଼ାଇ ଦେଇ ପାରିବି । ମୋର ଜାନୁବଳରେ ଏହି ବରୁଣାଳୟ ସମୁଦ୍ର ଉଦ୍‌ବେଳିତ ହୋଇ ଉଠିବ । ଏଥି ମଧ୍ୟରେ ଥିବା ବଡ଼ ବଡ଼ ଜନ୍ତୁମାନେ ଉପରକୁ ଉଠି ଆସିବେ । ସର୍ପଭୁକ୍, ଆକାଶଚାରୀ ପକ୍ଷୀମାନଙ୍କ ରାଜା ଗରୁଡ଼ଙ୍କ ସହିତ ବାଜି ରଖି ମୁଁ ସହସ୍ରବାର ଯିବାକୁ ସମର୍ଥ । ଉଦୟାଚଳରୁ ଯାତ୍ରା କରୁଥିବା କିରଣମାଳାଧାରୀ ଜ୍ୱଳନ୍ତ ସୂର୍ଯ୍ୟଙ୍କ ସଙ୍ଗେ ସଙ୍ଗେ

ସେ ଅସ୍ତାଚଳକୁ ଯିବାଯାଏ, ଯିବାକୁ ମୋର ସାହାସ ଅଛି ।'' ଦଶ ସହସ୍ର ଯୋଜନ ପର୍ଯ୍ୟନ୍ତ ଅତିକ୍ରମ କରିବାର ଶକ୍ତି ଥିବା ହନୁମାନ ବିକ୍ରମରେ ମଧ୍ୟ ଅସାଧାରଣ । ସେ କହିଛନ୍ତି-

ବାସବସ୍ୟ ସବଜ୍ରସ୍ୟ ବ୍ରହ୍ମଣୋ ବା ସ୍ୱୟମ୍ଭୁବଃ
ବିକ୍ରମ୍ୟ ସହସା ହସ୍ତାଦମୃତଂ ତଦିହାନୟେ ।

'ବଜ୍ରଧାରୀ ଇନ୍ଦ୍ର ଅଥବା ସ୍ୱୟଂଭୂ ବ୍ରହ୍ମାଙ୍କ ହାତରୁ ମୁଁ ପରାକ୍ରମ ସହକାରେ ଅମୃତ ଛଡ଼ାଇ ଏଠାକୁ ଘେନି ଆସି ପାରିବି ।' ଏଠାରେ ଆମେ ପ୍ରବଳ ପରାକ୍ରମୀ ମହାବୀର ହନୁମାନଙ୍କୁ ଦେଖୁଛୁ । ତାଙ୍କର ନାମ ସ୍ମରଣମାତ୍ରେ ବୀରମାନଙ୍କର ବାହୁରେ ଏବଂ ହୃଦୟରେ ସାହସ ସଂଚାର ହୁଏ । ସେଥିପାଇଁ ଓଡ଼ିଶାର ଆଖଡ଼ା ଘର ବା କୁସ୍ତି କସରତ୍ ଆଡ୍‌ଡ଼ାମାନଙ୍କରେ ହନୁମାନଙ୍କୁ ଇଷ୍ଟ ଦେବତା ଭାବରେ ପୂଜା କରାଯାଏ । ଗଡ଼ ରୋଡ଼ଙ୍ଗରେ ବକ୍‌ସି ଜଗବନ୍ଧୁଙ୍କ ବାରିପଟେ ଖଣ୍ଡେ ମାଙ୍କଡ଼ା ପଥରରେ ଖୋଦିତ ହନୁମାନ ମୂର୍ତ୍ତିଙ୍କୁ ଦେଖି ଜଣେ ସ୍ଥାନୀୟ ବୃଦ୍ଧଙ୍କୁ ପଚାରିଥିଲି - ''ଏଠାରେ କ'ଣ ଏହି ହନୁମାନଙ୍କର ପୂଜା ହୁଏ ?'' ସେ ଉତ୍ତର ଦେଲେ - ''ହନୁମାନ ଆମର ଇଷ୍ଟ । ବଡ଼ ମୂର୍ତ୍ତି ହୁଅନ୍ତୁ କିବା ସାନ ପଥର ଖଣ୍ଡକରେ ହୁଅନ୍ତୁ, ତାଙ୍କୁ ସନ୍ତୁଷ୍ଟ ନ କଲେ ଦେହରେ ମହାବୀର କାହୁଁ ଆସିବ ।'' ଶୁଣିଥିଲି ଶିବାଜୀ ହନୁମାନଙ୍କ ଭକ୍ତ ଥିଲେ । ମହାରାଷ୍ଟ୍ରୀୟ ଶକ୍ତି ପଛରେ ମହାବୀରଙ୍କର ଆଶୀର୍ବାଦ ଥିଲା । ପୁନାରେ କେତେକ ହନୁମାନ ମନ୍ଦିର ଅଛି । ମହାରାଷ୍ଟ୍ରରେ ହନୁମାନ ପୂଜା ଏବେ ମଧ୍ୟ ପ୍ରସିଦ୍ଧ । ଶିବାଜୀଙ୍କ ଗୁରୁ ରାମ ଦାସ ମଧ୍ୟ କେତେକ ହନୁମାନ ମନ୍ଦିର ପ୍ରତିଷ୍ଠା କରିଥିଲେ । ମହାବୀରଙ୍କ ଆଶୀର୍ବାଦ ଲାଭ କରି ମରହଟ୍ଟା ଶକ୍ତି ଭାରତରେ ଏକ ଦୁର୍ଦ୍ଧର୍ଷ ଶକ୍ତି ଭାବରେ ଉଭା ହୋଇଥିଲା । ଓଡ଼ିଆରେ ସାରଳା ଦାସ, ବଳରାମ ଦାସ ପ୍ରମୁଖ ମହାଭାରତ ଓ ରାମାୟଣରେ ହନୁମାନଙ୍କର ମାହାତ୍ମ୍ୟ ଉଲ୍ଲେଖ କରିଛନ୍ତି ।

ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ ନରସିଂହଙ୍କ ପରି ହନୁମାନଙ୍କ ପ୍ରତିମାରେ ବୀରତ୍ୱର ଭଙ୍ଗୀ ଲକ୍ଷ୍ୟ କରାଯାଏ । ପଞ୍ଚମୁଖି ହନୁମାନ ମୂର୍ତ୍ତି ରାଜସ୍ଥାନ, ମହାରାଷ୍ଟ୍ର, ମଧ୍ୟ ପ୍ରଦେଶର ଉଜ୍ଜୟିନୀ ପ୍ରଭୃତିରେ ଦେଖାଯାଏ । ସମ୍ପ୍ରତି ଭୁବନେଶ୍ୱର ରାମ ମନ୍ଦିରରେ ପଞ୍ଚମୁଖ ହନୁମାନ ମୂର୍ତ୍ତି ପ୍ରତିଷ୍ଠିତ ହୋଇଛନ୍ତି । ଶିବଙ୍କର ପଞ୍ଚମୁଖ ପରି ହନୁମାନଙ୍କର ମଧ୍ୟ ପଞ୍ଚମୁଖ କଳ୍ପନା କରାଯାଇଛି । କିନ୍ତୁ ପଞ୍ଚମୁଖ ହନୁମାନ ନିଜ ମୁଖ ସହିତ ନୃସିଂହ, ରାମ, ହୟଗ୍ରୀବ [illegible] ମାନଙ୍କ ମୁଖ [illegible]

ଏଥିରୁ ହନୁମାନଙ୍କର ଦେବତ୍ୱ ପ୍ରକାଶିତ ହେଉଛି । ମହାରାଷ୍ଟ୍ରର ଏକ ପ୍ରଚଳିତ ପରମ୍ପରାରେ ହନୁମାନଙ୍କୁ ଶିବଙ୍କର ଅବତାର ବୋଲି ବିଶ୍ୱାସ କରାଯାଏ । ଓଡ଼ିଶାର ପାଞ୍ଜିମାନଙ୍କରେ ହନୁମାନ ଜନ୍ମକୁ ଏକ ପର୍ବ ଭାବରେ ଉଲ୍ଲେଖ କରାଯାଇଛି । କିନ୍ତୁ ଭାରତର ଅନ୍ୟ କେତେକ ଅଞ୍ଚଳରେ ଏହା ବିରାଟ ଆକାରରେ ପାଳିତ ହୁଏ । ଏହା ବ୍ୟତୀତ ପ୍ରତ୍ୟେକ ଶନିବାର ଦିନ ହନୁମାନଙ୍କର ସ୍ୱତନ୍ତ୍ର ପୂଜା କରାଯାଏ । ଓଡ଼ିଶାର ପୁରୀ ଜିଲ୍ଲାର ଶିରୁଡ଼ି ଗ୍ରାମରେ ବିରାଟ ହନୁମାନ ମୂର୍ତ୍ତି ପୂଜା ପାଉଛନ୍ତି । ପ୍ରତିବର୍ଷ ଏଠାରେ ଗୋଟିଏ ବିରାଟ ମେଳା ହୁଏ । ପୁରୀର ଉତ୍ତର ଦିଗରେ ଗୁଣ୍ଡିଚା ମନ୍ଦିର ପାର ହୋଇ ଗଲାପରେ ସିଦ୍ଧ ହନୁମାନଙ୍କର ମନ୍ଦିର ଦେଖିବାକୁ ମିଳେ । ମନ୍ଦିର ସମ୍ମୁଖରେ ତାଳ, ନାରୀକେଳ ବୃକ୍ଷ-ଶୋଭିତ ବିସ୍ତୀର୍ଣ୍ଣ ପ୍ରାନ୍ତର ଏବଂ ମନ୍ଦିର ସମ୍ମୁଖରେ କ୍ଷୁଦ୍ର ପୁଷ୍କରିଣୀ । ମନ୍ଦିର ମଧ୍ୟରେ ସିଦ୍ଧ ମହାବୀରଙ୍କର ଦୀର୍ଘ ଓ ଚମତ୍କାର ମୂର୍ତ୍ତି ସିଂହାସନ ଉପରେ ସ୍ଥାପିତ । ଶ୍ରୀମନ୍ଦିରର ନାଟ ମନ୍ଦିରରେ ଥିବା ଗୋଟିଏ ସ୍ତମ୍ଭରେ ପଞ୍ଚମୁଖ ହନୁମାନଙ୍କର ଚିତ୍ର ପାରମ୍ପରିକ ଓଡ଼ିଶୀ ଭିତ୍ତିଚିତ୍ର ରୀତିରେ ଅଙ୍କିତ । ଏହି ନାଟ ମନ୍ଦିରର ବିଭିନ୍ନ ଅଂଶରେ ରାମାୟଣ ଯୁଦ୍ଧ ଚିତ୍ର ପ୍ରସଙ୍ଗରେ ହନୁମାନଙ୍କର କେତେକ ଚିତ୍ର ଓଡ଼ିଶୀ ଭିତ୍ତି ଚିତ୍ର ଢଙ୍ଗରେ ଅଙ୍କିତ ହୋଇଛି । ଏହା ବ୍ୟତୀତ ବେଢ଼ା ମଧ୍ୟରେ ଦକ୍ଷିଣ ଦ୍ୱାର ପାଖରେ ଦ୍ୱାଦଶ ହନୁମାନ ପ୍ରତିଷ୍ଠିତ । ପଶ୍ଚିମ ଦ୍ୱାର ପାହାଚ ଉପରେ ଉତ୍ତର ଆଡ଼କୁ ମଧ୍ୟ ମହାବୀର ମୂର୍ତ୍ତି ବିରାଜମାନ ହୋଇଥିବାର ଦେଖାଯାଏ । ପୁରୀରେ ଦରିଆ-ମହାବୀର ମଧ୍ୟ ପ୍ରସିଦ୍ଧ । ପୁରୀ ବ୍ୟତୀତ ଭୁବନେଶ୍ୱର, କଟକ ଏବଂ ଓଡ଼ିଶାର ଅନ୍ୟାନ୍ୟ ବହୁ ଅଞ୍ଚଳରେ ହନୁମାନ ମୂର୍ତ୍ତି ଓ ମନ୍ଦିରମାନ ଦେଖାଯାଏ । ପୂର୍ବତନ ଗଡ଼ଜାତ ଦଶପଲ୍ଲାର ଇଷ୍ଟଦେବତା ମହାବୀର ହନୁମାନ । ଏହିପରି ଓଡ଼ିଶାର ପୁରାଣ ଓ ଲୌକିକ ପରଂପରାରେ ମହାବୀର ହନୁମାନ ପୂଜା ପାଇ ଆସୁଛନ୍ତି ।

ତୁଳସୀ ଦାସ କହିଥିଲେ - "ଚାରୋ ଯୁଗ ପରତାପ ତୁମ୍ହାରା ।" ହନୁମାନ ଅମର । ଚାରିଯୁଗ ଯାକ ତାଙ୍କର ପ୍ରଭାବ ଅତୁଟ ରହେ । ସେଥିପାଇଁ ବହୁ ପ୍ରାଚୀନ ମନ୍ଦିର ଓ ମୂର୍ତ୍ତି ଥିଲେ ମଧ୍ୟ ଏବେ ବିଭିନ୍ନ ସ୍ଥାନରେ ନୂତନ ହନୁମାନ ମୂର୍ତ୍ତି ପ୍ରତିଷ୍ଠିତ ହେବାର ଏବଂ ହନୁମାନ ପୂଜାର ପ୍ରସାର ହେଉଥିବାର ଲକ୍ଷ୍ୟ କରାଯାଉଛି । ଦେଶରେ ଯୁବ ସଂପ୍ରଦାୟକୁ ବଳିଷ୍ଠ, ବିଦ୍ୱାନ, ସାହସୀ, ବିବେକଶୀଳ, କର୍ତ୍ତବ୍ୟ-ପରାୟଣ କରିବା ଦିଗରେ ଏହି ପ୍ରଭାବ ନିଶ୍ଚୟ ଶୁଭଙ୍କର ହେବ ।

# ଭାଗବତ - ଭାବନା

**କର୍ଣ୍ଣୌକୀରେଣ ଭାଷିତମ୍ :** ଦ୍ୱାପର ଯୁଗର ଅବସାନ ଆସନ୍ନ ହେଲା । ଏହି ଯୁଗ ସହିତ ଶ୍ରୀକୃଷ୍ଣ ମଧ୍ୟ ବିଦାୟ ନେଲେ । ସଂସାର ଲୀଳା ସାଙ୍ଗ କଲେ ଶିଆଳି ଲଟା ତଳେ । ନାତି ପରୀକ୍ଷିତଙ୍କୁ ଗାଦିରେ ବସାଇ ମହାଯାତ୍ରା ପଥରେ ପଥିକ ହେଲେ ପାଣ୍ଡବ ପାଞ୍ଚଭାଇ ଓ ପାଞ୍ଚାଳୀ । ପରୀକ୍ଷିତଙ୍କ ରାଜତ୍ୱ ସମୟରେ କଳି ପ୍ରବେଶ କରିଛି ଛଦ୍ମ ରୂପରେ । ତାର ଉତ୍ପାତ ଧୀରେ ଧୀରେ ଆରମ୍ଭ କରିଛି । ଦିନେ ପରୀକ୍ଷିତ ଏହା ଦେଖିପାରି କଳିକୁ ଆୟତ୍ତ କରିଛନ୍ତି । ତାର ଚଳପ୍ରଚଳ ହେବାର ସୀମା ଧାର୍ଯ୍ୟ କରି ଦେଇଛନ୍ତି । କଳି ସେଇ ସୀମା ଭିତରେ ଏକ ପ୍ରକାର ବନ୍ଦୀ ଅବସ୍ଥାରେ ରହିଛି । କିନ୍ତୁ ଦୁର୍ଦ୍ଦୈବ, ପରୀକ୍ଷିତ ନିଜେ ବେଶିଦିନ ବଞ୍ଚିପାରି ନାହାନ୍ତି । ଗୋଟାଏ ବିଚିତ୍ର ପରିସ୍ଥିତିରେ ପଡ଼ି ତକ୍ଷକର ଦଂଶନରେ ମୃତ୍ୟୁବରଣ କରିବାର ଅଭିଶାପ ପାଇଛନ୍ତି ସେ । ମାତ୍ର ଏହାପରେ ଶାପମୁକ୍ତି ଲାଗି ସୁଯୋଗକୁ ସୁଦ୍ଧା ପ୍ରତ୍ୟାଖ୍ୟାନ କରିଛନ୍ତି ନୈତିକତା ଦୃଷ୍ଟିରୁ । ଲୋକେ ତ ମୃତ୍ୟୁକୁ ଜୀବର କାୟା ପରିବର୍ତ୍ତନ ବୋଲି ଭାବନ୍ତି, ସେ ବା କାହିଁକି ଏଥିରେ ବିଚଳିତ ହୋଇଥାଆନ୍ତେ ? ବରଂ ଏକ ପବିତ୍ର ପାବନ ପରିବେଶ ଭିତରେ ଶୁକ ମୁନୀଙ୍କ ଠାରୁ ଭାଗବତ ତତ୍ତ୍ୱ ଶୁଣୁ ଶୁଣୁ ମରଣ ବରଣ କରିନେବାକୁ ଶ୍ରେୟ ମନେ କରିଛନ୍ତି । କିନ୍ତୁ ଏଇ ଶୁକ କିଏ ?

ଶୁକ ପୂର୍ବ ଜନ୍ମରେ ଥିଲେ ଶୁକପକ୍ଷୀ । ଏହା ଏପରି ଏକ ପକ୍ଷୀ, ଯିଏକି ବକ୍ତାର ଉଚ୍ଚାରିତ ବକ୍ତବ୍ୟକୁ ଅବିକଳ ତାଆରି ସ୍ୱରରେ କହିପାରେ । ଏକଦା ଶିବ, ପାର୍ବତୀଙ୍କୁ ବ୍ରହ୍ମଜ୍ଞାନ ବୁଝାଉଥିବା ବେଳେ ଶୁକ (ପକ୍ଷୀ ଜନ୍ମରେ) ଏମାନଙ୍କ ଦୃଷ୍ଟିର ଅନ୍ତରାଳରେ ଗଛଡ଼ାଳରେ ବସି ଶୁଣୁଥିଲେ । ଅଥଚ ପାର୍ବତୀ ନିଜେ ନିଦ୍ରାଗଲେ । ଯେତେବେଳେ ଶିବ ଏହା ଜାଣିପାରିଲେ, ସେ ପକ୍ଷୀଟିକୁ ଧରିବାକୁ ଧାଇଁଲେ । ପକ୍ଷୀଟି ଆତ୍ମରକ୍ଷା ପାଇଁ ଜୀବନ ବିକଳରେ କ୍ଷୁଦ୍ରାତିକ୍ଷୁଦ୍ର ରୂପରେ ବ୍ୟାସଦେବଙ୍କ ପତ୍ନୀଙ୍କ ଗର୍ଭରେ ପଶିଗଲେ । ସେହି ପୁଣ୍ୟ ଗର୍ଭରେ ବାରବର୍ଷ ରହିବା ପରେ ବ୍ୟାସଦେବଙ୍କ ଆଦେଶରେ ଜନ୍ମଗ୍ରହଣ କଲେ ତାଙ୍କର ପୁତ୍ର ଭାବରେ ।

ଚଢ଼େଇଟିଏ ତ, ହେଉ ପଛକେ ଶୁକପକ୍ଷୀ, ସେ ତାର ସ୍ୱଭାବ ଅନୁସାରେ ଗଛରୁ ଗଛକୁ ଯାଇ ଫଳାହାର କରିବା କଥା । ତାର ସାଙ୍ଗ ପକ୍ଷୀମାନେ ତାହାହିଁ କରୁଥିବେ । କିନ୍ତୁ ସେଇ ନିର୍ଦ୍ଦିଷ୍ଟ ଶୁକପକ୍ଷୀଟି କାହିଁକି ଗଛ ଡାଳରେ ଥାଇ ଶିବ-ପାର୍ବତୀଙ୍କ ବ୍ରହ୍ମଜ୍ଞାନ ଚର୍ଚ୍ଚାକୁ କାନଡ଼େରି ଶୁଣିଲା ? ପୁଣି ତତ୍ତ୍ୱ ଯିଏ ଶୁଣିବା କଥା ବା ଯିଏ ଶୁଣୁଥିଲେ, ସେ ଶୋଇପଡ଼ିଲେ କାହିଁକି ? ଏହା ସତ୍ୟ ଯେ - ଅଳସ ନିଦ୍ରାଳୁ ମନ ବା ସ୍ୱଭାବ ନେଇ ଜ୍ଞାନ ଗ୍ରହଣ କରାଯାଏ ନାହିଁ । କରାଯାଇ ପାରେନା । ଏଥିପାଇଁ ଶ୍ରଦ୍ଧାଳୁ ସଚେତ, ଜ୍ଞାନ ନିକଟରେ ସମର୍ପିତ ମନଟିଏ ଲୋଡ଼ା । ଏହା କେବଳ ସେଇ ଶୁକପକ୍ଷୀ ଠାରେ ହିଁ ଥିଲା । ପୁଣି ଗୋପନରେ ଅଥବା କେତୋଟି ସୀମିତ ସ୍ଥାନରେ ଆବଦ୍ଧ ହୋଇ ରହିଯିବା ଜ୍ଞାନର ଧର୍ମ ନୁହେଁ । ଏହା ବ୍ୟାପ୍ତ ହେବ । ପ୍ରସାରିତ ହେବ । ପ୍ରତ୍ୟେକ ଜ୍ଞାନପିପାସୁ ନିକଟରେ ପହଞ୍ଚିବ । ଏହିପରି ସୂଚନା ମିଳୁଛି ଏହି ଉପାଖ୍ୟାନରୁ ।.......... ସୁତରାଂ ଶୁକ ବ୍ୟାସଙ୍କର ପୁତ୍ର ଭାବରେ ଅବତୀର୍ଣ୍ଣ ହେଲେ ।

'ବ୍ୟାସ' ଶବ୍ଦର ଅର୍ଥ ବିସ୍ତାର । ଯିଏ ବେଦରେ ଥିବା ଜ୍ଞାନକୁ ବିସ୍ତାର କରନ୍ତି, ସେ ବ୍ୟାସ । ବିଷ୍ଣୁ ଅଂଶରେ ଏହିପରି ଅନେକ ବ୍ୟାସ ଅବତାର ଗ୍ରହଣ କରିଛନ୍ତି । 'ଶୁକ-ତାତ' ବ୍ୟାସ ସେମାନଙ୍କ ଭିତରୁ ଅନ୍ୟତମ । ଶୁକ, ଶିବଙ୍କଠାରୁ ବ୍ରହ୍ମଜ୍ଞାନ ପାଇ ବ୍ୟାସଙ୍କ ପୁତ୍ର ଭାବରେ ଜନ୍ମଗ୍ରହଣ କରିବା ଏକ ଅଦ୍ଭୁତ ସଂଯୋଗ । ସେହି ଶୁକଦେବ ପହଞ୍ଚିଛନ୍ତି ମୁନିଋଷିଙ୍କ ସମାବେଶରେ ଥାଇ ଶାନ୍ତ ଭାବରେ ମୃତ୍ୟୁକୁ ଅପେକ୍ଷା କରୁଥିବା ପରୀକ୍ଷିତଙ୍କ ସମୀପରେ । ମହାରାଜା ପରୀକ୍ଷିତ ତାଙ୍କରିଠାରୁ ଦ୍ୱାପର ଯୁଗରେ ଦୁଷ୍ଟ ଦୁର୍ଜ୍ଜନଙ୍କ ଉତ୍ପାତରୁ ସଂସାରକୁ ସମ୍ଭାଳି ଶାନ୍ତି ପ୍ରତିଷ୍ଠା କରିଯାଇଥିବା ଶ୍ରୀକୃଷ୍ଣଙ୍କ ଲୀଳା କଥା ଶୁଣୁ ଶୁଣୁ ଦେହତ୍ୟାଗ କରିଛନ୍ତି । ଶୁଣିବା ଭିତରେ ସେ ଅନେକ କଥା ପଚାରିଛନ୍ତି । ସନ୍ଦେହ ମୋଚନ କରିଛନ୍ତି । ତାରି ଭିତରେ ଆଖ୍ୟାନ, ଉପାଖ୍ୟାନ, ପ୍ରଶ୍ନ ଉତ୍ତର ମାଧ୍ୟମରେ ବହୁ ତତ୍ତ୍ୱ, ବହୁ ତଥ୍ୟ ପ୍ରକାଶ ପାଇଛି । ଏହା ଗ୍ରଥିତ ହୋଇଛି ଶ୍ରୀମଦ୍ ଭାଗବତ ପୁରାଣରେ । ଶୁକଦେବ ପୂର୍ବ ଜନ୍ମରେ ପକ୍ଷୀ ଥିବାରୁ କୁହାଯାଇଛି - "ଶ୍ରୀମଦ୍ ଭାଗବତ ଶାସ୍ତ୍ରଂ କଳୌ କୀରେଣ ଭାଷିତମ୍ ।" ଏହା ନିଗମ କଳ୍ପତରୁ ବା ବେଦ-ବୃକ୍ଷର ଫଳ । ଅର୍ଥାତ୍ ସମସ୍ତ ବେଦ ଉପନିଷଦ୍‌ରୁ ବାହାରିଥିବା ଫଳ ବା ସାରତତ୍ତ୍ୱ । ଶୁକଦେବଙ୍କର କଥନ ଶୈଳୀର ମାଧୁର୍ଯ୍ୟରେ ରସାଳ ଅମୃତ-ମୟ ହୋଇ ପ୍ରକାଶ ପାଇଥିଲା । ତାହା ଶୁଣୁ ଶୁଣୁ କଳିଯୁଗକୁ ଆୟତ୍ତରେ ରଖିପାରିଥିବା ମହାମହୀମ ନରପତି

ପରୀକ୍ଷିତଙ୍କର ଜୀବନ ଦୀପ ନିର୍ବାପିତ ହୋଇଥିଲା । ଫଳରେ କଳିଯୁଗ ବଳ ବହପ ପାଇଲା । ତାକୁ ସଂଯତ କରିବ କିଏ ? କାହାର ବା ସାମର୍ଥ୍ୟ ଅଛି ତାର ପ୍ରଭାବକୁ କ୍ଷୁର୍ଣ୍ଣ କରିବ ?

**ମିଳିଲେ ନୈମିଷ ଅରଣ୍ୟେ :**

ନୂଆ ଯୁଗ ନୂଆ ସମସ୍ୟା ଓ ସମ୍ଭାବନା ଘେନି ପ୍ରବେଶ କରେ । ସମାଜର ଶିଷ୍ଟ ସମ୍ପ୍ରଦାୟ ସମସ୍ୟାର ସମ୍ମୁଖୀନ ହେବା ଓ ସମ୍ଭାବନାର ଉପଯୋଗ କରିବା କଥା ଚିନ୍ତା କରନ୍ତି । ଏପରି ଏକ ପରିସ୍ଥିତି ଉପୁଜିଛି, ଯେତେବେଳେ ଦ୍ୱାପର ଯୁଗ ସରିବା ସହିତ ସେହି ଯୁଗର ଅବତାର ଶ୍ରୀକୃଷ୍ଣ ତାଙ୍କର ଦାୟିତ୍ୱ ସଂପନ୍ନ କରିସାରି ବିଦାୟ ନେଇଛନ୍ତି ଏବଂ କଳିଯୁଗ ପ୍ରବେଶ କରିଛି ମହାରାଜା ପରୀକ୍ଷିତଙ୍କ ଅମଳରେ । ପରୀକ୍ଷିତ ଦକ୍ଷ । ସେ ଏହି ନବ ଯୁଗର ସମସ୍ୟା ଓ ସମ୍ଭାବନାକୁ ଚାହିଁ ଉପଯୁକ୍ତ ପଦକ୍ଷେପ ନେବା ଭଳି ନୃପତି । କିନ୍ତୁ ସେ ମଧ୍ୟ ମୃତ୍ୟୁବରଣ କରିଛନ୍ତି । କଳିଯୁଗ ତାର ପ୍ରଭାବ ବିସ୍ତାର କରିବ । କରାଯିବ କ'ଣ ? ଏହି ପରିସ୍ଥିତିରେ "ଶୌନକ ଆଦି ମୁନୀଗଣେ, ମିଳିଲେ ନୈମିଷ ଅରଣ୍ୟେ ।" ଯଜ୍ଞର ଆୟୋଜନ ହେଲା । ମୁନୀଋଷିମାନଙ୍କର ଏପରି ସମାବେଶରେ ଉପସ୍ଥିତ ହେଲେ - ସୂତ । ଏହି ସୂତ କିଏ ?

କଥିତ ଅଛି, ଭଗବାନ ବିଷ୍ଣୁ ବ୍ରହ୍ମାଙ୍କୁ ଭାଗବତ ତତ୍ତ୍ୱ କହିଥିଲେ । ବ୍ରହ୍ମା ଏହା ବୁଝାଇଲେ ନାରଦଙ୍କୁ । ନାରଦ ବ୍ରହ୍ମର୍ଷି । ସେ ମହର୍ଷି ବ୍ୟାସଙ୍କୁ ଏହା ଶୁଣାଇ ଏହାର ପ୍ରସାର ପାଇଁ ପରାମର୍ଶ ଦେଲେ । ବ୍ୟାସ ଏହା କହିଲେ ପୂର୍ବରୁ ବ୍ରହ୍ମଜ୍ଞାନ ଲାଭ କରିଥିବା ତାଙ୍କର ପୁତ୍ର ଶୁକଦେବଙ୍କୁ । ଶୁକଙ୍କଠାରୁ ଶୁଣିଲେ - ସୂତ । ସୂତ ଏହା ପ୍ରକାଶ କଲେ ନୈମିଷ ଅରଣ୍ୟରେ ସମବେତ ଋଷିମାନଙ୍କ ଆଗରେ । ଲବ୍ଧ ଜ୍ଞାନଟିଏ ଏପରି ପରମ୍ପରା କ୍ରମେ ପ୍ରବାହିତ ହୁଏ ଏବଂ ଏଥିରେ ନବ ନବଜ୍ଞାନ ମିଶି ସମୃଦ୍ଧ ହୁଏ ।

**ବିଷ୍ଣୁ - କୃଷ୍ଣ - ଜଗନ୍ନାଥ :**

ପୂର୍ବାପର ସଙ୍ଗତି ରଖି ସୂତ ଶୌନକ ଆଲୋଚନା ଆରମ୍ଭ ହୋଇଛି । ଶୌନକ ଆଦି ମୁନିଋଷିମାନେ ଗୋଟିଏ ଗୋଟିଏ ପ୍ରଶ୍ନ ପଚାରିଛନ୍ତି । ସୂତ ଆଖ୍ୟାନ, ଉପାଖ୍ୟାନ, ତତ୍ତ୍ୱ କଥନ ଆଦି ରୀତିରେ କହି ଯାଇଛନ୍ତି । ଋଷିମାନେ ପଚାରିଛନ୍ତି -

ସୂତ ଜାନାସି ଭଦ୍ରଂ ତେ ଭଗବାନ୍ ସାତ୍ୱତାଂ ପତିଃ
ଦେବ କ୍ୟାଂ ବସୁଦେବସ୍ୟ ଜାତୋ ଯସ୍ୟ ଚିକୀର୍ଷୟା
ତନ୍ନଃ ଶୁଶ୍ରୁଷ ମାଣାନା ମର୍ହସ୍ୟଙ୍ଗାନୁ ବର୍ଣ୍ଣିତୁମ୍
ଯସ୍ୟାବତାରୋ ଭୂତାନାଂ କ୍ଷେମାୟ ଚ ଭବାୟ ଚ ।

ମହାପୁରୁଷ ଜଗନ୍ନାଥ ଦାସ, ଏହି ପ୍ରସଙ୍ଗରେ କଥାଟିକୁ କହିଛନ୍ତି -

କି ପ୍ରୟୋଜନେ ଜଗନ୍ନାଥ । ଦେବକୀ ଉଦରେ ସମ୍ଭୂତ ।।
ସେ ହେତୁ କହ ଶୁଦ୍ଧ ଚିତ୍ତେ । ଆମ୍ଭେ ପଚାରୁ ଜନହିତେ ।।
ସଂସାରେ ଯାର ଅବତାର । ପ୍ରାଣୀ ମଙ୍ଗଳ ବୃଦ୍ଧିକର ।।
ଜଗତ ପାର ସେ ଚରିତ । ତୁମ୍ଭେ ତା ବର୍ଣ୍ଣନେ ସମର୍ଥ ।।

(ପ୍ରଥମ ସ୍କନ୍ଧ, ୧ମ ଅଧ୍ୟାୟ)

ଯାଦବ, ବୃଷ୍ଣି, ସାତ୍ୱତ - ଏମାନେ ଗୋଟିଏ ଜନଗୋଷ୍ଠୀ ଓ ତାର ଶାଖା । ବସୁଦେବ, ଅକ୍ରୂର ଆଦି ଏହି ଗୋଷ୍ଠୀର । ସେଥିପାଇଁ ଉପରେ ଉଦ୍ଧୃତ ସଂସ୍କୃତ ଭାଗବତ (୧ମ ସ୍କନ୍ଧ, ୧ମ ଅଧ୍ୟାୟ)ର ପଦରେ 'ଭଗବାନ ସାତ୍ୱତାଂ ପତିଃ' ବୋଲି କୁହାଯାଇଛି । ସେହି ଶ୍ଳୋକଟିର ଅର୍ଥ ହେଲା - 'ମହାଶୟ ସୂତ ଆପଣଙ୍କର କଲ୍ୟାଣ ହେଉ । ଯଦୁବଂଶର ରକ୍ଷକ ଭକ୍ତ ବତ୍ସଳ ଭଗବାନ ଶ୍ରୀକୃଷ୍ଣ ବସୁଦେବଙ୍କ ଧର୍ମପତ୍ନୀ ଦେବକୀଙ୍କ ଗର୍ଭରେ କେଉଁ ଉଦ୍ଦେଶ୍ୟରେ ବା କଅଣ କରିବାର ଇଚ୍ଛା କରି ଅବତୀର୍ଣ୍ଣ ହେଲେ ଆମେ ସେକଥା ଶୁଣିବାକୁ ଚାହୁଁଛୁ । ଆପଣ କୃପାକରି ତାହା କହନ୍ତୁ । କାରଣ ଭଗବାନଙ୍କର ଅବତାର ଜୀବମାନଙ୍କର କଲ୍ୟାଣ ଏବଂ ସେମାନଙ୍କର ଭଗବତ ପ୍ରେମମୟୀ ସମୃଦ୍ଧି ନିମନ୍ତେ ହୋଇଥାଏ ।' ଭଗବାନ ବିଷ୍ଣୁ ଦେବକୀଙ୍କ ଗର୍ଭରୁ ଶ୍ରୀକୃଷ୍ଣ ରୂପେ ଅବତୀର୍ଣ୍ଣ ହୋଇଥିଲେ । କିନ୍ତୁ ମହାପୁରୁଷ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତରେ ''ଜଗନ୍ନାଥ କାହିଁକି ଦେବକୀଙ୍କ ଗର୍ଭରୁ ଜନ୍ମ ହୋଇଥିଲେ'' ବୋଲି ପ୍ରଶ୍ନ କରାଯାଇଛି । ଅର୍ଥାତ୍ ଜଗନ୍ନାଥଙ୍କୁ ବିଷ୍ଣୁ ଭାବରେ ଗ୍ରହଣ କରି, ତାଙ୍କର 'କୃଷ୍ଣ' ଅବତାର କଥା ପଚରାଯାଇଛି ।

ବିଷ୍ଣୁଙ୍କର ଯେତେ ଅବତାର, ସେଗୁଡ଼ିକ ତାଙ୍କର କେବଳ ଅଂଶାବତାର । କିନ୍ତୁ କୃଷ୍ଣ ସ୍ୱୟଂ ଭଗବାନ୍ ବା ବିଷ୍ଣୁ । ଭାଗବତରେ ଅଛି - ''ଏତେ ଚାଂଶ

କଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ ସ୍ୱୟମ୍ ।'' ତେଣୁ ଭାଗବତ ବିଷ୍ଣୁଙ୍କର କୃଷ୍ଣଲୀଳା - ଆଧାରିତ ପୁରାଣ । ତାହା ମଧ୍ୟ ମହାପୁରୁଷ ଜଗନ୍ନାଥ ଦାସ ପ୍ରଥମ ସ୍କନ୍ଧ, ପ୍ରଥମ ଅଧ୍ୟାୟରେ ସ୍ପଷ୍ଟ କରି ଦେଇଛନ୍ତି - 'ନିର୍ମଳ ବିଷ୍ଣୁର ଚରିତ, କୃଷ୍ଣ ବିଷୟ ଭାଗବତ ।' ସୁତରାଂ ଏହି ମତଟିକୁ ଗ୍ରହଣ କଲେ ଭାଗବତ ହେଉଛି 'ବିଷ୍ଣୁ ଜଗନ୍ନାଥ'ଙ୍କର କୃଷ୍ଣାବତାରର କଥା ।

ଆଦି ଶଙ୍କରାଚାର୍ଯ୍ୟ ସ୍ଥାପିତ ପୁରୀର ଗୋବର୍ଦ୍ଧନ ପୀଠର କୌଣସି ଜଣେ ଶଙ୍କରାଚାର୍ଯ୍ୟ (ପରବର୍ତ୍ତୀ କାଳର ମଠାଧୀଶ) ଲେଖିଛନ୍ତି -

 କଦାଚିତ୍ କାଳିନ୍ଦୀତଟ - ବିପିନ-ସଂଗୀତକ-ବରୋ
ମୁଦାଭୀରୀ-ନାରୀ-ବଦନ-କମଳା ସ୍ୱାଦ - ମଧୁପଃ
ରମା-ଶମ୍ଭୁ-ବ୍ରହ୍ମାମରପତି ଗଣେଶାର୍ଚ୍ଚିତ ପଦୋ
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ ମେ ।
ଭୁଜେ ସବ୍ୟେ ବେଣୁଂ ଶିରସି ଶିଖିପିଚ୍ଛଂ କଟିତଟେ
ଦୁକୂଳଂ ନେତ୍ରାନ୍ତେ ସହଚର କଟାକ୍ଷଂ ବିଦଧତେ
ସଦା ଶ୍ରୀମଦ୍-ବୃନ୍ଦାବନ-ବସତିଲୀଳା ପରିଚୟୋ
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ ମେ ।

ଗୀତ-ନୃତ୍ୟ-ବାଦ୍ୟର ସମନ୍ୱୟ ହେଉଛି ସଙ୍ଗୀତ । ଏଠାରେ କୃଷ୍ଣାବତାରରେ ଜଗନ୍ନାଥ ସଂଗୀତ ବା ଗୀତ, ନୃତ୍ୟ ଓ ବାଦ୍ୟରେ ପ୍ରବୀଣଥିବାର ବର୍ଣ୍ଣନା କରାଯାଇଛି । ସେ ଯମୁନା ନଦୀକୂଳରେ ଗୀତ ଗାନ କରି, ବାଦ୍ୟ ବଜାଇ, ନୃତ୍ୟ କରି ଗୋପାଙ୍ଗନାମାନଙ୍କ ସହିତ ଲୀଳା କରୁଥିଲେ । ଭ୍ରମରଟିଏ ପ୍ରସ୍ଫୁଟିତ ପଦ୍ମରୁ ମଧୁପାନ କଲାଭଳି, ସେମାନଙ୍କ ବଦନ କମଳର ସୁଧା ଉପଭୋଗ କରୁଥିଲେ । ରମା ବା ଲକ୍ଷ୍ମୀ, ଶମ୍ଭୁ ବା ଶିବ, ବ୍ରହ୍ମା, ଅମରପତି ଇନ୍ଦ୍ର, ଗଣେଶ ତାଙ୍କର ପାଦପୂଜା କରନ୍ତି । ସେହି କୃଷ୍ଣ ପୁଣି ଗୋପ ବାଳକମାନଙ୍କର ବନ୍ଧୁ ଥିଲେ । ତାଙ୍କ ବାମହସ୍ତରେ ବଂଶୀ, ଶିରରେ ମୟୂରପୁଚ୍ଛ ଶୋଭା ପାଉଥିଲା । ପାଟବସ୍ତ୍ର ତାଙ୍କର କଟି ବେଷ୍ଟନ କରୁଥିଲା । ସେ ସାଙ୍ଗମାନଙ୍କୁ ଆଖିକୋଣର କଟାକ୍ଷରେ ସୂଚନା ଦେଉଥିଲେ । ସମସ୍ତ ପ୍ରକାର ଲୀଳା ଖେଳା କରୁଥିଲେ । ଏହିପରି କୃଷ୍ଣ ଅବତାର ନେଇଥିବା ଜଗନ୍ନାଥ ''ମହାମ୍ଭୋଧେ ସ୍ତୀରେ କନକ

ରୁଚିରେ  ନୀଳ ଶିଖରେ'' ବିରାଜମାନ । ସେ ମୋ ନୟନ ପଥରେ ଦର୍ଶନ ଦେଇ ମୋତେ ଧନ୍ୟ କରନ୍ତୁ ବୋଲି ଭାବାବେଗରେ ଏହି ସ୍ତବରେ ବାରମ୍ବାର ପ୍ରାର୍ଥନା କରାଯାଇଛି । ଏଠାରେ ପୁରୁଷୋତ୍ତମ ପୁରୀର ଜଗନ୍ନାଥ ଓ ଯମୁନା କୂଳର ବୃନ୍ଦାବନ ଚନ୍ଦ୍ର କୃଷ୍ଣ ଏକାକାର ହୋଇଛନ୍ତି । ଦ୍ୱାପର ଯୁଗ ଓ ଉତ୍ତର ଭାରତର ବୃନ୍ଦାବନ, ଯମୁନା ଏବଂ କଳିଯୁଗ ଓ ପୂର୍ବ ଭାରତର ପୁରୀ, ମହୋଦଧିକୂଳ ମଧ୍ୟରେ ଭିନ୍ନାଭିନ୍ନ ବିଚାର ନାହିଁ । ସମୟ ଓ ସ୍ଥାନ ଗୋଟିଏ ମନୋଭୂମିରେ, ଗୋଟିଏ ବିନ୍ଦୁରେ ଛିଡ଼ା ହୋଇଛନ୍ତି । ଏହା ସମ୍ଭବ ହୋଇଛି ଶ୍ରୀମଦ୍ ଭାଗବତ ପରି ପୁରାଣମାନଙ୍କ ପାଇଁ ।

ସର୍ବପଲ୍ଲୀ ରାଧାକୃଷ୍ଣଙ୍କ ମତରେ ପୁରାଣଗୁଡ଼ିକ ବୈଦିକ ପରମ୍ପରାକୁ ବଞ୍ଚାଇ ରଖିବାର ଲକ୍ଷ୍ୟରେ ରଚିତ । ବେଦାନ୍ତ ଓ  ସାଂଖ୍ୟରେ ଯେଉଁ ଚିନ୍ତାଧାରା ଅଭିବ୍ୟକ୍ତି ଲାଭ କରିଛି, ତାକୁ ଲୋକମାନଙ୍କ ନିକଟରେ ପହଞ୍ଚାଇବା ଏଗୁଡ଼ିକର ମୁଖ୍ୟ ଅଭିପ୍ରାୟ । ଆଖ୍ୟାନ ବା ପୁରାକଥା (Myth), ଉପାଖ୍ୟାନ, ପ୍ରତୀକ, ଉପଦେଶ ବା ଉପଲକ୍ଷ୍ୟ ଦେଇ କଳ୍ପିତ କାହାଣୀ ମାଧ୍ୟମରେ ଧର୍ମ ତତ୍ତ୍ୱ ବୁଝାଇବା, ଦେବତା ଓ ମଣିଷ ଭିତରେ ସଂପର୍କ, ସାମାଜିକ ଶୃଙ୍ଖଳା, ସୃଷ୍ଟି ଓ ପ୍ରଳୟର ଲୀଳା ବର୍ଣ୍ଣନା ଆଦି ପୁରାଣରେ ଲକ୍ଷ୍ୟ କରାଯାଏ । ବିଭିନ୍ନ ପୁରାଣ ବିଭିନ୍ନ ସମୟରେ ଓ ଉଦ୍ଦେଶ୍ୟରେ ରଚିତ ହୋଇଛି ।

ଶ୍ରୀମଦ୍ ଭାଗବତର ରଚନାକାଳ ଘେନି  ମତଭେଦ ଅଛି । କେହି କେହି କହନ୍ତି ଏହାକୁ ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ତାଞ୍ଜୋରର ବୋପଦେବ ଲେଖିଛନ୍ତି ଓ ଏହାକୁ ବ୍ୟାସଦେବଙ୍କ ନାଁରେ ଚଳାଇ ଦିଆଯାଇଛି । କିନ୍ତୁ ବୋପଦେବ ତ୍ରୟୋଦଶ  ଶତାବ୍ଦୀର ଜଣେ ଅଦ୍ୱୈତବାଦୀ ବିଦ୍ୱାନ ଥିଲେ । ହରିଲୀଳା ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ । ତାଙ୍କର ବହୁ ପୂର୍ବରୁ  ଭାଗବତ ରଚିତ ହୋଇଛି । ଏହି ପ୍ରସଙ୍ଗରେ ପ୍ରଫେସର ଭି. ରାଘବନ ଲେଖିଛନ୍ତି-  " In fact, a belief became widespread that it was Bopadev who actually wrote the Bhagavata, although it was much older than him." ସେ ପୁଣି ପୁରୀ ଗୋବର୍ଦ୍ଧନ ପୀଠର ମଠାଧୀଶ ଶ୍ରୀଧର ସ୍ୱାମୀ ଓ ତାଙ୍କର ଶ୍ରୀମଦ୍ ଭାଗବତ ଭାବାର୍ଥ ଦୀପିକା ଟୀକା ସମ୍ପର୍କରେ ଲେଖିଛନ୍ତି- " Shridharaswamin, another Advaitic Sannyasin, was like Bopadev, a devotee of Krishna and auther of the most

reputed commentary on the Bhagavata, he was probably elder to Bopadev, for the commentary on Harilila quotes Shridhara and one Mss. In the Bombay University collection describes the same commentary on the Mahimanasstava to Sridharswamin." (Bopadev - by V. Raghavan. Ramayana, Mahabharata and Bhagabata writers, 1978. Page - 122 and 126). ଶ୍ରୀଧର ସ୍ୱାମୀଙ୍କ ଭାବାର୍ଥ ଦୀପିକାକୁ ଧରି ପ୍ରଥମ ଓଡ଼ିଆ ଭାଗବତ ଲେଖକ ଜଗନ୍ନାଥ ଦାସ, ତେଲଗୁ ଭାଗବତର ଲେଖକ ପୋତନା, ଅସମୀୟା ଭାଗବତକାର ଶଙ୍କର ଦେବ ନିଜ ନିଜ ଗ୍ରନ୍ଥ ରଚନା କରିଛନ୍ତି । ଶ୍ରୀଧର ସ୍ୱାମୀ ବାଲେଶ୍ୱର ଜିଲ୍ଲାର ମରୋଇ ଗ୍ରାମର ଅଧିବାସୀ ଥିଲେ । ଢେଙ୍କାନାଳର କପିଳାସ ପର୍ବତ ନିକଟରେ ବ୍ରହ୍ମଚାରୀ ମଠରେ ଥାଇ ନୃସିଂହ ଆରାଧନା କରୁଥିଲେ ବୋଲି କୁହାଯାଏ । ସେ ପୁରୀ ଗୋବର୍ଦ୍ଧନ ପୀଠର ମଠାଧୀଶ ଥିଲେ । ସୁତରାଂ ପୁରୀ ଜଗନ୍ନାଥ ମନ୍ଦିର ଓ ଗୋବର୍ଦ୍ଧନ ପୀଠ ଭାଗବତ ଚର୍ଚ୍ଚାର ପ୍ରସିଦ୍ଧ ପୀଠ ଥିଲା ବୋଲି ଅନୁମାନ କରାଯାଇପାରେ । ମହାପୁରୁଷ ଜଗନ୍ନାଥ ଦାସ ପୁରୀ ଜଗନ୍ନାଥ ମନ୍ଦିରରେ ବସି ଓଡ଼ିଆ ଭାଗବତ ଲେଖିଥିଲେ । ଏହା ସଂସ୍କୃତ ଭଗବତର ଓଡ଼ିଆ ରୂପାନ୍ତର । ସେ "ସୂତଂ ଜାନାସି ଭଦ୍ରଂ ତେ ଭଗବାନ୍ ସାତ୍ୱତାଂ ପତିଃ" ସ୍ଥାନରେ " କି ପ୍ରୟୋଜନେ ଜଗନ୍ନାଥ, ଦେବକୀ ଉଦରେ ସମ୍ଭୂତ" ଲେଖିବା ବିଶେଷ ତାତ୍ପର୍ଯ୍ୟ । ବୁଦ୍ଧ ନୀଳାଦ୍ରିରେ ଜଗନ୍ନାଥ ରୂପରେ ବିରାଜମାନ ବୋଲି ବିଶ୍ୱାସ କରାଯାଏ । ବଉଧ ରୂପେ ନରହରି, ନୀଳକନ୍ଦରେ ବିଜେ କରି । ସାଲବେଗଙ୍କ ଜଣାଣରେ ବି ଅଛି -

ନୀଳାଚଳେ ବିଜେ କରି ବୌଦ୍ଧ ଅବତାରେଣ

ବେନି ଭୁଜ ଟେକି ପ୍ରଭୁ ଯାଚୁଅଛ ଶରଣ ।

ଏଠାରେ ପ୍ରଣିଧାନଯୋଗ୍ୟ ଯେ ଶ୍ରୀମଦ୍ ଭାଗବତ ଅନୁସାରେ ବୁଦ୍ଧ ହେଉଛନ୍ତି କୃଷ୍ଣଙ୍କର ପରବର୍ତ୍ତୀ ଅବତାର ।

**କଳିଯୁଗର ପ୍ରଥମ ଅବତାର ବୁଦ୍ଧ :**

ଭଗବାନ ବିଷ୍ଣୁ ତ୍ରେତାରେ ରାମ ଓ ପରଶୁରାମ, ଦ୍ୱାପରରେ କୃଷ୍ଣ ଓ ବଳରାମ ଅବତାର ଗ୍ରହଣ କରିଥିଲେ । ସେପରି କଳିଯୁଗରେ ଦୁଇ ଅବତାର - ବୁଦ୍ଧ ଓ କଲ୍କୀ । ଭଗବତରେ ଅଛି -

ଏକୋନବିଂଶେ ବିଂଶତିତମେ ବୃଷ୍ଣିଷୁ ପ୍ରାପ୍ୟ ଜନ୍ମନୀ

ରାମ କୃଷ୍ଣେତି ଭୁବୋ ଭଗବାନ ହରଦଦ୍‌ଭରମ୍ ।

ଊନବିଂଶ ଓ ବିଂଶତମ ଅବତାରରେ ଯଦୁବଂଶରେ ବଳରାମ ଓ କୃଷ୍ଣ ନାମରେ ଜନ୍ମ ହୋଇ ମେଦିନୀଭାର ଉଶ୍ୱାସ କରିଥିଲେ ।

ତତଃ କଲୀ ସମ୍ପ୍ରବୃତ୍ତେ ସମ୍ମୋହାୟ ସୁରଦ୍ୱିଷାମ୍

ବୁଦ୍ଧୋ ନାମ୍ନାର୍ଜ୍ଜନସୁତଃ କୀକଟେଷୁ ଭବିଷ୍ୟତି ।

ଏହା ପରେ କଳିଯୁଗ ଆରମ୍ଭ କାଳରେ ଦେବତା ଦ୍ୱେଷୀ ଦୈତ୍ୟମାନଙ୍କୁ ମୋହିତ କରିବା ନିମନ୍ତେ କୀକଟ (ମଗଧ ବା ବିହାର)ରେ ଅଜନଙ୍କ ପୁତ୍ର ଭାବରେ ଆପଣଙ୍କର ବୁଦ୍ଧାବତାର ହେବ ।

ଅଥାସୌଯୁଗ ସନ୍ଧ୍ୟାୟାଂ ଦସ୍ୟୁ ପ୍ରାୟେଷୁ ରାଜସୁ

ଜନିତ୍ୟ ବିଷ୍ଣୁ ଯଶସୋ ନାମ୍ନା କଲ୍‌କୀର୍ଜଗତ୍ ପତିଃ ।

ଏହାର ବହୁକାଳ ପରେ ଯେତେବେଳେ କଳିଯୁଗର ଅବସାନ ଆସନ୍ନ ହେବ ଏବଂ ରାଜାମାନେ ଦସ୍ୟୁପରି ଲୁଟ୍‌ପାଟ ଆରମ୍ଭ କରିବେ, ସେତେବେଳେ ଭଗବାନ୍ ବିଷ୍ଣୁଯଶା ନାମକ ବ୍ରାହ୍ମଣଙ୍କର ଘରେ କଲ୍‌କୀ ରୂପରେ ଜନ୍ମ ହେବେ । ମହାପୁରୁଷ ଜଗନ୍ନାଥ ଦାସଙ୍କ ଭାଗବତରେ ଅଛି -

ସେ କଥା ଜାଣି ଜଗନ୍ନାଥେ, ବୁଦ୍ଧାବତାରେ ଜନହିତେ ।
କପଟ-ମାୟା-ମୋହ ବଶେ, ପାଷାଣ୍ଡ ମାର୍ଗ ଉପଦେଶେ ।
ଅନେକ ଦୁର୍ଗତି ହରିବେ, ସୁଜନ ଜନଙ୍କୁ ରଖିବେ ।
ପୁଣି ଏ କଳିଯୁଗ ଅନ୍ତେ, ସାଧୁଜନଙ୍କ ଗୃହଗତେ ।
କୃଷ୍ଣ-ସ୍ମରଣ-ଗୁଣଗାଥା, ନୋହିବ ଯେବେ ହରିକଥା ।
ଦ୍ୱିଜେ ପାଷଣ୍ଡ ଆଚରିବେ, ସେ ପଞ୍ଚଯଜ୍ଞ ନ କରିବେ ।
ରାଜା ହୋଇବେ ଶୂଦ୍ର ଜନେ, ପ୍ରଜା ପୀଡ଼ିବେ କର ଧନେ ।
ଯେ ସ୍ୱାହା ସ୍ୱଧୀ ବଷଟ୍‌କାର, ଛାଡ଼ି କରିବେ ଦୁରାଚାର ।
ଏ କର୍ମ ଦେଖି କଲ୍‌କୀ ରୂପେ, ଅଶ୍ୱ ଆରୋହୀ ମହାକୋପେ ।
ଖଡ୍‌ଗ ଉଭାରି ବେନି ହସ୍ତେ, ଶେଷେ ସ୍ଥାପିବେ ଧର୍ମପଥେ ।

(୨ୟ ସ୍କନ୍ଧ ୭ମ ଅଧ୍ୟାୟ)

ଶ୍ରୀକୃଷ୍ଣଙ୍କ ପର୍ଯ୍ୟନ୍ତ ସମସ୍ତ ଆଲୋଚିତ ଅବତାର ପୌରାଣିକ । କିନ୍ତୁ ବୁଦ୍ଧ ଐତିହାସିକ । ତାଙ୍କର ଆର୍ବିଭାବ ଭାରତ ତଥା ପୃଥିବୀର ସଭ୍ୟତାର ଇତିହାସରେ ଏକ ସ୍ମରଣୀୟ ଘଟଣା । ଯଦି ତାଙ୍କୁ କଳିଯୁଗର ପ୍ରଥମ ଅବତାର ଭାବରେ ଗ୍ରହଣ କରାଯାଏ, ତେବେ ଏହି ଯୁଗଟି ଏକ ମହନୀୟ ଯୁଗ ରୂପେ ପରିଗଣିତ ହେବାର କଥା । କିନ୍ତୁ ଇତିହାସର ଗୌତମ ସିଦ୍ଧାର୍ଥ, ଯିଏ ବୋଧିଲାଭ ପରେ ବୁଦ୍ଧ ହେଲେ, ସେ ଭାଗବତରେ ଉଲ୍ଲେଖଥିବା ବୁଦ୍ଧ କି ?

-୦-

# ବୈଶାଖ ପୂର୍ଣ୍ଣିମା

ବୈଶାଖ ହିନ୍ଦୁ ଓ ବୌଦ୍ଧମାନଙ୍କ ପାଇଁ ଅତି ପବିତ୍ର ମାସ । ଏହି ମାସର ପୂର୍ଣ୍ଣିମା ତିଥିରେ ଖ୍ରୀ.ପୂ: ୫୬୩ ଅବ୍ଦରେ ଗୌତମ ସିଦ୍ଧାର୍ଥ ଲୁମ୍ବିନୀ ଗ୍ରାମର ଶାଳ ବନରେ ଜନ୍ମ ଗ୍ରହଣ କରିଥିଲେ । ସେ ପୁଣି ଏହି ତିଥିରେ ବୋଧଗୟା ଠାରେ ବୁଦ୍ଧତ୍ୱ ବା ବୋଧି ଲାଭ କରିଥିଲେ ଏବଂ ଖ୍ରୀ.ପୂ. ୪୮୩ ଅବ୍ଦରେ ଏହି ବୈଶାଖ ପୂର୍ଣ୍ଣିମା ତିଥିରେ ନିର୍ବାଣ ଲାଭ କରିଥିଲେ । ଗୋଟାଏ ମହାନ୍ ଜୀବନର ଉଦୟ, ବିକାଶ, ଲୀଳା ଓ ବିଲୟର ତିଥି ଭାବରେ ଏହା ବିଶ୍ୱ ସଭ୍ୟତାର ଇତିହାସରେ ଗୋଟିଏ ମହାନ୍ ଓ ପରମ ପବିତ୍ର ଦିବସ ।

ବିଶାଖା ନକ୍ଷତ୍ର ସହିତ ଚନ୍ଦ୍ରଙ୍କର ଅବସ୍ଥାନ ଯେପରି ଏକ ପବିତ୍ର ସଂଯୋଗ; ମେଷ ରାଶିକୁ ସୂର୍ଯ୍ୟଙ୍କର ସଂକ୍ରମଣ ମଧ୍ୟ ସେପରି ଏକ ପୁଣ୍ୟ ପ୍ରଦ ସମୟ । ଚାନ୍ଦ୍ରମାନ ମାସ ବୈଶାଖ, ତଥା ସୌରମାନ ମେଷ ମାସରେ ଅନେକ ପର୍ବ ପଡ଼େ । ଓଡ଼ିଆ ହିନ୍ଦୁ ସମାଜରେ ପଣା ସଂକ୍ରାନ୍ତି, ଅକ୍ଷୟ ତୃତୀୟା, ନୃସିଂହ ଚତୁର୍ଦ୍ଦଶୀ ପ୍ରଭୃତି ପର୍ବ ଦିନ ସହିତ, ମାସ ସାରା ବୈଶାଖ କୃତ୍ୟ ପାଳନର ବିଧି ଅଛି । ସଂକଳ୍ପ କରି ଏଇ ମାସ କୃତ୍ୟ ଆରମ୍ଭ କରାଯାଏ । ପ୍ରାତଃ ସ୍ନାନ ଓ ସମଗ୍ର ଦିବସଟିକୁ ପବିତ୍ର ଭାବରେ ଯାପନ କରିବା ଏହି ବିଧିର ଅନ୍ତର୍ଗତ । ବୈଶାଖ ଶୁକ୍ଳ ପକ୍ଷ ତୃତୀୟା ଠାରୁ ବିଷ୍ଣୁଙ୍କୁ ଚନ୍ଦନ ଲାଗି କରିବାର ପୁଣ୍ୟ ଫଳ ସହିତ ଜଗନ୍ନାଥଙ୍କ ୨୧ ଦିନ ବ୍ୟାପୀ ଚନ୍ଦନ ଯାତ୍ରାର ଜଳକ୍ରୀଡ଼ାର ମହିମା ପରମ୍ପରା ସ୍ୱୀକୃତ । ଏହି ବୈଶାଖ ମାସର ପ୍ରାତଃ ସ୍ନାନ କୃତ୍ୟର ମନ୍ତ୍ରରେ କୁହାଯାଇଛି - "ବୈଶାଖେ ମେଷଗେ ଭାନୌମୁରାରେମଧୁ ସୂଦନ, ପ୍ରାତଃ ସ୍ନାନେନ ମେ. ନାଥ ଫଳଦୋ ଭବ ପାପହା ।" ବୈଶାଖ ମାସ ପୂର୍ଣ୍ଣିମା ଦିନ ଏହି ମାସବ୍ୟାପୀ ବ୍ରତ ଉଦ୍‌ଯାପନ କରାଯାଏ । ଓଡ଼ିଆ ପାଞ୍ଜିମାନଙ୍କରେ ଉଲ୍ଲେଖ ଥାଏ "ଅଦ୍ୟ ବୈଶାଖ ପୂର୍ଣ୍ଣିମା କୃତ୍ୟଂ, ବୈଶାଖ ବ୍ରତ ସମାପନ, ଜଳେ ରାକା ଦାନ; ବୁଦ୍ଧ ଜୟନ୍ତୀ, ଚନ୍ଦନ ପୂର୍ଣ୍ଣିମା" । ଜମିକୁ ଆସନ୍ତା ଆଷାଢ଼ରୁ କୃଷି ଉପଯୋଗୀ କରିବାକୁ ଏଇ ମାସ ଅକ୍ଷୟ ତୃତୀୟା ଦିନ ହଳ ଅନୁକୂଳ ଉତ୍ସବ ପାଳନ କରାଯାଏ ।

ଶୁଦ୍ଧୋଦନ ଶବ୍ଦର ଅର୍ଥ ଶୁଦ୍ଧ ତଣ୍ଡୁଳ । କପିଳବାସ୍ତୁରେ ଏହି ନାମରେ - ଜଣେ ସୂର୍ଯ୍ୟ ବଂଶୀ କ୍ଷତ୍ରୀୟ ରାଜ୍ୟପାଳନ କରୁଥିଲେ । ସେ ପୁଣ୍ୟବନ୍ତ ଓ ଦୀପ୍ତିମନ୍ତ । ତାଙ୍କର ପୂର୍ବ ପୁରୁଷ ଗୌତମ କପିଳ ମୁନିଙ୍କର ଶିଷ୍ୟତ୍ୱ ଗ୍ରହଣ କରି, ମୁନିଙ୍କ ଆଶ୍ରମ ନିକଟସ୍ଥ ଶାକବନର ଦାୟିତ୍ୱରେ ଥିଲେ । ସେ ସେଠାରେ ଗୌତମ କପିଳଙ୍କ ପରାମର୍ଶ କ୍ରମେ ଜନପଦ ସ୍ଥାପନ ଓ କୃଷି, ଗୋପାଳନର ବ୍ୟବସ୍ଥା କଲେ । ସେଠାରେ ଏହିପରି କେତୋଟି ଜନପଦ ବସିଲା ଏବଂ ଏଗୁଡ଼ିକ ଗୋଟିଏ ରାଜ୍ୟର ଅନ୍ତର୍ଗତ ହେଲା । ଏହା ହିମାଳୟକୁ ଲାଗିଥିବା ବର୍ତ୍ତମାନର ଉତ୍ତର ପ୍ରଦେଶର ଗୋଟିଏ ଅଞ୍ଚଳ । କପିଳଙ୍କ ନାମାନୁସାରେ ଏହି ରାଜ୍ୟର ରାଜଧାନୀର ନାମ ଥିଲା- କପିଳବାସ୍ତୁ ଏବଂ ଶାକବନରୁ ଏହା ଆରମ୍ଭ ହୋଇଥିବାରୁ ରାଜ-ବଂଶର ନାମ ହେଲା - 'ଶାକ୍ୟବଂଶ'। ଗୌତମ କପିଳ ମୁନିଙ୍କ ପ୍ରତିଷ୍ଠିତ ଏହି ରାଜ ବଂଶର ପ୍ରତ୍ୟେକ ବଂଶଧରଙ୍କ ନାମ ସହିତ 'ଗୌତମ' ଯୋଗ କରିବାର ପ୍ରଥା ରଖାଗଲା । ଏହି ବଂଶ, ଜନ କଲ୍ୟାଣ ଓ ଜନମତକୁ ଦୃଷ୍ଟିରେ ରଖି ରାଜ୍ୟରେ କୃଷି ଓ ପଶୁପାଳନକୁ ମୁଖ୍ୟ ଜୀବିକା ରୂପେ ବଢ଼ାଇ ରାଜ୍ୟ ପାଳନ କରୁଥିଲେ ।

କପିଳ ବାସ୍ତୁରେ ପ୍ରତିବର୍ଷ 'ହଳ ଚାଳନା' ଉତ୍ସବରେ ସହସ୍ର ସହସ୍ର କୃଷକ ହଳ ଚାଳନା ପ୍ରତିଯୋଗିତାରେ ଅଂଶ ଗ୍ରହଣ କରୁଥିଲେ । ରାଜା ଏବଂ ଅମାତ୍ୟମାନେ ମଧ୍ୟ ହଳ ବୁଲାଇ ଏଇ ପ୍ରତିଯୋଗିତାରେ ଯୋଗ ଦେଉଥିଲେ । ବୈଶାଖ ମାସ ଶୁକ୍ଳ ପକ୍ଷ ତୃତୀୟା ବା ଅକ୍ଷୟ ତୃତୀୟାର ହଳ ଅନୁକୂଳ ଏହି ପରମ୍ପରାର ସ୍ମୃତି ବହନ କରିଛି । ଗୌତମ ଶୁଦ୍ଧୋଦନଙ୍କ ପତ୍ନୀ ମହାମାୟା । ସେ ଅତି ଧର୍ମ ପରାୟଣା, ରୂପବତୀ ଓ ଗୁଣବତୀ ଥିଲେ । ସେ ଥିଲେ ଦେବଦହ ଜନପଦର ସୁପ୍ରବୁଦ୍ଧଙ୍କ କନ୍ୟା । ମହାମାୟାଙ୍କର ସନ୍ତାନ ନଥିଲା । ତେଣୁ ସେ ସନ୍ତାନ-ପ୍ରାପ୍ତି ଲାଗି ନିଷ୍ଠା କାଷ୍ଠାରେ ବହୁ ବ୍ରତୋପବାସ ପାଳନ କରୁଥିଲେ ।

ଦିନେ ମହାମାୟା ବୈଶାଖ - ସ୍ନାନ ପରେ ଶୁଦ୍ଧୋଦନଙ୍କ ନିକଟରେ ପହଞ୍ଚି ପୁତ୍ର କାମନା କରି ଗୋଟିଏ ବ୍ରତ ପାଳନ କରୁଥିବାର ଜଣାଇଲେ । ସେ କହିଲେ- "ଏହି ବ୍ରତର କେତୋଟି ନିୟମ ଅଛି । ମୁଁ ତଦନୁସାରେ ଆଜିଠାରୁ - ପ୍ରାଣୀ ହିଂସା କରିବି ନାହିଁ, ମିଥ୍ୟା କହିବି ନାହିଁ, ଲୋଭ କରିବି ନାହିଁ । କାହା ପ୍ରତି କ୍ରୋଧ କରିବି ନାହିଁ କି ମନରେ କୌଣସି କୁଚିନ୍ତା ପୂରାଇବି ନାହିଁ । ସମସ୍ତଙ୍କ ପ୍ରତି ଦୟା ପ୍ରଦର୍ଶନ କରିବି ।" ସେ ପୁଣି ଶୁଦ୍ଧୋଦନଙ୍କୁ ମଧ୍ୟ ଅନୁରୋଧ କରି କହିଲେ - "ଆପଣ ବି ମନ ପବିତ୍ର ରଖି ଦୁଃଖୀ ଦରିଦ୍ରଙ୍କ

ଦୂଃଖ ଓ ଅଭାବ ଦୂର କରନ୍ତୁ । ରାଜ୍ୟର ବନ୍ଦୀମାନଙ୍କୁ ମୁକ୍ତ କରି ଦିଅନ୍ତୁ । ରାଜ୍ୟର ପ୍ରଜାମାନେ ପରସ୍ପର ପ୍ରତି ହିଂସା, ଦ୍ୱେଷ ଇତ୍ୟାଦି ଭାବ ପୋଷଣ ନ କରି, ସୁଖ, ଶାନ୍ତି ଓ ମିତ୍ରତା ଭିତରେ ଚଳିବାର ବ୍ୟବସ୍ଥା କରାଇ, ସେଥିପ୍ରତି ଦୃଷ୍ଟି ରଖନ୍ତୁ । ଏପରି ବ୍ରତ ପାଳନ କଲେ ଆମେ ଉତ୍ତମ ସନ୍ତାନ ପାଇବା ।'' ରାଜା ରାଣୀ ବ୍ରତ ପାଳନ କଲେ । ବୈଶାଖ ପୂର୍ଣ୍ଣିମା ଦିନ ସ୍ନାନାଦି ପରେ ବ୍ରାହ୍ମଣ ଓ ଦରିଦ୍ରମାନଙ୍କୁ ଧନ, ବସ୍ତ୍ର ଦେଇ ସନ୍ତୁଷ୍ଟ କଲେ । କାୟ, ମନ, ବାକ୍ୟରେ ଏପରି ପବିତ୍ର ରହିବା ଫଳରେ ହିଁ ଉତ୍ତମ ସନ୍ତାନ ଧାରଣର 'ପାତ୍ରତ୍ୱ' ମିଳିଥାଏ । ସେହି ପୂର୍ଣ୍ଣିମା ରାତ୍ରିରେ ମହାମାୟା ଯେଉଁ ସ୍ୱପ୍ନ ଦେଖିଲେ, ସେଥିରୁ କୁଳ ପବିତ୍ର, ଜନନୀଙ୍କୁ କୃତାର୍ଥ କଲାଭଳି ପୁତ୍ର ସନ୍ତାନ ଲାଭର ସୂଚନା ମିଳିଥିଲା ।

ଖ୍ରୀଷ୍ଟପୂର୍ବ ୫୬୩ ଅବ୍ଦର ବୈଶାଖ ମାସ । ମହାମାୟାଙ୍କର ଗର୍ଭ ସଂଚାରର ଦଶମ ମାସ । ସେ ଦେବଦହ ଯିବାକୁ ଇଛା କଲେ । ସମସ୍ତ ସୁବନ୍ଦୋବସ୍ତ କରାଗଲା । ସେ ଗୋଟିଏ ଶ୍ୱେତହସ୍ତୀରେ ବସି ଦାସ ଦାସୀଙ୍କ ଗହଣରେ ଦେବଦହ ଅଭିମୁଖେ ବାହାରିଲେ । ପଥ ପରିଷ୍କାର ପରିଚ୍ଛନ୍ନ । ରାଣୀ ଯିବା ବେଳେ, ଯେପରି ଧୂଳି ସୁଦ୍ଧା ନ ଉଡ଼େ, ସେଥିପାଇଁ ରାସ୍ତାରେ ପାଣି ଛିଞ୍ଚା ଯାଇଥିଲା । ବାଟରେ ଲୁମ୍ବିନୀଠାରେ ରାଣୀ ହାତୀରୁ ଓହ୍ଲାଇଲେ । ବୈଶାଖର ମୃଦୁ ମଧୁର ପବନରେ ଶାଳ ଫୁଲର ସୁବାସ ଚହଟି ଉଠୁଥାଏ । ମହାମାୟା ଶାଳ ଉପବନକୁ ଗଲେ । ପ୍ରତିଟି ବୃକ୍ଷ କୋରକ ମଣ୍ଡିତ, ସେ ସେହି ସୁଗନ୍ଧ ସୁରଭିତ ସୁନ୍ଦର ମନୋରମ ପରିବେଶରେ ଏ ଗଛରୁ ସେ ଗଛ, ସେ ଗଛରୁ ଏଗଛ ପାଖକୁ ପଦ ଚାରଣ କଲାବେଳେ ଅବନତ ହୋଇ ଆସିଥିବା ଗୋଟିଏ ଶାଳ ଶଖାକୁ ଧରିଲେ । ତହୁଁ ତାଙ୍କର ଗର୍ଭବେଦନା ହେଲା ଓ ଦିବ୍ୟସୁନ୍ଦର ପୁତ୍ର ଜନ୍ମ ଲାଭ କଲା । ସମ୍ବାଦ ପାଇ ଶୁଦ୍ଧୋଦନ ପହଞ୍ଚି ଗଲେ । ଲୁମ୍ବିନୀର ଶାଳ ଉପବନରେ ଜାତ ଏହି ପୁତ୍ର ଦ୍ୱାରା ରାଜ୍ୟର ସମସ୍ତଙ୍କର ଅର୍ଥ ସିଦ୍ଧି ହେବ ବୋଲି ସମ୍ଭାବନା କରି, ସେ ପୁତ୍ରର ନାମ ରଖିଲେ - ସିଦ୍ଧାର୍ଥ । ଏହା ଖ୍ରୀ:ପୂ: ୫୬୩ ବୈଶାଖ ପୂର୍ଣ୍ଣିମା ତିଥିର ଘଟଣା । ମାନବ ଜାତିର ଇତିହାସରେ ଏହା ଏକ ଶୁଭ ମୁହୂର୍ତ୍ତ । ହିମାଳୟର ଜଣେ ମହାଜ୍ଞାନୀ ଋଷି ଅସିତ ଦେବଳ ଆସିଲେ । ସେ ନବଜାତ ଗୌତମ ସିଦ୍ଧାର୍ଥଙ୍କୁ ଦେଖି, ତାଙ୍କ ସମ୍ପର୍କରେ ଭବିଷ୍ୟତ ବାଣୀ ଶୁଣାଇଲେ । ଗୌତମ ଶୁଦ୍ଧୋଦନ ଓ ମହାରାଣୀ - ମହାମାୟା ହେଲେ ଅସୀମ ଆନନ୍ଦରେ ଉତ୍ଫୁଲ୍ଲ ।

ଶୁଣାଯାଏ, ସ୍ରଷ୍ଟା ପ୍ରତିଟି ମଣିଷକୁ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରଖି ସୃଷ୍ଟି କ... । ତାହା ପୂରଣ ହୋଇଯିବା ପରେ ଆଉ ତା'ର ସ୍ଥିତି ଆବଶ୍ୟକ ହୁଏ ... । ବୋଧହୁଏ, ମହାମାୟା ଗୌତମ ସିଦ୍ଧାର୍ଥଙ୍କୁ ଜନ୍ମ ଦେବାଲାଗି ହିଁ ଜନ୍ମ ଗ୍ରହଣ କରିଥିଲେ । ସେ ସିଦ୍ଧାର୍ଥଙ୍କ ଜନ୍ମର ସାତଦିନ ପରେ ମୃତ୍ୟୁ ବରଣ କଲେ । ପିତା ଶୁଦ୍ଧୋଦନଙ୍କ ଅପାର ବାତ୍ସଲ୍ୟ ଓ ଯତ୍ନରେ ସିଦ୍ଧାର୍ଥଙ୍କର ବାଲ୍ୟ, ପୌଗଣ୍ଡ କୈଶୋର କଟିଲା । ସେ ଯୌବନରେ ପହଞ୍ଚି ବିବାହ କଲେ ସୁଶ୍ରୀ ସୁଲକ୍ଷଣି ଗୋପାଙ୍କୁ । ଗାର୍ହସ୍ଥ୍ୟ ଜୀବନର ଫଳ ସ୍ୱରୂପ ଜନ୍ମହେଲେ- ରାହୁଲ । ଶାକ୍ୟ-ବଂଶ-ଲତା ଲଟେଇ ଲଟେଇ ବଢ଼ିବାର ସମ୍ଭାବନା ଉଜ୍ଜ୍ୱଳତର ହେଲା । କିନ୍ତୁ ଏଇଠି ଗୌତମ ସିଦ୍ଧାର୍ଥଙ୍କର ଗୋଟିଏ ଦାୟିତ୍ୱ ଶେଷ ହେଲା । ଏଇ ତାଙ୍କର ଶେଷ ଜନ୍ମ । ସେ ଏହି ଜନ୍ମରେ ମାନବ ଜାତି ପାଇଁ ତାଙ୍କର ଶେଷ କର୍ତ୍ତବ୍ୟ ସଂପାଦନ କରି ବିଦାୟ ନେବେ । ରାହୁଲ ଜନ୍ମ ହେବା ପରେ ଶାକ୍ୟ ବଂଶ ଉପଯୁକ୍ତ ଦାୟାଦଟିଏ ପାଇଲା । ଗୋପା ଉପଯୁକ୍ତ ମାତା ଓ କୁଳ ବଧୂ । ପୁତ୍ର ରାହୁଲ ଓ ଶ୍ୱଶୁର ଶୁଦ୍ଧୋଦନଙ୍କ ସେବା ଯତ୍ନ ପାଇଁ ଯଥେଷ୍ଟ ଦକ୍ଷ । ପରିବାରରେ ସିଦ୍ଧାର୍ଥଙ୍କର ବିଶେଷ କାର୍ଯ୍ୟ ନାହିଁ । ସେ ଗୋଟିଏ ଆଷାଢ଼ ପୂର୍ଣ୍ଣିମାର ନିସ୍ତବ୍ଧ ନିଶୀଥରେ ଗୃହତ୍ୟାଗ କଲେ ।

ସିଦ୍ଧିର ମାର୍ଗ ପାଇବାକୁ ସିଦ୍ଧାର୍ଥ ବହୁ ଗୁରୁ, ବହୁ ଗୁରୁ ଆଶ୍ରମ, ବହୁ ଶାସ୍ତ୍ରର ଆଶ୍ରୟ ନେଇଥିଲେ । ଶେଷରେ ଶାସ୍ତ୍ର ଓ ଗୁରୁ ଆଶ୍ରୟ ତ୍ୟାଗ କରି ନିଜେ ତପସ୍ୟାର ଆଶ୍ରୟରେ ନିଜର ପନ୍ଥା ସ୍ଥିର କରିବାର ସିଦ୍ଧାନ୍ତ ନେଇ ବୈଶାଳୀ, ରାଜଗୃହ, ମଗଧ ଅତିକ୍ରମ କରି ଗୟା ଶୀର୍ଷ ପର୍ବତ ନିକଟରେ ପହଞ୍ଚିଲେ । ସେହି, ପର୍ବତ ନିକଟରେ ଯେଉଁଠି ନିରଞ୍ଜନା ନଦୀ ଫଲ୍‌ଗୁ ସହିତ ମିଶିଯାଇଥିଲା, ତା'ର କିଛି ଦୂରରେ ଉରୁବିଲ୍ୱ ନାମକ ସ୍ଥାନରେ ବସି ସିଦ୍ଧାର୍ଥ କଠୋର ତପସ୍ୟାରେ ଚଞ୍ଚଳମନ ଓ ଚିତ୍ତକୁ ସଂଯତ ଓ ବଶୀଭୂତ କଲେ । କ୍ରମେ ଆହାର କମାଇ କମାଇ, ଶେଷରେ ବାୟୁ ସେବନ କରି ଛଅ ବର୍ଷ କଠୋରତମ ତପସ୍ୟାରେ ତପୋଶକ୍ତି ଲାଭ କଲେ । ତାଙ୍କର ପାଞ୍ଚଜଣ ଶିଷ୍ୟ - କୌଣ୍ଡିନ୍ୟ, ଅଶ୍ୱଜିତ୍, ଉଦ୍ରିଷ୍ଟ, ବାଷ୍ପ, ମହାନାମ ଏହି ତପସ୍ୟା ଦେଖି ବିସ୍ମିତ ହେଲେ । କିନ୍ତୁ ସିଦ୍ଧାର୍ଥଙ୍କ ଶରୀର ବହୁ ଦୁର୍ବଳ ହୋଇ ପଡ଼ିଥିଲା । ସେ ଦିନେ ନିରଞ୍ଜନା ନଦୀରେ ସ୍ନାନ କରି ଫେରିବା ବାଟରେ ଅଚେତ ହୋଇ ପଡ଼ିଗଲେ । ଚେତନା ଫେରିବା ପରେ ସେ ଅନୁଭବ କଲେ ଯେ, ପ୍ରଥମେ ଆହାର ଗ୍ରହଣ କରି ଶରୀରକୁ ସବଳ

କରିବାକୁ ହେବ । ସେ ଏପରି ଭାବି ଗୋଟିଏ ଗଛ ମୂଳରେ ବସିପଡ଼ି ଧ୍ୟାନ ମଗ୍ନ ରହିଲେ । ପାଖରେ ଥିବା ଗ୍ରାମର ଜଣେ ଧନୀକଙ୍କ କନ୍ୟା ସୁଜାତା; ସେ ମାନସିକ ପୂରଣ ପାଇଁ ଗୋଟିଏ ସୁବର୍ଣ୍ଣପାତ୍ର ପାୟସ ପୂର୍ଣ୍ଣ କରି ବନ ଦେବତାଙ୍କ ପୂଜା ଲାଗି ଆସିଥିଲା । ସେଠାରେ ସିଦ୍ଧାର୍ଥଙ୍କ ଶୀର୍ଣ୍ଣ ଶରୀରରେ ଦିବ୍ୟ ଜ୍ୟୋତି ଝଟକୁ ଥିବାର ଦେଖି, ତାଙ୍କୁ ବନ ଦେବତା ବୋଲି ଭାବିଲା । ତାଙ୍କର ଭୋଜନ ପାଇଁ ଭକ୍ତି ନମ୍ର ମନରେ ପାୟସ ପାତ୍ରଟି ସମର୍ପଣ କଲା । ସିଦ୍ଧାର୍ଥ ସୁଜାତାକୁ ଆଶୀର୍ବାଦ କରି ପାୟସ ଭୋଜନ କଲେ । ସେହି ସୁସ୍ୱାଦୁ ପାୟସ ତାଙ୍କ ଶରୀରରେ ଶକ୍ତି ସଂଚାର କଲା । ସେ ଶରୀରରେ ଆବଶ୍ୟକ ଶକ୍ତିସଂଚୟ ପାଇଁ ଭିକ୍ଷା କରି ନିୟମିତ ଆହାର ଗ୍ରହଣ କଲେ । ତାଙ୍କର ଶିଷ୍ୟମାନେ ଏହା ଦେଖି ତାଙ୍କ ଉପରୁ ଭରସା ତୁଟାଇ, ଛାଡ଼ି ଚାଲିଗଲେ । ଏଥିରେ ସେଦିନ ସିଦ୍ଧାର୍ଥଙ୍କ ମନରେ ଭାବାନ୍ତର ଆସିଲା ।

ଏହା ସେହି ପ୍ରାଚୀନ କାଳର କଥା, ଯେଉଁଠି କିମ୍ବଦନ୍ତୀ ଇତିହାସ ସହିତ ମିଶି ଇନ୍ଦ୍ରଧନୁ ସୃଷ୍ଟି କରିଥାଏ ଏବଂ ମହାପୁରୁଷ ମାନଙ୍କର 'ଜୀବନ ଚରିତ'ର ବର୍ଣ୍ଣନାରେ ଅତିମାନୁଷ ଘଟଣାର ବର୍ଣ୍ଣନା ମିଶି, ତାହା 'ଚରିତାମୃତ' ହୋଇଥାଏ । ଅବଶ୍ୟ ମହାପୁରୁଷମାନେ ଅସାଧାରଣ ହୋଇଥିବାରୁ ସେମାନଙ୍କର ଜୀବନର ଚଳଣି ଓ ଘଟଣା ବଳୀରେ ଅସାଧାରଣତା ଓ ଅତିମାନୁଷତା ରହିବା ବୋଧହୁଏ ସ୍ୱାଭାବିକ । ବୁଦ୍ଧଙ୍କ ଚରିତରେ ଏହାର ବହୁ ବର୍ଣ୍ଣାଢ଼୍ୟ ଦୃଷ୍ଟାନ୍ତ ଥିବାର ଶୁଣାଯାଏ ।

ସେଦିନ ସିଦ୍ଧାର୍ଥ ଥିଲେ ଶିଷ୍ୟ ବର୍ଗ ପରିତ୍ୟକ୍ତ ଓ ଏକାକୀ । ସେ ଗୋଟିଏ ଅଶ୍ୱତ୍ଥ ବୃକ୍ଷ ପାଖକୁ ଆସିଲେ । ସେହି ବୃକ୍ଷଟି ମଧ୍ୟ କୌଣସି ଏକ ବୈଶାଖ ପୂର୍ଣ୍ଣିମାରେ ଉଠିଥିଲା । ସେଠି ସ୍ୱସ୍ତିକ ନାମରେ ଜଣେ ତୃଣ ବିକ୍ରେତା ସିଦ୍ଧାର୍ଥଙ୍କୁ କିଛି ତୃଣ ଉପହାର ଦେଲେ । ସିଦ୍ଧାର୍ଥ ସେହି ଅଶ୍ୱତ୍ଥ ବୃକ୍ଷ ତଳେ ସେତକ ବିଛାଇ ଦେଇ, ତହିଁ ଉପରେ ସଂକଳ୍ପବଦ୍ଧ ହୋଇ ଧ୍ୟାନରେ ବସିଲେ । ତାଙ୍କର ତପୋସିଦ୍ଧ ମନର ଦୃଢ଼ ସଂକଳ୍ପ ଥିଲା - ''ଏହି ଆସନରେ ବସି ଶରୀର ପଛକେ ଶୁଷ୍କ ହେଉ, ମାଂସ, ଚର୍ମ, ଅସ୍ଥି ନଷ୍ଟ ହୋଇ ଯାଉ, ତଥାପି ବହୁ କଷ୍ଟ ଦୁର୍ଲ୍ଲଭ ବୁଦ୍ଧତ୍ୱ ନ ପାଇବା ପର୍ଯ୍ୟନ୍ତ ଏଠାରୁ ଉଠିବି ନାହିଁ ।'' ସେ ଏହି ବଜ୍ର କଠିନ ସଂକଳ୍ପ ନେଇ ଧ୍ୟାନ ମଗ୍ନଥିବା ବେଳେ ସେଥିରେ ବାଧା ସୃଷ୍ଟି ନିମନ୍ତେ 'ମାର' ବହୁ ପ୍ରଲୋଭନ ଦେଖାଇଛି, ଯୁଦ୍ଧ କରିଛି, ବହୁ ଭୟାନକ କାଣ୍ଡ ଭିଆଇଛି । ମାତ୍ର ସିଦ୍ଧାର୍ଥ ଅଟଳ, ଅବିଚଳିତ ରହିଛନ୍ତି ।

'ମାର' ମନୁଷ୍ୟର ଶତ୍ରୁ । କାମ ଲୋକର ରାଜା । ସେ ଧର୍ମର ଆଲୋକ ସହି ପାରେ ନାହିଁ । ତା'ର ଶକ୍ତି ଅସୀମ । କିନ୍ତୁ ସେ ସିଦ୍ଧାର୍ଥଙ୍କୁ ବୁଦ୍ଧତ୍ୱ ପ୍ରାପ୍ତିର ମାର୍ଗରୁ ବିଚଳିତ କରିବାର ଯାବତୀୟ ଚେଷ୍ଟା କରି ଶେଷରେ ବିଫଳ ହୋଇ ପଳାୟନ କଲା । ଏହା ସହିତ ସିଦ୍ଧାର୍ଥଙ୍କ ମନରୁ ପାପରାଶି ନିଷ୍କାଶିତ ହୋଇଗଲା । ସେ ପରମ ଶାନ୍ତି ଲାଭ କଲେ । ତାଙ୍କର ମନ ପ୍ରସନ୍ନ ହେଲା । ହୃଦୟରେ ସତ୍ୟର ଆଲୋକ ଉଦ୍‌ଭାସିତ ହେଲା । ସେ ସେଦିନ ରାତ୍ରିର ପ୍ରଥମ ପ୍ରହରରେ ପୂର୍ବ ଜନ୍ମ ଜ୍ଞାନ ଲାଭ କଲେ, ଦ୍ୱିତୀୟ ପ୍ରହରରେ ଦିବ୍ୟଚକ୍ଷୁ · ଲାଭ କଲେ, ତୃତୀୟ ପ୍ରହରରେ କାର୍ଯ୍ୟକାରଣ ଭାବ ବିଷୟରେ ଜ୍ଞାନ ପ୍ରାପ୍ତ ହେଲେ, ଚତୁର୍ଥ ପ୍ରହରରେ ଦୁଃଖର ୧୨ଟି ନିଦାନର ଜ୍ଞାନ ଲାଭ କଲେ । ସେ ଏହିପରି 'ବୁଦ୍ଧତ୍ୱ' ବା 'ବୋଧି' ଲାଭ କଲେ । କ୍ରମେ ପ୍ରଭାତ ହେଲା ।

'ପ୍ରଭା' ଅଛି ବୋଲି ସକାଳର ଅନ୍ୟ ନାମ ପ୍ରଭାତ । ସେଦିନ ପ୍ରଭାତରେ ଗୌତମ ସିଦ୍ଧାର୍ଥ ହୋଇଥିଲେ 'ବୁଦ୍ଧ', 'ତଥାଗତ' । ସେ କୌଣସି ଆହାର ଗ୍ରହଣ ନ କରି, ସେଠାରେ ନିରୋଳାରେ ସାତ ସପ୍ତାହ ବସି ନିର୍ବାଣର ଅମୃତରସ ଉପଭୋଗ କଲେ । ଏହି ବୋଧିଲାଭ ଘଟିଥିଲା ଗୋଟିଏ ବୈଶାଖ ପୂର୍ଣ୍ଣିମାରେ । ବୋଧି ଲାଭ ପରେ ତାଙ୍କର ପ୍ରଥମ ଶିଷ୍ୟ ହେଲେ କଳିଙ୍ଗର ଦୁଇଜଣ ବଣିକ - ତପୁସ ଓ ଭଲ୍ଲକ । ସେମାନେ ତଥାଗତଙ୍କ ଠାରୁ ପୂଜା ପାଇଁ କିଛି ସନ୍ତକ ମାଗିବାରୁ, ସେ ତାଙ୍କୁ ନିଜର ନଖ ଓ କେଶ ଦେଇଥିଲେ, ଏବଂ ତା' ଉପରେ ଚୈତ ସ୍ଥାପନ କରି ପୂଜା କରିବାକୁ ଉପଦେଶ ଦେଇଥିଲେ ।

ବୁଦ୍ଧଙ୍କ ଜୀବନକାଳର ଚାରୋଟି ମୁଖ୍ୟ ସ୍ଥାନ ହେଲା-

(୧) ଲୁମ୍ବିନୀ, ଏଠାରେ ଏବେ ମଧ୍ୟ ଗୋଟିଏ ଅଶୋକ ସ୍ତମ୍ଭ ଅଛି, ଯେଉଁଥିରେ କି 'ବୁଦ୍ଧ ଏଠାରେ ଜନ୍ମ ହୋଇଥିଲେ' ବୋଲି ବ୍ରାହ୍ମୀଲିପି ଓ ପାଳିଭାଷାରେ ଉତ୍‌କୀର୍ଣ୍ଣ ହୋଇଛି । (୨) ବୋଧିଦ୍ରୁମ, ଯେଉଁଠାରେ ସିଦ୍ଧାର୍ଥ 'ବୋଧି' ସିଦ୍ଧି ଲାଭ କରିଥିଲେ । ଏହା ହିନ୍ଦୁମାନଙ୍କର ପିଣ୍ଡଦାନ କ୍ଷେତ୍ର ଗୟାଠାରୁ ପ୍ରାୟ ୧୧ କିଲୋମିଟର । ଏଠାରେ ଏବେ ବୁଦ୍ଧ ମନ୍ଦିର, ବୋଧିଦ୍ରୁମ ଅଛି । ବୈଶାଖ ପୂର୍ଣ୍ଣିମା ଦିବସ ପାଳନ ପାଇଁ ଏଠାକୁ ଶ୍ରୀଲଙ୍କା, ବର୍ମା, ନେପାଳ ପ୍ରଭୃତି ଏବଂ ହିମାଳୟ ନିକଟସ୍ଥ ବୌଦ୍ଧ ଧର୍ମାବଲମ୍ବୀ ଅଞ୍ଚଳରୁ ଭିକ୍ଷୁ ଓ ଲାମାମାନେ ଆସନ୍ତି । (୩) ମୃଗ ବିହାର (ସାରନାଥ), ଯେଉଁଠି ସେ ପ୍ରଥମେ ଧର୍ମ ପ୍ରଚାର

ଆରମ୍ଭ କରିଥିଲେ । ଏହା ବନାରସ ନିକଟରେ । (୪) କୁଶି ନଗର, ଯେଉଁଠି ସେ ମହାନିର୍ବାଣ ଲାଭ କରିଥିଲେ । ଉତ୍ତର ପ୍ରଦେଶର 'କାଶିଆ'କୁ କୁଶି ନଗର ବୋଲି ଚିହ୍ନିତ କରାଯାଉଛି । ଓଡ଼ିଶାର ରତ୍ନଗିରି, ଉଦୟଗିରି, ଲଳିତଗିରି ଅଞ୍ଚଳ ବୌଦ୍ଧଧର୍ମ ଓ ଦର୍ଶନର ପ୍ରସିଦ୍ଧ କେନ୍ଦ୍ର ଥିଲା । ଧଉଳି, ଜଉଗଡ଼ ଠାରେ ଅଶୋକଙ୍କର ଶିଳାଲେଖରେ ବୌଦ୍ଧ 'ଧମ୍ମମଙ୍ଗଳ' ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଏହିପରି ଭାରତର ବହୁ ସ୍ଥାନରେ ବୌଦ୍ଧ କୀର୍ତ୍ତିର ଅବଶେଷ ଦେଖାଯାଏ ।

ତଥାଗତ ବୁଦ୍ଧଙ୍କର ଜୀବନ କାଳ (ଖ୍ରୀ:ପୂ: ୫୬୩ରୁ ଖ୍ରୀ:ପୂ: ୪୮୩) ମଧ୍ୟରେ ବହୁ ସଂଘାରାମ ପ୍ରତିଷ୍ଠିତ ହୋଇଛି । ସେ ନିଜେ ଭିକ୍ଷୁମାନଙ୍କ ଗହଣରେ ବୁଲି ବୁଲି ଧର୍ମ ପ୍ରଚାର କରୁଥିଲେ । ଏପରିକି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଏଥିରୁ ନିବୃତ୍ତ ହୋଇ ନାହାନ୍ତି । 'ପାବା' ଠାରେ ଛନ୍ଦ ନାମରେ ଜଣେ ସ୍ୱର୍ଣ୍ଣକାର ବୁଦ୍ଧଙ୍କୁ ଭୋଜନ ପାଇଁ ନିମନ୍ତ୍ରଣ କରିଥିଲା । ସେ ଏହି ନିମନ୍ତ୍ରଣ ସାଦରେ ଗ୍ରହଣ କରିଥିଲେ । କିନ୍ତୁ ବୁଦ୍ଧଦେବଙ୍କୁ ତା'ର ଗୃହପାଳିତ ଶୂକର ଶାବକର ମାଂସ ରନ୍ଧନ କରି ଭୋଜନ କରାଇଥିଲା । ବୁଦ୍ଧ ମଧ୍ୟ ଏହା ସନ୍ତୋଷରେ ଖାଇଥିଲେ । ମାତ୍ର ଏହାପରେ ତାଙ୍କର ରକ୍ତ ଆମାଶୟ ହେଲା । ସେ ସେହି ଅବସ୍ଥାରେ କୁଶୀ ନଗର ଆଡ଼କୁ ଯାତ୍ରା କଲେ । ବାଟରେ ଗୋଟିଏ ନଦୀ ନିକଟରେ ଜଳପାନ କଲେ । ସେତେବେଳେକୁ ତାଙ୍କର ବୟସ ୮୦ ବର୍ଷ । ସେ 'ପାବା' ଠାରେ ତାଙ୍କର ଶେଷ ଆହାର ଗ୍ରହଣ କରିଥିଲେ । ସେ ଆନନ୍ଦଙ୍କୁ କହିଲେ, - 'ଛନ୍ଦର ଖାଦ୍ୟ ଖାଇ ମୁଁ ପୀଡ଼ିତ ହେଲି ବୋଲି ଛନ୍ଦ ବଡ଼ ଲଜ୍ଜିତ ହୋଇଛି । ତାକୁ କହିବ, ସେ ମୋତେ ଭୋଜନ କରାଇ ଅଶେଷ ପୁଣ୍ୟ ସଞ୍ଚୟ କରିଛି । ନିର୍ବାଣ ପ୍ରାପ୍ତି ପୂର୍ବରୁ ମୁଁ ଆଉ ଭୋଜନ କରିବି ନାହିଁ । ଛନ୍ଦ ମୋତେ ଶେଷ ଭୋଜନ ଦେଇଛି ବୋଲି ପରକାଳରେ ମୁକ୍ତିଲାଭ କରିବ । ସେଥିପାଇଁ ତା'ର ଦୁଃଖ କରିବାର କୌଣସି କାରଣ ନାହିଁ । ମୁଁ ଜୀବନ କାଳରେ ଯେତେ ଦାନ ଗ୍ରହଣ କରିଛି, ତହିଁ ମଧ୍ୟରେ ଦୁଇଟି ଦାନ ଅମୂଲ୍ୟ । ପ୍ରଥମଟି ବୁଦ୍ଧତ୍ୱ ଲାଭ ପୂର୍ବରୁ ସୁଜାତାର ଖାଦ୍ୟ, ଦ୍ୱିତୀୟରେ ନିର୍ବାଣ ଲାଭ ପୂର୍ବରୁ ଛନ୍ଦର ଆହାର । ଏହି ଦୁଇଟି ମହାଦାନର ମୂଲ୍ୟ ସମାନ ।''

ଦେହାବସାନ ପୂର୍ବରୁ ତଥାଗତ ଭିକ୍ଷୁମାନଙ୍କୁ ଏକତ୍ର କରି, କାହାରି ମନରେ ଧର୍ମ ସମ୍ବନ୍ଧରେ କିଛି ସନ୍ଦେହ ଥିଲେ ପଚାରି ବୁଝିନେବାକୁ କହିଥିଲେ । କେହି

କିଛି ପଚାରି ନଥିଲେ । ତା'ପରେ ସେ ତାଙ୍କର ଶେଷ ଉପଦେଶ ଦେଇ ମହାଧ୍ୟାନରେ ମଗ୍ନ ରହିଲେ । ସେହି ଧ୍ୟାନ ଅବସ୍ଥାରେ ତାଙ୍କର ମହା ନିର୍ବାଣ ଘଟିଲା । ଏହା ଖ୍ରୀ:ପୂ: ୪୮୩ ବୈଶାଖ ପୂର୍ଣ୍ଣିମା, ବୈଶାଖ ମାସର ଶେଷ ତିଥି । ତଥାଗତଙ୍କ ଦେହାବସାନ ପରେ ତାଙ୍କର ବସ୍ତ୍ର, ଭିକ୍ଷାଥାଳ ଓ ଅସ୍ଥି ପାଇଁ ଶିଷ୍ୟମାନଙ୍କ ମଧ୍ୟରେ ବ୍ୟାକୁଳତା ପ୍ରକାଶ ପାଇଲା । ଯିଏ ଯାହା ପାଇଲା, ତାହା ଆଣିଲା ତା ଉପରେ 'ସ୍ତୁପ' ତିଆରି କରାଗଲା । ଏହି ସ୍ତୁପମାନଙ୍କ ସମ୍ପର୍କରେ ବହୁ ଅଦ୍ଭୁତ ଘଟଣା କାହାଣୀ ପରି ପ୍ରଚାରିତ ହେଲା । ବହୁ ଭକ୍ତ ତୀର୍ଥ କ୍ଷେତ୍ର ଭାବରେ ଏଠାକୁ ଆସିଲେ ।

ଭାଗବତ ପୁରାଣରେ ବିଷ୍ଣୁଙ୍କର ଯେଉଁ ଚବିଶଟି ଅବତାରର ବର୍ଣ୍ଣନା ଅଛି, ସେଥି ମଧ୍ୟରେ କପିଳ ଏବଂ ବୁଦ୍ଧଙ୍କ ନାମ ଅଛି । ଓଡ଼ିଶାରେ ଜଗନ୍ନାଥଙ୍କୁ ବୁଦ୍ଧଙ୍କର ଅବତାର ଭାବରେ ଗ୍ରହଣ କରାଯାଏ । କବି ସାଲବେଗ ଲେଖିଛନ୍ତି-

ନୀଳାଚଳେ ବିଜେ କରି ବୌଦ୍ଧ ଅବତାରେଣ
ବେନି ଭୁଜ ଟେକି ପ୍ରଭୁ ଯାଚୁଅଛ ଶରଣ
ଆହେ ନୀଳ ଶଇଳ
ପ୍ରବଳ ମତ୍ତ ବାରଣ ।

ସେ ପୁଣି ଜଗନ୍ନାଥଙ୍କର 'ଚନ୍ଦନ ଯାତ୍ରା'ର ବର୍ଣ୍ଣନା କରି ଲେଖିଛନ୍ତି -

ଆହେ ମଦନ ମୋହନ
କରୀନ୍ଦ୍ର - ଦନ୍ତ - ପଲଙ୍କ ତେଜି ପ୍ରଭୁ
ନରେନ୍ଦ୍ର ଚାପେ ଗମନ ହେ
ଭଲା ବେଶକାରୀ କି ସଜାଡ଼ି କରି
ଚଢ଼ାଇଛି ମାଳମାନ
ଚାପରେ ବିଜୟେ ମଦନ ମୋହନ
ସଙ୍ଗେ ଘେନି ତ୍ରିଲୋଚନ
ଧୀର ଧୀର ହୋଇ ଚଳୁଛନ୍ତି ଚାପ
ବିହଙ୍ଗ ଗମନ ପ୍ରାୟେ

ଓଡ଼ିଶା ନରେନ୍ଦ୍ର ସୈନ୍ୟ ସଙ୍ଗେ ଘେନି
ଆଲଟ ଚାମର ବାହେ ।

ଚନ୍ଦନ ଯାତ୍ରା ସମ୍ଭବତଃ ଶ୍ରୀ ରାମାନୁଜ (ଖ୍ରୀ:ଅ: ୧୨ଶ ଶତାବ୍ଦୀ)ଙ୍କ ସମୟରୁ ପୁରୀଠାରେ ଗଙ୍ଗବଂଶୀ ରାଜାଙ୍କ ଅମଳରେ ପ୍ରବର୍ତ୍ତିତ ହୋଇଥିଲା । କିନ୍ତୁ ଜଗନ୍ନାଥଙ୍କୁ ବୁଦ୍ଧ ଭାବରେ ଗ୍ରହଣ କରିବାର ପରମ୍ପରା ପ୍ରାଚୀନ ଓ ପ୍ରତିଷ୍ଠିତ । ଜଗମୋହନ ମଧ୍ୟରେ ଗରୁଡ଼ ସ୍ତମ୍ଭ ନିକଟରେ ଯେଉଁ ଦଶାବତାର ପାଟ ଅଛି, ସେଥିରେ ମଧ୍ୟ ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥଙ୍କ ପ୍ରତିମା ସନ୍ନିବିଷ୍ଟ । ଏପରିକି କେହି କେହି ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କୁ ଧର୍ମ, ସଂଘ ଓ ବୁଦ୍ଧ ଭାବରେ ବୌଦ୍ଧ ତ୍ରିରତ୍ନ ବୋଲି କହିଥାନ୍ତି । ତଥାପି ବୈଶାଖର ଶେଷ ତିଥି ଏବେବି ତଥାଗତ ବୁଦ୍ଧଙ୍କୁ ସ୍ମରଣ କରୁଛି, ଇତିହାସ ଜଣାଉଛି ବିନମ୍ର ପ୍ରଣତି ।

-୦-

# ଦେଖ ନବକାଳିକା

ଜୁନ୍ ୧୭, ୧୯୯୮ ସମ୍ବାଦପତ୍ରରେ ବାହାରିଲା- 'ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ ଆଜି ସକାଳେ ଦିଲ୍ଲୀରେ ପହଞ୍ଚିଛି । ପ୍ରଚଣ୍ଡ ରୌଦ୍ରତାପ ପରେ, ଏହି ମୌସୁମୀ ବାୟୁକୁ ସମସ୍ତେ ଅପେକ୍ଷା କରୁଥିଲେ ।' ଏହାର କିଛି ଦିନ ଆଗରୁ ଭୁବନେଶ୍ୱରରୁ ବାହାରୁଥିବା ଗୋଟିଏ ଇଂରାଜୀ ଖବର କାଗଜରେ ମେଘାଚ୍ଛନ୍ନ ଆକାଶର ପ୍ରତିଛବି ପ୍ରକାଶ ପାଇଥିଲା । ତା' ତଳେ ଛପା ହୋଇଥିଲା- 'ଆୟା ସାବନ ଝୁମ୍‌କେ' । ବର୍ଷା ପାଇଁ କି ଉତ୍ସୁକତା, ତା'ର ଆଗମନରେ କି ଆନନ୍ଦ ! ପୁଣି ଶିଳ୍ପୀଙ୍କର ଚିତ୍ରରେ ଓ କବିଙ୍କ ବର୍ଣ୍ଣନାରେ ଏହା ହୁଏ ଆହୁରି ପ୍ରୀତିପ୍ରଦ ଓ ଉପଭୋଗ୍ୟ ।

ସଜଳ ମେଘ ମତ୍ତହସ୍ତୀ
ତଡ଼ିତ୍ ପତାକା
ବଜ୍ର ଶବ୍ଦର ମାଦଳ ଧ୍ୱନି
ହେ ପ୍ରିୟେ ! କାମୀ-ଜନର ପ୍ରିୟ ଘନକାଳ
ରଜା ପରି ଜାକ ଜମକରେ ଆସୁଛି ।

କବି କାଳିଦାସଙ୍କର ଏହି ବର୍ଣ୍ଣନା ମନେ ପଡ଼ିଲା ବେଳକୁ ସ୍ମୃତିରେ ଉଦ୍‌ଭାସିତ ହୁଏ, ନନ୍ଦ କିଶୋରଙ୍କ ବର୍ଷା ମଙ୍ଗଳ କବିତାର କେତୋଟି ପଦ-

ନବ ପ୍ରାବୃଟର ପୃଷତରେ ଆର୍ଦ୍ର
କ୍ଷିତିର ସୁରଭି ଗନ୍ଧ
ବାହାରେ ବହଇ ମନ ବିନୋଦନ
ଗନ୍ଧବହ ମନ୍ଦ ମନ୍ଦ ।
ସେ ରଜ ସୁବାସ ବିକିରଇ ବାତ
ଭ୍ରମି ଭ୍ରମି ଦିଶେ ଦିଶେ,
ନୀରଦ ରଜାଙ୍କୁ ଧରଣୀ-ରାଣୀର
ଅର୍ଘ୍ୟ ଧୂପ ଗନ୍ଧ କି ସେ ?

\+ \+ \+

ନବ ନୀରବର ନୀର ପାନେ ବ୍ୟସ୍ତ
ଶାଖା ଗଣ ହଲି ହଲି,
'ସ୍ୱାଗତ ହେ ବର୍ଷା' ବୋଲିଣ କର କି
ସଞ୍ଚାଳନ୍ତି ଦ୍ରୁମା ବଳି ?

ମେଘକୁ ନୀରଦ, ଜଳଦ ବୋଲି ସମ୍ବୋଧନ କରାଯାଏ । କାରଣ ସେ ଧରିତ୍ରୀକୁ ସେହି ନୀର ବା ଜଳ ଦାନ କରେ, ଯାହାର ଅନ୍ୟନାମ - ଜୀବନ । ସେଥିପାଇଁ ଗ୍ରୀଷ୍ମ ଋତୁର ପ୍ରଚଣ୍ଡତା ଦୁଃସହ ହେବା ବେଳୁ ଆରମ୍ଭ ହୁଏ ବର୍ଷା ପାଇଁ ଆକୁଳ ଅପେକ୍ଷା ।

ପୃଥିବୀର ଉତ୍ତର ଗୋଲାର୍ଦ୍ଧରେ ବାଣିଜ୍ୟ ବାୟୁ କର୍କଟ କ୍ରାନ୍ତି ଆଡୁ ଉତ୍ତର-ପୂର୍ବ ପଟୁ ବିଷୁବ ରେଖା ଆଡ଼କୁ ପ୍ରବାହିତ ହୁଏ । ଏହା ଉତ୍ତର-ପୂର୍ବ ବାଣିଜ୍ୟ ବାୟୁ । ଭାରତ ଏହି ବାୟୁ ପ୍ରବାହିତ ଅଞ୍ଚଳ ଭିତରେ ଅଛି । ମାତ୍ର, ଏହି ବାୟୁ ସ୍ଥଳଭାଗ ଉପରେ ପ୍ରବାହିତ ହୁଏ । ତେଣୁ ଏଥିରେ ଜଳୀୟ ବାଷ୍ପ ନ ଥାଏ । ଏ ଭଳି ବାୟୁ ପ୍ରବାହ ଦ୍ୱାରା ବର୍ଷା ନହେବାର କଥା । କିନ୍ତୁ ଗ୍ରୀଷ୍ମ ଋତୁରେ ଭୂ-ଭାଗର ବାୟୁ ସମୁଦ୍ର ଉପରର ବାୟୁ ଅପେକ୍ଷା ଅତ୍ୟଧିକ ଉଷ୍ମ ହେବା ଫଳରେ ଲଘୁଚାପ ସୃଷ୍ଟି ହୁଏ । ଏହା ବିଶେଷକରି ଉତ୍ତର-ପଶ୍ଚିମ ଅଞ୍ଚଳରେ ସଂଗଠିତ ହୋଇଥାଏ । ଏହି ଲଘୁଚାପ ଅଞ୍ଚଳ, ସମୁଦ୍ରର ଗୁରୁଚାପ ଅଞ୍ଚଳରୁ ବାୟୁ ଆକର୍ଷଣ କରେ । ଫଳରେ ଏହି ବାୟୁ ପ୍ରବାହ ହେତୁ ଗ୍ରୀଷ୍ମ ଋତୁରେ ଭାରତର ବିଭିନ୍ନ ଅଞ୍ଚଳରେ ବର୍ଷା ହୁଏ । ଏହାକୁ କୁହାଯାଏ - ମୌସୁମୀ ବାୟୁ ପ୍ରବାହ । ଏହି ବାୟୁ ପ୍ରବାହର ଏକ ବିଶେଷ ଅଙ୍ଗ ଆରବ ସାଗର ଦେଇ ଭାରତରେ ପ୍ରବେଶ କରେ, ଯାହାର ନାମ - ଦକ୍ଷିଣ-ପଶ୍ଚିମ-ମୌସୁମୀ ବାୟୁ । ଏହି ବାୟୁ ପ୍ରବାହ ଦିଲ୍ଲୀରେ ସେ ଦିନ ପହଞ୍ଚି ଯାଇଥିବାରୁ, ସେହି ଖୁସି ଖବର-କାଗଜରେ ବାହାରି ପଡ଼ିଥିଲା । ଏବେ ଭାରତର ବିଭିନ୍ନ ଅଞ୍ଚଳ ଆଡ଼କୁ ଏହି ବାୟୁର ଗତି ଓ ତଦ୍‌ଜନିତ ବୃଷ୍ଟିପାତର ପରିମାଣ ଓ ପରିଣାମ ଦୂରଦର୍ଶନ ମାଧ୍ୟମରେ ପୂର୍ବରୁ ସୂଚାଇ ଦିଆଯାଉଛି ।

ମଣିଷ ଯେତେବେଳେ ବାୟୁ ମଣ୍ଡଳର ସ୍ୱଭାବ ଓ ବାୟୁ ପ୍ରବାହର ଗତିବିଧି ବୁଝି ନଥିଲା, ସେତେବେଳେ ବୃଷ୍ଟିପାତ ଓ ଅନାବୃଷ୍ଟିକୁ 'ଦୈବୀ-କୃପା' ଅଥବା 'ଦୈବୀ-କୋପ' ବୋଲି ବିଶ୍ୱାସ କରୁଥିଲା । ପୃଥିବୀର ବିଭିନ୍ନ ଅଞ୍ଚଳରେ ବସବାସ କରୁଥିବା ମାନବ ଗୋଷ୍ଠୀ ଭିତରେ ଜଣେ ଜଣେ ଦେବତାଙ୍କୁ ବୃଷ୍ଟିର

ଦେବତା ବୋଲି ବିଶ୍ୱାସ ଜନ୍ମିଥିଲା । ବହୁ ପ୍ରକାରର ଧର୍ମୀୟ ମତବାଦ (cult) ଏବଂ ଧର୍ମକୃତ୍ୟମାନ (rites) ସୃଷ୍ଟି ହୋଇଥିଲା, ଏହିସବୁ ଦେବତା ବା ଦେବୀମାନଙ୍କର ସନ୍ତୋଷବିଧାନ ଲାଗି । ଏଥିପାଇଁ ଗୋଟିଏ ଗୋଟିଏ ପୂଜକ ବା ପୁରୋହିତ ଗୋଷ୍ଠୀ ତିଆରି ହୋଇଯାଇଥିଲେ । କୃଷକମାନେ ବୃଷ୍ଟିର ଦେବ ଦେବୀଙ୍କୁ ପୂଜା ବିଧାନରେ ସନ୍ତୁଷ୍ଟ କରିବା ଲାଗି ଏଇମାନଙ୍କ ଉପରେ ନିର୍ଭର କରୁଥିଲେ । ଭାରତରେ ବୈଦିକ ଯୁଗରେ ପର୍ଜନ୍ୟ ଦେବଙ୍କୁ ମେଘ, ପବନ ଓ ବର୍ଷାର ଦେବତା ଭାବରେ ଗ୍ରହଣ କରାଯାଇଥିଲା । ସେ ମେଘ-ବିଗ୍ରହ ଓ ବୃଷ୍ଟିପାତର ଦେବତା । କ୍ରମେ ଇନ୍ଦ୍ର ଓ ପର୍ଜନ୍ୟ ଏକ ଦେବତା ରୂପେ ଗୃହୀତ ହେଲେ । ଇନ୍ଦ୍ର, 'ବଜ୍ରଧର' । ପେରୁରେ ଏହିପରି ବଜ୍ରଧର ଦେବତା ହେଲେ, ଇଲାପ୍ । ମେଘପୁଷ୍ପ ବା ବୃଷ୍ଟିପାତକୁ ତାଙ୍କର ଆଶୀଷ ବର୍ଷଣ ବୋଲି ପେରୁର ଲୋକେ ବିଶ୍ୱାସ କରନ୍ତି । ମେକ୍ସିକୋରେ ବୃଷ୍ଟିର ଦେବତା ଟଲା ଲୋକ (Tlaloc) । ସ୍ୱର୍ଗରେ ଯେଉଁ ଅଞ୍ଚଳରେ ପୁଣ୍ୟ କର୍ମୀମାନଙ୍କର ଆତ୍ମା ବିଚରଣ କରୁଥାଏ, ସେଇଠି ତାଙ୍କର ରାଜ୍ୟ । ସେ ମେଘମାଳାର ସିଂହାସନ ଉପରେ ଆସୀନ ବୃଷ୍ଟିକାରକ ଦେବତା । ଇଜିପ୍ଟରେ ହପି (Hapi) ବୃଷ୍ଟିପାତ କରାଇ ନୀଳ ନଦୀରେ ବନ୍ୟା ସୃଷ୍ଟି କରନ୍ତି ବୋଲି ସେଠାରେ ଲୋକବିଶ୍ୱାସ ପ୍ରଚଳିତ ଥିଲା । ଆଫ୍ରିକାର ଗୋଟିଏ ଗୁହାଚିତ୍ରରେ ଉତ୍କୀର୍ଣ୍ଣ ହୋଇଛି, କିପରି ସ୍ୱର୍ଗର ଦେବୀ ବୃଷ୍ଟି କରାଉଛନ୍ତି । ଆମେରିକାର ପ୍ରାଚୀନ ସଭ୍ୟତାରେ ବୃଷ୍ଟି ପାଇଁ ଗୋଷ୍ଠୀ ନୃତ୍ୟ, ପ୍ରାର୍ଥନା ଓ ବଳି ପ୍ରଥାର ପ୍ରଚଳନ ଥିଲା । ଏହିପରି ପ୍ରାଚୀନ କାଳରୁ ବୃଷ୍ଟିପାଇଁ ମନୁଷ୍ୟର ଉତ୍କଣ୍ଠା ଓ ଉତ୍ସାହ ଲକ୍ଷ୍ୟ କରାଯାଏ ।

ଜୀବ ଜଗତ ଓ ଉଦ୍ଭିଦ ଜଗତର ଜୀବନ ଜଳ ଉପରେ ନିର୍ଭରଶୀଳ । ଜଳଦ ବର୍ଷା ଋତୁରେ ଧରାବକ୍ଷରେ ଜୀବନ ଓ ସୌନ୍ଦର୍ଯ୍ୟ ସଞ୍ଚାର କରେ । ଏହି ପ୍ରସଙ୍ଗରେ ଭକ୍ତ କବି ମଧୁସୂଦନ ରାଓଙ୍କ 'ବର୍ଷା' କବିତାରେ ଲେଖା ହୋଇଛି-

ଶ୍ୟାମଳ ଦୂର୍ବାଦଳେ ଶୋଭଇ ମହୀ
ସାଧବ ବୋହୂ ତଥିପରେ ଶୋଭଇ ।
କଦମ୍ବ ନୀଳୋତ୍ପଳ ଚମ୍ପା ମାଳତୀ
ଯୁଇ ଜାଇ ପୁନ୍ନାଗ ପ୍ରଫୁଲ୍ଲ ଅତି ।

ପୁଷ୍ପେ ଶୋଭିତ ଛଣ ପଟ କିଆରୀ
ସୁବର୍ଣ୍ଣ ଜିଣି କାନ୍ତି କି ମନୋହରୀ ।

ଏହା ଉଦ୍ଭିଦ ଜଗତର କେତୋଟି ଦୃଷ୍ଟାନ୍ତ । ଜୀବଜଗତର ଆନନ୍ଦ ତତୋଽଧିକ-

ଜଳ ନିକଟେ ଉଚ୍ଚେ ଡାକଇ ଭେକ
ମହା ହରଷ ଭରେ ଡାକେ ଡାହୁକ
ନୀଳ ମେଘ ଦର୍ଶନେ ଆନନ୍ଦ ଭରେ
ମୟୂର ନୃତ୍ୟ କରେ ଗିରି ବନରେ ।

ସପ୍ତ ସ୍ୱର ଭିତରୁ ବେଙ୍ଗ (କେତେକଙ୍କ ମତରେ ଅଶ୍ୱ) ରାବରୁ ଧୈବତ ଓ ମୟୂରର ରାବରୁ ଷଡ଼ଜ ସ୍ୱର ନିଆଯାଇଛି । ଉର, ତାଲୁ, କଣ୍ଠ, ଜିହ୍ୱା, ନାସିକା ଓ ଦନ୍ତ ପ୍ରଭୃତି ଛଅଟି ସ୍ଥାନକୁ ସ୍ପର୍ଶ କରି ଏହି ସ୍ୱର ବାହାରେ । ତେଣୁ ଏହାକୁ 'ଷଡ଼ଜ' କୁହାଯାଏ । ମୟୂରଠାରୁ ଏହି ସ୍ୱରର ଜନ୍ମ । ''ସା-ରେ-ଗା-ମା-ପା-ଧା-ନି'' ଆଦି ସପ୍ତସ୍ୱରରୁ ଷଡ଼ଜରୁ 'ସା' ଏବଂ ଧୈବତରୁ 'ଧା' ନିଆଯାଇଛି । ଏହା ସଂଗୀତ ଶାସ୍ତ୍ରରେ ଲେଖାଯାଇଛି । ପଲ୍ଲୀ କବି ନନ୍ଦକିଶୋର ବଳ ନିର୍ଝରିଣୀର କାକ ବାରତା କବିତାରେ, ପୁଚ୍ଛଟେକି ନାଚୁଥିବା ମୟୂରର ରବ ଏବଂ ତାହା ଶୁଣି ମୟୂରୀର ଉଚ୍ଛନ୍ନତା ବର୍ଣ୍ଣନା କରି ଲେଖିଛନ୍ତି-

ନୀଳ ନଭେ ଦେଖି ନବ ନୀରଦ
ଉଚ୍ଚେ ବର୍ହୀ ଛାଡ଼େ ଷଡ଼ଜ ଶବ୍ଦ ।
ଉତ୍ ପୁଚ୍ଛ-କଳାପୀ-ଆନନ୍ଦ-ସ୍ୱନ
ଶୁଣିଣ ମୟୂରୀ ହୁଏ ଉଛନ୍ନ ।

କେବଳ ମୟୂର-ମୟୂରୀ ନୁହନ୍ତି, ମନୁଷ୍ୟ ପ୍ରାଣରେ ମଧ୍ୟ ବର୍ଷାର ପରିବେଶ ରୋମାଞ୍ଚ ସୃଷ୍ଟି କରେ । ଏହା କବିମାନଙ୍କ ଅଭିବ୍ୟକ୍ତିରେ ଫୁଟିଛି ।

ଯେଉଁମାନେ ରୀତି ଯୁଗର ପ୍ରମୁଖ କବି ଉପେନ୍ଦ୍ର ଭଞ୍ଜଙ୍କୁ ଜାଣନ୍ତି, ସେମାନେ ତାଙ୍କର ପିତାମହ ଧନଞ୍ଜୟ ଭଞ୍ଜଙ୍କୁ ମଧ୍ୟ ଜାଣିବା ସ୍ୱାଭାବିକ । ସେ ବର୍ଷାଋତୁର ଆଗମନରେ ଗିରିମାଳାର ଶିଖର ସ୍ପର୍ଶ କରୁଥିବା ମେଘକୁ 'ଖେଳ କୁଞ୍ଜର ସମ ମନୋହର' ବୋଲି ଅନୁଭବ କରି, ତା'ର ଲୀଳା ବର୍ଣ୍ଣନା କରିଛନ୍ତି-

ଶିଖରୀ ଶିଖେ ଥାଇ ଘନ ମାଳା
ଗଗନରେ ଲାଗି କରନ୍ତି ଲୀଳା
ପୁଣି କଟକ ଦେଶେ ବିହରନ୍ତି
ଅଚଳ ସକଳ ତନୁ ଲୁଚାନ୍ତି ।
ଯହୁଁ କାମରୂପୀ, ଏଣୁଟି ବିରହୀ ହୃଦୟ ତାପୀ ।

ଲାବଣ୍ୟବତୀର ସଖୀମାନେ ଆକାଶରେ ନବ ନୀରଦ ଓ ବକମାନେ ଆକାଶରେ ମାଳ ମାଳ ହୋଇ ଉଡ଼ିବାରୁ ଜାଣିଗଲେ ଯେ ବର୍ଷା କାଳ ଆସିଗଲା । ଏଣେ କରୀନ୍ଦ୍ର ଗମନୀ ଲାବଣ୍ୟବତୀ ନିକଟରେ ତା'ର ବଲ୍ଲଭ ନାହାନ୍ତି । ଏପରି ସମୟରେ କାମଦେବଙ୍କ ପଞ୍ଚଶାୟକରୁ କିପରି ରକ୍ଷା ମିଳିବ, କିପରି ମତ୍ତ କରୀ ଗତି ଲାବଣ୍ୟବତୀ ବର୍ଷା କାଳ ପରି ସମୟରେ ବିଚ୍ଛେଦ ବେଦନା ସହ୍ୟ କରି ବଞ୍ଚିବେ, ଏହି ଚିନ୍ତାରେ କାମଦେବଙ୍କୁ ଜାଳି ଦେଇଥିବା - କାଳିକା କାନ୍ତ ଶିବଙ୍କୁ ଲାବଣ୍ୟବତୀର ଆଳୀମାନେ ସ୍ମରଣ କରିବାର ସୁନ୍ଦର ବର୍ଣ୍ଣନା କରିଛନ୍ତି ଉପେନ୍ଦ୍ର ଭଞ୍ଜ -

ଦେଖି ନବ କାଳିକା ବକାଳିକା ମାଳିକା
ଆଳି କାଳିକା କାନ୍ତ ସ୍ମରି,
ରକ୍ଷା କେମନ୍ତେ କରି କରିବା ମତ୍ତ କରୀ ଗତିକି
ଏମନ୍ତେ ବିଚାରି ସେ, ସହଚରୀ ।
ଭାବେ ବଞ୍ଚିଲେ ଏ କାଳକୁ କଥା ଥିବ କାଳ କାଳକୁ
ଏକେ ତ କ୍ଷୀଣ ଦିନ ହେଲା ଦୁର୍ଦ୍ଦିନ ଦିନ
ନ ଲଭି ବଲ୍ଲଭ ମେଳକୁରେ ସହଚରି ।

କାଳିଦାସ, ଧନଞ୍ଜୟ, ଉପେନ୍ଦ୍ର ଭଞ୍ଜ, ପଲ୍ଲୀ କବି ନନ୍ଦ କିଶୋର ବଳଙ୍କ ଠାରୁ ଡକ୍ଟର ମାୟାଧର ମାନସିଂହଙ୍କ ପର୍ଯ୍ୟନ୍ତ ବହୁ କବିଙ୍କ ପ୍ରାଣରେ ବର୍ଷାବତରଣ ସୃଷ୍ଟି କରିଛି ରୋମାଞ୍ଚ । ଡକ୍ଟର ମାନସିଂହ, ତାଙ୍କର ବହୁଚର୍ଚ୍ଚିତ 'ଧୂପ' ବହିର ବର୍ଷା ବିରହ କବିତାରେ ଲେଖିଛନ୍ତି -

ବୃଷ୍ଟିଧାରା ପଡ଼ଇ ଅବିରତ
ଦୁର୍ବାଦଳ ପଡ଼ଇ ନଇଁ ଲାଜେ

ବର୍ଷା-ଘାସ ଆଲିଙ୍ଗନ ଦେଖି
ପରାଣେ ମମ ବ୍ୟଥାର ବୀଣା ବାଜେ ।
ଶୀକର କଣା ଛିଡ଼ିକି ଗବାକ୍ଷରେ
କପାଳେ ମୋର ମୁକ୍ତା ସମ ଲାଗେ ।
ପାଖରେ ମୋର ନାହିଁ ଯେ ପ୍ରାଣ ସଖୀ
ଦେଖିବ ତାହା ପରମ ଅନୁରାଗେ ।

ସେ ଶୁଣିଛନ୍ତି, ଏହି ସମୟରେ ଜଳଦର ଡାକରେ କଦମ୍ବ ମୁକୁଳ ଫୁଟି ଉଠେ, ସେ ପଢ଼ିଛନ୍ତି, କାଳି ଦାସଙ୍କ ଲେଖନୀରେ ମନ୍ଦାକ୍ରାନ୍ତା ବୃତ୍ତ ଓ ଅପୂର୍ବ ଶୈଳୀରେ ଫିଟିଥିବା ବିରହ ବିଧୂର ଯକ୍ଷର ମରମ ଗାଥା- ମେଘଦୂତ । ବର୍ଷା ଓ ପରିବେଶରେ ତାହା ତାଙ୍କ ପ୍ରାଣରେ ପ୍ରିୟାର ଅନୁପସ୍ଥିତି ଜନିତ ବେଦନାକୁ ଉଦ୍‌ଜୀବିତ କରିଛି-

ମେଘୁଆ ଦିନେ ବୃଷ୍ଟି-ମୁଖର କାଳେ
ମନଟା କିପାଁ ହୁଅଇ ଛଳଛଳ
ପରାଣ ଖୋଜେ ଆହୁରି ଏକ ପ୍ରାଣ
ହସ୍ତ ଲୋଡ଼େ ଆଉ କା କର ତଳ ।
ଏପରି ଏକ ଆଷାଢ଼ ବୃଷ୍ଟି ଭରା
ସକାଳେ ପ୍ରାଣ ଉଠିଲା ଯେଣୁ ଥରି
ମନ୍ଦାକ୍ରାନ୍ତେ ଗାଇଲେ କାଳିଦାସ
ପ୍ରୋଷିତ ଭର୍ତ୍ତା ପ୍ରିୟାରେ ଅନୁସରି ।

ଗାଁ ଗହଳରେ ଚାଳ ଘରମାନଙ୍କରେ ପିଲାଏ ବର୍ଷାଦିନେ କାହିଁକି ଶୋଇଯାଆନ୍ତି, ତା'ର କାରଣ ଖୋଜି ଶଶୀ ଭୂଷଣ ରାୟ ଲେଖିଛନ୍ତି- ''ଭେକ କଣ୍ଠସ୍ୱର ଏବଂ ଚାଳ ଉପରିସ୍ଥ କାକୁଡ଼ି ଓ 'ଜହ୍ନି' ପତ୍ର ଉପରେ ବୃଷ୍ଟିଧାରା ପଡ଼ି ଯେଉଁ ଶବ୍ଦ ସମନ୍ୱୟ ଉତ୍ପନ୍ନ କରେ, ତାହା ବାଳକମାନଙ୍କର କାନ୍ତ ନୟନ ପଲ୍ଲବରେ ନିଦ୍ରାର କୁହୁକ ପରି, ଏଥି ସକାଶେ ଶୀଘ୍ର ଶୀଘ୍ର ଶୋଇପଡ଼ନ୍ତି ।'' ପୁଣି ସେ ଏହି ବର୍ଷା କାଳରେ ଓଡ଼ିଶାର ବିଭିନ୍ନ ପାର୍ବତ୍ୟ ଅଞ୍ଚଳର ଶୋଭା ଓ ପରିସ୍ଥିତି ବର୍ଣ୍ଣନା କରି ଲେଖିଛନ୍ତି - ''କନ୍ଧମାଳର ପାଣିଶିଳା, କେନ୍ଦୁଝରର ଭୂୟାଁପୀଢ଼, ମୟୂରଭଞ୍ଜର

ଶିମିଳିପାଳ, ବାମଣ୍ଡାର ବଡ଼ରମା, ତାଳଚେରର ବାରୁଆଁ, ଢେଙ୍କାନାଳର ସପ୍ତଶଯ୍ୟା, ଆଠମଲ୍ଲିକର ପଞ୍ଚଧାର, ଦଶପଲ୍ଲାର ଗୋୟାଳଡ଼ିହ (ସପ୍ତକୋଶୀ), ବଉଦର ବାଙ୍କମୁଣ୍ଡି, ସୁକିନ୍ଦାର ଟମକା, ନୟାଗଡ଼ର ଶୁଳିଆ, ଖଣ୍ଡପଡ଼ାର ଘାଟଗିରି ଏବଂ ରଣପୁରର ଗଉଣିଆ ପ୍ରଭୃତି ବଡ଼ ବଡ଼ ପର୍ବତରୁ ପର୍ବତ ପଞ୍ଜର ଏବଂ ଗିରି ସଂକଟରେ ସ୍ରୋତର ଆକସ୍ମିକ ଅବତରଣ ଏବଂ ପଥିକମାନଙ୍କର ବିପଦ ବର୍ଷା କାଳର ପ୍ରାୟ ନିତ୍ୟ ଘଟଣା । ଗିରି ନଦୀରେ ବେତସବନ, ଏବଂ ଜମ୍ବୁବନ ସଂକୁଳ ଶ୍ଳଥ ଶିଳାରାଶିରେ ଆବିଳ ସ୍ରୋତ ଧାବମାନ । ଏଣୁ ପକ୍ଷୀମୁଣ୍ଡା ସ୍ରୋତରେ କୌଣସି ଜନ୍ତୁ ଓ କୀଟ ପତଙ୍ଗ ପ୍ରଭୃତି କାହାରି ରକ୍ଷା ନାହିଁ । ମହାନଦୀସ୍ଥ କନ୍ଦରରୁ ପଙ୍ଗପାଳର ଉତ୍ଥାନ ଓ ତଜ୍ଜନିତ କୃଷକମାନଙ୍କର ଶଙ୍କା ଏହି ସମୟର ଗୋଟିଏ ବିଶେଷତ୍ୱ । ସମ୍ବଲପୁରର ସୋନପୁରଠାରୁ ମହାନଦୀର ବିଷମ ଏବଂ ସପ୍ତକୋଶୀ ଗଣ୍ଡ ମଧ୍ୟଦେଇ ଅନେକ ବାଣିଜ୍ୟ ନୌକା କଟକ ଆସୁଅଛି । ହୀରାକୁଦ ବନ୍ଧ ନିର୍ମାଣ ପରେ ଏହି ଦୃଶ୍ୟର ପରିବର୍ତ୍ତନ ଘଟିଛି । ଦଶପଲ୍ଲାରୁ ପୁରୀ ରଥର କାଠ ଭେଳା ମହାନଦୀର ବକ୍ଷରେ ଭାସିଲାଣି । ମଣିଭଦ୍ରା ପର୍ବତ ତଳସ୍ଥ ଅରଣ୍ୟ ପ୍ରଦେଶ ବୃତଙ୍ଗ ନାମକ ଗିରି ନଦୀର ଶବ୍ଦରେ ମୁଖରିତ ହେଲାଣି ଏବଂ ଏଭଳି ଶତ ଶତ ଉପନଦୀ ମହାନଦୀକୁ ପାଣି ଯୋଗାଇବା ହେତୁରୁ ଆଜି ମହାନଦୀ ସ୍ଫୀତ କଳେବରା ହୋଇ ଧାବମାନା ।'' ପୁଣି - ''ଭେଡ଼ା ଅଞ୍ଚଳରେ ଏବଂ ବ୍ରାହ୍ମଣୀ ଓ ମହାନଦୀର ଅନୁପଦେଶସ୍ଥ କନିକା ଏବଂ କୁଜଙ୍ଗ ପ୍ରଦେଶ ପାଟ ସମୂହରେ ଦିଗନ୍ତ ବ୍ୟାପୀ ପୀତ-ହରିତ୍ ଚଢ଼େଇ ଲୁଚା ଧାନ୍ୟ କ୍ଷେତ୍ର ଶୋଭା ବିସ୍ତାର କରୁଅଛି । ପଛକୁ ଗାଢ଼ ହରିତାୟମାନ ହୋଇଯିବ ।'' (ଉତ୍କଳର ଋତୁ ଚିତ୍ର, ୧୯୫୦) ।

ବର୍ଷା ଋତୁର ଆଗମନୀ ପର୍ବ ରଜ ଏବଂ ଶେଷ ପର୍ବ ଝୁଲଣ । ରଥଯାତ୍ରା ଏହି ଋତୁର ଆରମ୍ଭରେ ପଡ଼େ । ଯେପରି କଣ୍ଟା ଫିରିକି ଫୁଲର ମହକ ବର୍ଷାଋତୁର ବହୁତ ଫୁଲର ମହକ ଭିତରେ ବାରି ହୋଇଯାଏ, ସେହିପରି ଝୁଲଣ ସମୟରେ ଓଡ଼ିଶୀ ସଂଗୀତ ଓ ଛାନ୍ଦମାନଙ୍କର କର୍ଣ୍ଣରସାୟନ ଗୁଣ ଆଉ ସବୁ ଗୀତ ଭିତରେ ବାରି ହୋଇଯାଏ ।

ବର୍ଷା ଋତୁ ନବ ଦୁର୍ବାଦଳଭରା ପ୍ରାନ୍ତରର ଶୋଭା ବଢ଼ାଏ, ଚନ୍ଦ୍ରଗୋପ (ସାଧବ ବୋହୂ) । ଆକାଶର ଶୋଭା ବଢ଼ାଏ ଇନ୍ଦ୍ରଧନୁ । ପଲ୍ଲୀ କବି ନନ୍ଦ କିଶୋର, ଏହାକୁ ଆକାଶରୁ ପୃଥିବୀ ଆଡ଼କୁ ମୁହଁ କରିଥିବା ଇନ୍ଦ୍ର-ନୀଳ-ଦ୍ୱାରଯୁକ୍ତ

ସୁବର୍ଣ୍ଣ ତୋରଣ ଭାବରେ ବର୍ଣ୍ଣନା କରିଛନ୍ତି । ସତେ ଅବା ଏହି ତୋରଣ ଆଢ଼େଇ ସ୍ୱର୍ଗର ସୁରବାଳାମାନେ ସୂର୍ଯ୍ୟ ଓ ବାରିଦଙ୍କ ଯୁଦ୍ଧ ଦେଖନ୍ତି-

ରବି ପ୍ରତି ମୁଖେ ଦିଶେ ଇନ୍ଦ୍ରଧନୁ     ବର୍ଣ୍ଣଛଟା ରମେ ଚକ୍ଷୁ,
ଶତ ଇନ୍ଦ୍ରଧନୁ ଝଲସି ଉଠଇ     ଚଳ ନିର୍ଝରର ବକ୍ଷୁ ।
ଫେଡ଼ି ସୁରବାଳା ଇନ୍ଦ୍ରନୀଳ ଦ୍ୱାର     ଯୁକ୍ତ ସୁବର୍ଣ୍ଣ ତୋରଣ,
ଅର୍କ ବାରିଦର ବିଚିତ୍ର ଆହବ     ସ୍ୱର୍ଗୁ କରନ୍ତି ଦର୍ଶନ ।

ବର୍ଷା ଦିନେ ନଈ ବଢ଼େ । ବଢ଼ି ପାଣିରେ ଲୋକମାନଙ୍କର ଏବଂ ଗୃହପାଳିତ ଜୀବଜନ୍ତୁଙ୍କର ଦୁଃଖ ଦୁର୍ଦ୍ଦଶା ଗାଆଣି ଗାଇଲେ ସରେ ନାହିଁ । ତଥାପି ଏ ଋତୁର ଆଗମନୀ ଉପଭୋଗ୍ୟ । ନବକାଳିକା ବା ନବୀନ ମେଘମାଳା ଦେଖି ପ୍ରାଣପ୍ରିୟ ବଲ୍ଲଭଙ୍କ ଠାରୁ ଦୂରରେ ଥିବା ଲାବଣ୍ୟବତୀର ଆଳୀମାନେ ସିନା ଚିନ୍ତାରେ ପଡ଼ିଥାନ୍ତି, କିନ୍ତୁ ଯେଉଁଠି କାନ୍ତା-କାନ୍ତ ଏକତ୍ର ଥାଆନ୍ତି ବା ହୁଅନ୍ତି, ତାହା ଉପଭୋଗ୍ୟ ହୁଏ । ତେଣୁ କୁହାଯାଏ-ବର୍ଷା ଦିନର ପାଗ ଓ ଦୃଶ୍ୟ କାହାପାଇଁ ଅବା ପ୍ରୀତିପ୍ରଦ ନହୁଏ ? କିନ୍ତୁ କୌଶଲ୍ୟାଙ୍କର ଚିନ୍ତା ଓ ଦୁଃଖ ଥିଲା ନିଆରା । ତାଙ୍କର ପୁଅ ବୋହୂ ଓ ପୁତ୍ର ସମ ପୁତୁରା ରାଜସୁଖରୁ ବଞ୍ଚିତ ହୋଇ ବନବାସ କରୁଥିଲେ । ସେ କୋଇଲି ଆଗରେ ମନ କଥା ଫିଟାଇ କହିଥିଲେ-

ଆଷାଢ଼ ମାସରେ ମେଘ·     ଗରଜିଲା ଯେହ୍ନେ ବାଘ
ବେଳେ ବେଳେ ଦୃଶ୍ୟ     ହୁଅଇ ଅଦୃଶ୍ୟ
ଘୋଟିଯାଏ ଚଉଦିଗ ଲୋ କୋଇଲି ।
ଦେଖ ଧାରା ଶିରାବଣ,     ଜଳ ପଡ଼େ ଅନୁକ୍ଷଣ
ଘର ଘାଟ ନାହିଁ     ମୋ ଦୁଃଖ ସଙ୍ଘାଳି
କିରୂପେ କାଟିବ ଦିନ - ଲୋ କୋଇଲି ।
(ଶଙ୍କର ଦାସଙ୍କ ବାରମାସୀ କୋଇଲି)

-୦-

# ବନସ୍ତେ ଡାକିଲା ଗଜ

ସୂର୍ଯ୍ୟ କାଳର ଅଧିଦେବତା । ଅଥର୍ବ ବେଦରେ ଗୋଟିଏ ସୂକ୍ତରେ ତାଙ୍କୁ ଇନ୍ଦ୍ର, ମହେନ୍ଦ୍ର, ପ୍ରଜାପତି ଓ ବିଷ୍ଣୁ ଭାବରେ ସମ୍ବୋଧନ କରାଯାଇଛି । ସେ ଗୋଟିଏ ରାଶିରୁ ଆଉ ଗୋଟିଏ ରାଶିରେ ପ୍ରବେଶ କଲେ, ସେଇ ରାଶି ଅନୁସାରେ ମାସର ନାମ ହୁଏ ମେଷ, ବୃଷ, ମିଥୁନ, କର୍କଟ ଇତ୍ୟାଦି । ଏହାକୁ ସୌର ମାସ କୁହାଯାଏ । ସୂର୍ଯ୍ୟ ବୃଷ ରାଶିକୁ ଛାଡ଼ି ଯେଉଁଦିନ ମିଥୁନ ରାଶିରେ ପ୍ରବେଶ କରନ୍ତି ବା ମିଥୁନ ରାଶିରେ ଉଦୟ ହୁଅନ୍ତି, ସେହି ଦିନଟିକୁ କୁହାଯାଏ - ମିଥୁନ ସଂକ୍ରାନ୍ତି । ଓଡ଼ିଶାରେ ଚଳୁଥିବା ସ୍ମୃତି ଶାସ୍ତ୍ରମାନଙ୍କରେ ଅଛି - 'ବୃଷମାସ ସରିବା ପରେ, ମିଥୁନର ଆଦ୍ୟରେ ପୃଥିବୀ ରଜସ୍ୱଳା ହୁଏ । ତେଣୁ ସୌର ବୃଷ ମାସର ଶେଷ ଦିନ, ମିଥୁନ ସଂକ୍ରାନ୍ତି ଏବଂ ତା ପରବର୍ତ୍ତୀ ଦିନ ହଳ ପ୍ରବାହ, ଭୂମି ଖନନ, ବୃକ୍ଷ ଛେଦନ ଓ ବୀଜ ବପନ ନିଷେଧ ।' ସେଥିପାଇଁ ମିଥୁନ ସଂକ୍ରାନ୍ତିର ଅନ୍ୟ ନାମ ରଜ ସଂକ୍ରାନ୍ତି । ଏହା ଓଡ଼ିଶାରେ ଗୋଟିଏ ପର୍ବଦିନ । ଏହି ପର୍ବଟି ଚାରିଦିନ ଧରି ପାଳିତ ହୁଏ । ପ୍ରଥମ ଦିନ, ଅର୍ଥାତ୍ ବୃଷମାସର ଶେଷ ଦିନଟିକୁ କୁହାଯାଏ - ପହିଲି ରଜ । ଏହା ସଜବାଜର ଦିନ । ତା' ପରଦିନ ମିଥୁନ ସଂକ୍ରାନ୍ତି ବା ରଜ ସଂକ୍ରାନ୍ତି । ତୃତୀୟ ଦିନ ଭୂମି ଦହନ । ଚତୁର୍ଥ ବା ରଜପର୍ବର ଶେଷ ଦିନଟି ବସୁମତୀ ଗାଧୁଆ ବା ଧରା ସ୍ନାନ ।

ସୌର ମାସ ସଂକ୍ରାନ୍ତିରୁ ସଂକ୍ରାନ୍ତି ଗଣନା କରାଯାଏ । ସେହିପରି ଚାନ୍ଦ୍ରମାସ ପ୍ରତିପଦାରୁ ପୂର୍ଣ୍ଣିମା ଯାଏ ମାସ ଧରାଯାଏ । ଅମାନ୍ତ ମାସ ଗଣନା ମଧ୍ୟ କେତେକ ଅଞ୍ଚଳରେ ପ୍ରଚଳିତ । ଚନ୍ଦ୍ର ଗୋଟିଏ ନକ୍ଷତ୍ରରୁ ଅନ୍ୟ ନକ୍ଷତ୍ରକୁ ଗତି କରନ୍ତି । ଯେଉଁ ଯେଉଁ ମାସରେ ଚନ୍ଦ୍ର ବିଶାଖା, ଜ୍ୟେଷ୍ଠା, ଶ୍ରବଣା ଆଦି ଯେଉଁ ଯେଉଁ ନକ୍ଷତ୍ରରେ ଥାଇ ପୂର୍ଣ୍ଣିମା ହୁଏ, ସେହି ସେହି ପୂର୍ଣ୍ଣିମାର ନାମ ବୈଶାଖ ପୂର୍ଣ୍ଣିମା, ଜ୍ୟେଷ୍ଠ ପୂର୍ଣ୍ଣିମା, ଶ୍ରାବଣ ପୂର୍ଣ୍ଣିମା ଆଦି ହୁଏ, ଏବଂ ମାସର ନାମ ମଧ୍ୟ ସେହି ଅନୁସାରେ ଚିହ୍ନିତ ହୁଏ । ଦୁଇଟି ମାସରେ ଗୋଟିଏ ଋତୁ ଧରାଯାଏ । ଋତୁ ଶବ୍ଦଟି 'ଋ' ଧାତୁ ନିଷ୍ପନ୍ନ । ଏହାର ଅର୍ଥ ଗତି ବା ଚଳନ । ଚନ୍ଦ୍ର ସୂର୍ଯ୍ୟଙ୍କର ଚଳନ ଋତୁଚକ୍ରକୁ ପ୍ରଭାବିତ କରେ । ଚାନ୍ଦ୍ରମାସ ଅନୁକ୍ରମରେ ଗଣନା କରି ଦେଖିଲେ

ଆଷାଢ଼ ମାସରେ ସୂର୍ଯ୍ୟ ମିଥୁନ ରାଶିରେ ଥାଆନ୍ତି । ଏହି ସମୟରୁ ବର୍ଷାଋତୁ ଆରମ୍ଭ । କୃଷକ ଜ୍ୟେଷ୍ଠ ମାସ ଶେଷ ଆଡ଼କୁ ଧାନ ବୁଣା ସାରି ମିଥୁନ ସଂକ୍ରାନ୍ତିଠାରୁ ଆଷାଢ଼ର ବୃଷ୍ଟିପାତକୁ ଅପେକ୍ଷା କରିଥାଏ । ଋତୁ ପରିବର୍ତ୍ତନର ପ୍ରଭାବ, ମନୁଷ୍ୟ, ଉଦ୍ଭିଦ ଓ ଅନ୍ୟ ଜୀବ ଜଗତ ଉପରେ ପଡ଼େ । ଆଷାଢ଼ର 'ପ୍ରଥମ ଦିବସ'ରେ ଆକାଶରୁ ପର୍ବତର ଶିଖ ଯାଏ ଘୋଟି ଯାଇଥିବା ମେଘକୁ ଦେଖି, କୁବେରଙ୍କ ଅଭିଶାପରେ ପ୍ରିୟାଠାରୁ ବହୁଦୂରସ୍ଥ ରାମଗିରି ଆଶ୍ରମରେ କାଳଯାପନ କରୁଥିବା ଯକ୍ଷ ପ୍ରାଣରେ ବିରହ-ବେଦନା ପ୍ରବଳତର ହୋଇ ଉଠିବାର ରସୋତ୍ତୀର୍ଣ୍ଣ ବର୍ଣ୍ଣନା କରିଛନ୍ତି କବି କାଳିଦାସ । ପୃଥିବୀ ବା ଭୂଦେବୀଙ୍କୁ ବିଷ୍ଣୁପତ୍ନୀ ବୋଲି ଉଲ୍ଲେଖ କରି, ଗୋଟିଏ ପ୍ରାତଃ ସ୍ମରଣ ମନ୍ତ୍ରରେ କୁହାଯାଇଛି - 'ସମୁଦ୍ର ବସନେ ଦେବି, ପର୍ବତ ସ୍ତନ ମଣ୍ଡଳେ ।' ସେହି ପର୍ବତ ଶିଖରରେ ମେଘ ସଞ୍ଚାର ଭଳି ପ୍ରେକ୍ଷଣୀୟ ଦୃଶ୍ୟ କବିଙ୍କ ମନରେ ଭାବାନ୍ତର ସୃଷ୍ଟି କରିଛି । ତାଙ୍କୁ ସେହି ମେଘ ଖଣ୍ଡ ବପ୍ରକ୍ରୀଡ଼ାରତ ଗଜ ପରି ଦେଖାଯାଇଛି ।

ବର୍ଷା ଋତୁର ଏହି ମାସଟିରେ ଜଗନ୍ନାଥ ମହାପ୍ରଭୁ ଭାଇ ଭଉଣୀଙ୍କୁ ଧରି ରଥଯାତ୍ରା କରନ୍ତି । ଏହି ମାସଟି ରଜପର୍ବ ଓ ରଥଯାତ୍ରା ପାଇଁ ଉତ୍ସବମୁଖର ହୁଏ । ରଜ ବସୁମତୀଙ୍କର ପର୍ବ ଓ ଝିଅମାନଙ୍କର ଉତ୍ସବ । ସେମାନଙ୍କର ସଜବାଜ, ପାନଭଙ୍ଗା, ପାନବଣ୍ଟା, ଦୋଳି ଖେଳ ଓ ତା'ର ଗୀତ - ତଥା ବାଦଗୀତ ରଜ ପର୍ବଟିକୁ ସରସ ମଧୁର କରିଦିଏ । ଦୋଳି ଖେଳୁଥିବା ଝିଅମାନଙ୍କ କଣ୍ଠରୁ ଶୁଭିଯାଏ-

ବନସ୍ତେ ଡାକିଲା ଗଜ ! ବରଷକେ ଥରେ ଆସିଛି ରଜ,
ଆସିଛି ରଜଲୋ ସଙ୍ଗେ ଘେନି ସଜବାଜ ।

ଏହା, ଉପରେ ସୂଚନା ଦିଆଯାଇଥିବା କାଳିଦାସଙ୍କ ମେଘଦୂତମ୍ କାବ୍ୟର ସେହି ପ୍ରେକ୍ଷଣୀୟ ବା ଦେଖିବା ଭଳି ଦୃଶ୍ୟକୁ ମନେ ପକାଇଦିଏ । ସେଦିନ ପୃଥିବୀମାତାଙ୍କର ସ୍ତନମଣ୍ଡଳ ସଦୃଶ ପର୍ବତ ଚୂଡ଼ାକୁ ଆଶ୍ଳେଷ କରିଥିବା ଖଣ୍ଡେ ମେଘ ଉତ୍‌ଖାତ କେଳି (ବପ୍ରକ୍ରୀଡ଼ା) ରତ ଗଜ ପରି ଦେଖାଯାଇଥିଲା, କାବ୍ୟ ବର୍ଣ୍ଣିତ ବିରହୀ ଯକ୍ଷଙ୍କୁ । ପୁଣି ବୃଷ୍ଟିପାତକୁ ଇନ୍ଦ୍ରଙ୍କର ବାହାନ ଐରାବତ ଶୁଣ୍ଢରୁ ଝରି ଆସୁଥିବା ଜଳଧାର ବୋଲି ଜନମାନସ କଳ୍ପନା କରି ନେଇଛି । ତେଣୁ ବର୍ଷାର ଆବାହନୀ ପର୍ବରେ 'ଗଜ'ର ଚିତ୍ର କଳ୍ପନା କରିବା ପ୍ରାକୃତିକ ପରିବେଶର ପ୍ରଭାବ ।

ଓଡ଼ିଶାର ଅନ୍ୟତମ ପର୍ବ କୁମାର ପୂର୍ଣ୍ଣିମାର ପୁଚି ଖେଳ, ବାଘ ବକ୍ରୀ ଖେଳ ପରି ରଜର ଦୋଳି ଖେଳ ବଡ଼ ଉତ୍ସାହ ଓ ଆନନ୍ଦ ଉଚ୍ଛୁଳା ଖେଳ । ଉତ୍ତର ଭାରତର 'ତିଜ୍' ପର୍ବର ଦୋଳି ଖେଳ ଓ ଗୀତ ସହିତ, ଏଇ ଉତ୍ସବ ଓ ଏହାର ଗୀତ ତୁଳନୀୟ ।

ଘର, ଅଗଣା ଓ ତୋଟାମାନଙ୍କରେ ରଜଦୋଳି ବନ୍ଧାହୁଏ । ପଟା ଦୋଳି, ଓହଳ ଦୋଳି, ଠିଆ ଦୋଳି ପାଇଁ କୁମାରୀ ମନ ଆଗରୁ ପ୍ରସ୍ତୁତ ହୋଇ ରହିଥାଏ । ଆନନ୍ଦ ଉଚ୍ଛଳ ହୋଇ ଖେଳିବା ବେଳେ ଦୋଳି ଯେମିତି ଖସି ନପଡ଼େ, ସେଥିପ୍ରତି ପୂର୍ବରୁ ଯଥେଷ୍ଟ ସତର୍କତାର ସହିତ ଦୋଳି ବନ୍ଧା ଯାଇଥାଏ । କେତେକ୍ ଅଞ୍ଚଳରେ ଦୋଳି ଖେଳିବା ପୂର୍ବରୁ ଦୋଳିକୁ ପୂଜା କରାଯାଏ । ବାଦ୍ୟ ଗୀତ କେମିତି ସରସ ହେବ, ସୁକଣ୍ଠରେ ଗାଇ ହେବ, ସେଥିପାଇଁ ଠାକୁରାଣୀଙ୍କୁ ବନ୍ଦନା କରାଯାଏ -

ଦୋଳି ମୁଣ୍ଡେ ଦେଲି କଳା
ପ୍ରଥମେ ବନ୍ଦିଲି ସର୍ବ ମଙ୍ଗଳା
ସରତି ଉଠିବ ଗଳା ।

ଦୋଳି ଗୀତ ଗୁଡ଼ିକ ଝିଅମାନେ ପୂର୍ବରୁ କଣ୍ଠସ୍ଥ କରି ଥାଆନ୍ତି । ଏଥି ପାଇଁ ପରମ୍ପରା କ୍ରମେ ଖାତାମାନଙ୍କରେ ଗୀତ ସବୁ ଲେଖା ହୋଇ ହାତରୁ ହାତକୁ ଗଡ଼ି ଆସୁଥିବାର ଦେଖାଯାଏ । ମାତ୍ର ଏହା କିଶୋରୀମାନଙ୍କ ମନରୁ ବାହାରିଥିବା ମନଛୁଆଁ ପଦ । ଗୋଟିଏ ଗୀତରେ ପ୍ରଶ୍ନ ଉତ୍ତର ଛଳରେ କୁହାଯାଇଛି-

ହୁଁ କଲା ହନୁମନ୍ତ ଦୋଳି ଗୀତ ଯାକ କେଉଁଠୁ ଜାତ
ବୁଝାଇ କହିବୁ ମିତ ।
ହୁଁ କଲା ହନୁମନ୍ତ ଦୋଳି ଗୀତ ଯାକ ମନରୁ ଜାତ
ବୁଝାଇ କହିଲି ମିତ ।

ଝିଅମାନେ ପାନ ଖିଲେ ଖିଲେ କଳରେ ଯାକି ହସ ହସ ଚଳଚଞ୍ଚଳ ଚାହାଣୀରେ ସରସତା ଫୁଟାଇ ପରସ୍ପରକୁ ଥଟ୍ଟା କରି ମନ ମଉଜରେ ପେଙ୍ଗ ମାରି ମାରି ଦୋଳି ଖେଳୁଥିବା ବେଳେ ଗାଉଥାଆନ୍ତି -

ପାଚିଲା କଇଁଚ କୋଳି

ତୋର ମୋର ଆଜି ଲାଗିବା କଳି

ଲାଗିବା କଳିଲୋ

ମୋ ଠାରୁ ଯିବୁକି ବଳି ............. ?

ଥଟ୍ଟା ପରିହାସ ବନ୍ଧୁ (Joking relation) ଆମ ସାମାଜିକ ଓ ବନ୍ଧୁ ବାନ୍ଧବ ସଂପର୍କର ଗୋଟାଏ ଚମତ୍କାର ଦିଗ । ଜୀବନକୁ ସରସ ଓ ହୃଦ୍ୟ ପରିହାସ ଭିତରେ ଉପଭୋଗ କରିବା ପାଇଁ ଶଳା, ଶାଳୀ, ନଣନ୍ଦ, ଭାଉଜ, ଅଜା, ଆଈ, ନାତି, ନାତୁଣୀ ଠାରୁ ଭାଇଶଳା, ନଣଦେଇ ପ୍ରଭୃତି ଯାଏ ନାନା ଶାଖା ପ୍ରଶାଖା ମେଲାଇଛି ଆମ ପରିହାସ ବନ୍ଧୁସଂପର୍କ । ଦୋଳି ଖେଳ ବେଳେ ନଣନ୍ଦ, ଭାଉଜର ଭାଇକୁ ଥଟ୍ଟା କରି କହେ-

ଦୋଳି କଲା ରଟ ମଟ

ମୋ ଭାଇ ମୁଣ୍ଡରେ ସୁନା ମୁକୁଟ, ସୁନା ମୁକୁଟଲୋ

ତୋ ଭାଇ ମୁଣ୍ଡରେ ଜଟ ।

ପୁଣି ଦୋଳି ଖେଳ ସେମାନଙ୍କ ଭିତରେ କି ଉତ୍ସାହ ଚହଟାଏ, ତାହା ଗୋଟିଏ ପଦରେ ଫୁଟିଛି -

ଗାଇଦେଲେ ଦୋଳି ଗୀତ

ଦୋଳିରେ ଦୋଳିରେ ଉହୁଁକି ଯିବି, ଉହୁଁକି ଯିବିଲୋ

ସାତ ଶିଖ ପରବତ........

କାହାର ଅବା ମନେ ପଡ଼ିଯାଏ ଭାଦ୍ରବ ମାସର ଖୁଦୁରୁକୁଣି ଓଷାର କାହାଣୀ । ସାଧବ ଝିଅ ତଅପୋଇ ତ ତାଙ୍କରି ପରି ଝିଅଟିଏ ଥିଲା, ବାଡୁଅ ଦିନେ କି ଦୁଃଖ ନ ଭୋଗିଛି ? ତାକୁ ମନେ ପକାଇ କିଏ ବୋଲି ଦିଏ-

ଦୋଳିରୁ ଛିଡ଼ିଲା ଲଇ

ବୋଇତରେ ଗଲେ ସପତ ଭାଇ

ସପତ ଭାଇଲୋ

ବଣେ କାନ୍ଦେ ତଅପୋଇ ।

ଉପରେ ଦିଆଯାଇଥିବା ପଦ ଗୁଡ଼ିକରୁ ଲକ୍ଷ୍ୟ କରିହେବ ଯେ, ଏଗୁଡ଼ିକ ତିନିପଦ ବିଶିଷ୍ଟ । ସେଥିରୁ ପ୍ରଥମ ଧାଡ଼ିଟି ପ୍ରାୟ ନିରର୍ଥକ, ଏବଂ ଶେଷ ଦୁଇ ଧାଡ଼ିରେ ବକ୍ତବ୍ୟ ପ୍ରକାଶ ପାଇଥାଏ ।

ରଜ ପାଳୁଥିବା ଝିଅମାନଙ୍କୁ ରଜୋଇତି କୁହାଯାଏ । ପହିଲି ରଜ ବା ସଜବାଜ ଦିନ, ରଜୋଇତିମାନେ ବଡ଼ି ସକାଳୁ ତେଲ ହଳଦି ଲଗାଇ ଗାଧୁଆ ପାଧୁଆ କରନ୍ତି । ଗାଧୋଇ ସାରି ଫେରିବା ବେଳକୁ ଖୁଡ଼ୀ, ଭାଉଜମାନେ ବାସନା ତେଲ, ଚନ୍ଦନ, ସିନ୍ଦୂର ଧରି ଝିଆରୀ, ନଣନ୍ଦମାନଙ୍କୁ ସଜବାଜ କରାଇଦେବାକୁ ବସିଥାନ୍ତି । ସେମାନଙ୍କର କେଶ-ବିନ୍ୟାସ, ବେଶବାସ ବଡ଼ ଯତ୍ନରେ କରନ୍ତି । ସେମାନଙ୍କ ଭିତରେ କିଏ ଭଲ ବେଣୀ ଛନ୍ଦିପାରେ, କିଏ ବଢ଼ିଆ ଗଭା ବାନ୍ଧିପାରେ, କିଏ ଭଲ ଚନ୍ଦନ ପାଟି ପିନ୍ଧାଇପାରେ, କିଏ ସୁନ୍ଦର କରି ଲୁଗା ପିନ୍ଧାଇବାରେ ସରସ ଇତ୍ୟାଦି ଦକ୍ଷତାର ପ୍ରଶଂସା ଗାଁ ସାରା ପ୍ରଚାରିତ ହୁଏ । କୋଠ ପରିବାରରେ ସ୍ନେହ ମମତାର ବନ୍ଧନ ଦୃଢ଼ ହୁଏ । ସାଇ ପଡ଼ିଶାରେ ଖୁଡ଼ି ଭାଉଜ ଡକାହକା ହେଉଥିବା ମହିଳାମାନେ ରଜୋଇତି ମାନଙ୍କୁ ସଜାଇବାରେ ମଧ୍ୟ ସହଯୋଗ କରନ୍ତି ।

ପର୍ବପର୍ବାଣୀ ଗୁଡ଼ିକ ସାମାଜିକ ଜୀବନକୁ ପରସ୍ପର ସହିତ ଛନ୍ଦି ରଖେ । ସାଇରେ ରଜ ପାଳୁଥିବା ଝିଅମାନେ ଗୋଟିଏ ବଖରାରେ ଏକାଠି ବସନ୍ତି । ଏହି ଘର ବଖରାଟିର ନାଁ- ରଜଘର । ଏଠି ବଡ଼ ବଡ଼ ହେଁସ ପରା ହୋଇଥାଏ । ଏହା ରଜ ବିଛଣା । ରଜ ସମୟ ଭିତରେ ଏ ବିଛଣା ଉଠାଯାଏ ନାହିଁ । ଘରର କେହି ଜଣେ ମୁରବୀ ସ୍ଥାନୀୟା ଏହି ରଜଘରର ଚାରିପଟେ ତିନି ଆଙ୍ଗୁଳିରେ ଗୋବର ଗାର ଟାଣି ଥାଆନ୍ତି । ଏପରି କଲେ ସାପ ପଶିବ ନାହିଁ ବୋଲି ବିଶ୍ୱାସ । ରଜୋଇତିମାନେ ରଜ ବିଛଣାରେ ବସିଥାଆନ୍ତି । ଖୁଡ଼ି, ଭାଉଜମାନେ ସେଠାକୁ ମୁଢ଼ି, ଲିଆ, ଉଖୁଡ଼ା, ପୋଡ଼ପିଠା ପ୍ରଭୃତି ନିର୍ଦ୍ଦିଷ୍ଟ ଖାଦ୍ୟ ଆଣି ଦିଅନ୍ତି । ଏହା ସହିତ କଦଳୀ, ନଡ଼ିଆ ମଧ୍ୟ-ଖିଆଯାଏ । ରଜୋଇତିମାନେ ରଜଘରେ ବସି ବସି କଉଡ଼ି, ତାଆସ ଆଦି ବୈଠକୀ ଖେଳ ଖେଳନ୍ତି । ସେମାନେ ଭୂଇଁରେ ଚାଲିବା ମନା । ତେଣୁ ପାଦରେ ପାଦୁକା (ଗୁଆ ଖୋଳପା, କଦଳୀ ବାସୁଙ୍ଗା, ନଡୁବା ଚଟି) ପିନ୍ଧନ୍ତି । ଏହି ସଜବାଜ ବା ପହିଲି ରଜ ଦିନରୁ ଆନନ୍ଦ ଉତ୍ସବ, ଦୋଳି ଖେଳ ଆରମ୍ଭ ହୋଇଯାଏ ।

ମିଥୁନ ସଂକ୍ରାନ୍ତି ବା ରଜର ଦ୍ୱିତୀୟ ଦିନ ରଜୋଇତିମାନେ ଗାଧୁଆ ପାଧୁଆ କରନ୍ତି ନାହିଁ । ଏହି ଦିନଟି ପାନଖିଆ ଓ ପାନବଣ୍ଟା ଦିନ । ପାନ ଭଙ୍ଗାରେ ସୂକ୍ଷ୍ମ କଳାକୁଶଳତା ଫିଟେ । କିଏ କେମିତି ମସଲାମାନ ଦେଇ କେତେ ସୁନ୍ଦର ବଢ଼ିଆ ପାନ ଭାଙ୍ଗିଜାଣେ, ତା'ର, ଏକ ପ୍ରକାର ପ୍ରତିଯୋଗିତା ହୁଏ ।

ମିଥୁନ ସଂକ୍ରାନ୍ତିର ପରଦିନ 'ଭୂଇଁ ନଅଣ' ବା ଭୂମି ଦହନ । ଏହି ଦିନ ବସୁମାତା ରଜସ୍ୱଳା ହୋଇଥିବାରୁ କଷ୍ଟ ପାଉଥାଆନ୍ତି । ଏପରି ବିଶ୍ୱାସ କରାଯାଏ । ରଜୋଇତିମାନେ ଏହି ଦିନ ବେଶ ହୁଅନ୍ତି ନାହିଁ । ରଜ ବିଛଣା ଛାଡ଼ି କୁଆଡ଼େ ଯାଆନ୍ତି ନାହିଁ । ନିତାନ୍ତ ଆବଶ୍ୟକ ହେଲେ ଚାଲନ୍ତି । ତାହା ପୁଣି ଧୀରେ ଧୀରେ ଚାଲିବାକୁ ହୁଏ । ଦୁମ୍ ଦୁମ୍ ହୋଇ ଚାଲିଲେ, ଏପରିକି ଜୋର୍‌ରେ ଚାଲିଲେ ବସୁମାତାଙ୍କୁ କଷ୍ଟ ହେବ ବୋଲି ବିଶ୍ୱାସ କରାଯାଏ । ଏହାର ପରବର୍ତ୍ତୀ ଦିନ, ଅର୍ଥାତ୍ ରଜର ଶେଷ ଦିନଟି 'ବସୁମତୀ ଗାଧୁଆ' ବା ଧରା ସ୍ନାନ । କେତେକ ଜାଗାରେ ଏହାକୁ ମହାଲକ୍ଷ୍ମୀ ବୁଡ଼ ବୋଲି ମଧ୍ୟ କୁହାଯାଏ ।

ବସୁମତୀ ଗାଧୁଆ ଦିନ ରଜୋଇତିମାନେ ତେଲ ହଳଦି ଲଗାଇ ସ୍ନାନ କରନ୍ତି । କଜ୍ଜଳ, ସିନ୍ଦୂର, ଅଳତା ଲଗାଇ, ଆଉ ଅଳଙ୍କାର ଓ ଭଲ ଲୁଗାପଟା ପିନ୍ଧି ଚଉରା ମୂଳେ ଶିଳ ଶିଳପୁଆ ଓ ଲଙ୍ଗଳ ଲୁହାକୁ ନଡ଼ିଆ ପାଣିରେ ଗାଧୋଇ ଦେଇ ଚନ୍ଦନ, ସିନ୍ଦୂର ଓ ଫୁଲ ପିନ୍ଧାଇ ଦିଅନ୍ତି । ଏହାପରେ ବସୁଧାରେ ପଞ୍ଚାମୃତ ଢ଼ଳାହେବା, ପରେ ବସୁମତୀ ଶୁଦ୍ଧ ହୁଅନ୍ତି ବୋଲି ବିଶ୍ୱାସ କରାଯାଏ । ରଜୋଇତିମାନେ ଏହିଦିନ ଦିଅଁ ଦେଉଳକୁ ଯାଇ ଦର୍ଶନ କରନ୍ତି ଓ ଦଳ ଦଳ ହୋଇ ସାଇ ସାଇ ବୁଲନ୍ତି । ଖିଆ-ପିଆ ଆନନ୍ଦ ଉତ୍ସବ ଚାଲେ । ଚଉରା ମୂଳେ ପୂଜା ହୋଇଥିବା ଲଙ୍ଗଳ ଲୁହାଟି ପୁଣି ହଳ ଲଙ୍ଗଳରେ ଖଞ୍ଜାହୁଏ, ଚାଷ କାମରେ ଲାଗେ । ଏଥିରୁ ରଜକୁ ପୃଥିବୀ ମାତାଙ୍କ ପୂଜା ଓ କୃଷି ପର୍ବ ବୋଲି କୁହାଯାଇପାରେ । ଏହା ଉର୍ବରତାବାଦ (Fertility cult) ସହିତ ସଂପର୍କ ଥିବା ପର୍ବ । ଆସାମର 'ଆମତୀ' ଓ କାମାଖ୍ୟା ମନ୍ଦିରର ପୂଜାବିଧିକୁ ଲକ୍ଷ୍ୟ କଲେ, ଏହି ଧାରଣା ଅଧିକ ସ୍ପଷ୍ଟ ହୁଏ ।

ଗୌହାଟିରେ ବ୍ରହ୍ମପୁତ୍ର କୂଳରେ ଯେଉଁ ପାହାଡ଼ ଉପରେ କାମାଖ୍ୟା ଦେବୀଙ୍କ ପୀଠ ବିରାଜମାନ, ସେହି ପାହାଡ଼ର ନାମ ନୀଳାଚଳ । ସତୀଙ୍କର ଯୋନି ଅଂଶ

ଏହିଠାରେ ପଡ଼ିଥିଲା ବୋଲି ଏହାକୁ ଗୋଟିଏ ଶକ୍ତି ପୀଠ ବୋଲି କୁହାଯାଏ । ଏଠାରେ କାମାଖ୍ୟାଙ୍କର ପ୍ରତିମା ପରିବର୍ତ୍ତେ ପ୍ରତୀକ ପୂଜା ହୁଏ । ସେ ଯୋନି ରୂପରେ ପୂଜିତା । ସୁତରାଂ ସେ ପ୍ରଜନନର ପ୍ରତୀକ । ଦେବୀଙ୍କର ରଜସ୍ୱଳା ହେବା (ରଜ) ପର୍ବ ଏଠାରେ 'ଆମତୀ' ନାମରେ ପାଳିତ ହୁଏ । କାମାଖ୍ୟାଙ୍କ ମନ୍ଦିର ଚାରିଦିନ ପର୍ଯ୍ୟନ୍ତ ବନ୍ଦ ରହେ । ଏହି ସମୟରେ ଦେବୀ ରଜସ୍ୱଳା ହୁଅନ୍ତି ଓ ତାଙ୍କ ନାଭିରୁ ରକ୍ତସ୍ରାବ ହୁଏ ବୋଲି ବିଶ୍ୱାସ ପ୍ରଚଳିତ । ତେଣୁ ଏହାର ପ୍ରତୀକ ରୂପେ ଲାଲ୍ ଫୁଲ, ସିନ୍ଦୂର ଇତ୍ୟାଦି ଦେବୀଙ୍କ ଠାରେ ଲାଗି କରାଯାଏ । ଧରା ସ୍ନାନ ଦିନଟି ଅମ୍ବୁତୀର ଶୁଦ୍ଧି ଦିନ ଭାବରେ ସେବା ପୂଜାଦି କୃତ୍ୟ ଅନୁଷ୍ଠିତ ହୁଏ ।

କାମାଖ୍ୟା ବହୁ ପ୍ରାଚୀନ ଦେବୀ, ହିନ୍ଦୁ ପୂର୍ବ ଯୁଗର । କେତେକ ବିଦ୍ୱାନଙ୍କ ମତରେ କାମାଖ୍ୟା ମୂଳତଃ ମଙ୍ଗୋଲୟଡ୍ ବା କୀରାତ୍‌ଗୋଷ୍ଠୀର ବଡ଼ୋ କାଚାରୀମାନଙ୍କର ପୂଜିତା ଦେବୀ - 'ଖାମ୍-ମାଇ-ଖା' । ସେମାନଙ୍କର ବିଶ୍ୱାସ ଯେ, ଖାମ-ମାଇ-ଖା' ବର୍ଷକରେ ଥରେ ଋତୁସ୍ନାନ କରନ୍ତି । ତା' ଫଳରେ ପୃଥିବୀ ପୁଣି ଶସ୍ୟ ଶ୍ୟାମଳା ହୋଇଯାଏ । ବଡ଼ୋ କାଚାରୀମାନଙ୍କ ମଧ୍ୟରେ ଏହି ପର୍ବଟି ପାଳିତ ହୁଏ । ବଡ଼ୋ, କାଚାରୀ, ଡିମାଛା, ଦେଉରୀ, ଚୁଟୀୟା; ତିପ୍ରା (ତ୍ରିପୁରୀ) ଆଦି ଜନଜାତି ତିବ୍ବତ- ବର୍ମୀ ଭାଷାଭାଷୀ ଗୋଷ୍ଠୀର ଅନ୍ତର୍ଗତ । ଡ଼ିମାଛା, ଦେଉରୀ, ଚୁଟୀୟା, ତିପ୍ରାଙ୍କ ମଧ୍ୟରେ ଖାମ-ମାଇ-ଖା ବା ତତ୍ ସମା ସୃଷ୍ଟିକାରିଣୀ ମାତୃଶକ୍ତିର ଧାରଣା ବହୁ ପ୍ରାଚୀନ । ମାଟିର ଉର୍ବରତା ବୃଦ୍ଧି ପାଉ, ଧରା ଶସ୍ୟଶାଳିନୀ ହେଉ- ଏହି ଉଦ୍ଦେଶ୍ୟ ଓ କାମନାର ପୂରଣ ପାଇଁ ପୃଥିବୀ ବା ବସୁମତୀ ପୂଜାବିଧି ବହୁ ପ୍ରାଚୀନ କାଳରୁ ଚଳି ଆସୁଛି ।

ପ୍ରାଚୀନ ଇଉରୋପୀୟ ସଭ୍ୟତାରେ ଡିଆନା (Diana)ଙ୍କର କୃତ୍ୟ ବିଧିରେ ଉର୍ବରତାବାଦର ଲକ୍ଷଣ ସ୍ପଷ୍ଟ । ଫ୍ରିଜର (Jams G. Frazer) ତାଙ୍କର ଗୋଲଡ଼େନ୍ ବୋ (The Golden Bough) ଗ୍ରନ୍ଥମାଳାରେ ଉର୍ବରତାବାଦ ଉପରେ ବିସ୍ତୃତ ଆଲୋଚନା କରିଛନ୍ତି । ଯାଦୁ ଏବଂ ଯୌନ ନୃତ୍ୟ-ଗୀତ ପୃଥିବୀରେ ଉର୍ବରତା ଶକ୍ତି ବୃଦ୍ଧି କରେ ବୋଲି ଆମେରିକା, ଜାଭା, ଆଦିର କେତେକ ଜନଜାତି (ଆଦିବାସୀ)ଙ୍କ ମଧ୍ୟରେ ବିଶ୍ୱାସ ପ୍ରବର୍ତ୍ତିତ ଥିଲା । ଉତ୍ତର ଗିନି ଏବଂ ଅଷ୍ଟ୍ରେଲିଆ ମଧ୍ୟବର୍ତ୍ତୀ ଦ୍ୱୀପପୁଞ୍ଜ ମଧ୍ୟରୁ କେତେକରେ ଶସ୍ୟ କ୍ଷେତ୍ରର ଶ୍ରୀବୃଦ୍ଧି ପାଇଁ ପୃଥିବୀ ଦେବୀ ଓ ସୂର୍ଯ୍ୟ ଦେବଙ୍କର ବିବାହ ଉତ୍ସବ କରାଯିବାର ବିଧି ପ୍ରଚଳିତ ଥିବାର ଜଣାଯାଏ ।

ଅଥର୍ବ ବେଦରେ ସୂର୍ଯ୍ୟଙ୍କୁ- 'ସ୍ତବେତ୍ ବିଷ୍ଣୋ ବହୁଧା ବୀର୍ଯ୍ୟାଣି' ବୋଲି ସ୍ତୁତି କରାଯାଇଛି । ପୃଥିବୀଙ୍କୁ 'ବିଷ୍ଣୁପତ୍ନୀ' ବୋଲି ପ୍ରାତଃ ସ୍ମରଣ ମନ୍ତ୍ରରେ ସମ୍ବୋଧନ କରାଯାଇଛି । ବିଷ୍ଣୁ ବରାହ ଅବତାରରେ ପୃଥିବୀଙ୍କୁ ବିବାହ କରିଥିବାର ପୁରାଣରେ ଉଲ୍ଲେଖ ଅଛି । ତେଣୁ ଶସ୍ୟ କ୍ଷେତ୍ରର ଶ୍ରୀବୃଦ୍ଧି ପାଇଁ ସୂର୍ଯ୍ୟଙ୍କ ସହିତ ପୃଥିବୀଙ୍କ ବିବାହ ଉତ୍ସବ ଅନୁଷ୍ଠାନକୁ ଉର୍ବରତାବାଦ ସହିତ ମିଶାଇ ବିଚାର କରିବାରେ ଯଥାର୍ଥତା ଅଛି । ରଜର ବସୁମତୀ ସ୍ନାନ ବିଧିରୁ ଏହାକୁ ଉର୍ବରତା ବୃଦ୍ଧିର ପର୍ବ ବୋଲି ବିଚାରିବା ମଧ୍ୟ ଯଥାର୍ଥ ।

ସାଧାରଣ 'ଲୋକ ମାନସ' କବି ଭାବାପନ୍ନ ବୋଲି କେତେକ ଲୋକବିଦ୍ୟା ବିଶାରଦ (Folklorist) କହନ୍ତି । ପଣ୍ଡିତ ନୀଳକଣ୍ଠ ଦାସ ଓଡ଼ିଆ ସାହିତ୍ୟର କ୍ରମ ପରିଣାମରେ ବି ଏବଂବିଧ ମତ ପ୍ରକାଶ କରିଛନ୍ତି । ମିଥୁନ ମାସରେ ବର୍ଷା ଋତୁ ଆରମ୍ଭ ହୁଏ । ସେ ଏହାକୁ ପୃଥିବୀ ଦେବୀଙ୍କ ସହିତ ପର୍ଜନ୍ୟଦେବଙ୍କ ମିଥୁନ ବା ସଂଗମ ହେବାର ମାସ ବୋଲି ବର୍ଣ୍ଣନା କରିଛନ୍ତି । ସେହି ସଂଗମ ଫଳରେ ପୃଥିବୀ ଦେବୀ ଗର୍ଭଧାରଣ କରି ଶସ୍ୟ ଉତ୍ପନ୍ନ କରିବେ । ସେତିକି ବେଳକୁ ପୃଥିବୀ ରଜସ୍ୱଳା ହେବା ଦରକାର । ତେଣୁ ସେହି ତିନିଦିନଯାକ ସେ 'ମାରା' ବା ଅଶୁଦ୍ଧି ହୁଅନ୍ତି । ଏହି କଳ୍ପନାରୁ ରଜ ସମୟରେ କେତେକ ନିଷିଦ୍ଧ କର୍ମର ଭାବନା ଓ ଧରାସ୍ନାନ ବିଧି ପ୍ରବର୍ତ୍ତିତ ହୋଇଥିବାର ଅନୁମାନ କରାଯାଏ । ସୁତରାଂ 'ରଜ' ବସୁମତୀଙ୍କ ପର୍ବ । ଏହି ପର୍ବରେ ଝିଅମାନଙ୍କର ମନ ପ୍ରଫୁଲ୍ଲ ଓ ଫୁର୍ତ୍ତି ରହିବା ଭଳି ଖେଳ, ଗୀତ, ବାଦଗୀତ ସହିତ ସଂଯତ ଭାବରେ ଚଳ ପ୍ରଚଳ ହେବାର ବିଧି ପରମ୍ପରା କ୍ରମେ ଖଞ୍ଜି ହୋଇଯାଇଛି । ଏହା ଆମର ସାମାଜିକ ଓ ସାଂସ୍କୃତିକ ଜୀବନକୁ ରସସିକ୍ତ କରି ରଖିଛି । ଆମ ପ୍ରାଚୀନ ସାମାଜିକ ଜୀବନର ବିଭିନ୍ନ ସ୍ତରକୁ ଉନ୍ମୋଚିତ କରି ଦେଖାଉଛି ।

-୦-

# ଶ୍ରାବଣୀ

ଶ୍ରାବଣ ବର୍ଷା ଋତୁର ଶେଷ ମାସ । ଏହି ମାସର ପୂର୍ଣ୍ଣିମାକୁ କୁହାଯାଏ - ଶ୍ରାବଣୀ । ଏହା ଗୋଟିଏ ପର୍ବ ଗହଳ ପବିତ୍ରତମ ତିଥି । ଝୁଲଣ ମଣ୍ଡପ ପାଖରୁ ସଂଗୀତ ଓ ଭଜନର ପବିତ୍ର ମଧୁର ଲହର, ଗହ୍ମାକୁଦ ଉପରୁ ପାଇକ ଯୁବକମାନଙ୍କର ଉଲମ୍ଫନ, ଗାଁ ମୁଣ୍ଡରେ ଯୁବକମାନଙ୍କର ଗହ୍ମାଡ଼ିଆଁ, ନଡ଼ିଆ ଲଢ଼େଇ, ମୁଣ୍ଡରେ ନଡ଼ିଆ ମାନ ଛୁଆଇଁ ବ୍ରାହ୍ମଣ ପୁରୋହିତମାନଙ୍କର ଯଜମାନଙ୍କୁ ଆଶୀର୍ବାଦ ସହ ଉପବୀତ ପ୍ରଦାନ ଓ ରକ୍ଷାମନ୍ତ୍ର ଉଚ୍ଚାରଣ କରି ରକ୍ଷା ଡୋରକ ପିନ୍ଧାଇବାର ପବିତ୍ର ବିଧାନ, ଭଉଣୀ ଭାଇ ହାତରେ ରାଖି ବାନ୍ଧିବା ଓ ଭାଇ ଭଉଣୀଙ୍କୁ ମିଷ୍ଟାନ୍ନ ଭୁଞ୍ଜାଇବାର ଆନ୍ତରିକ ଉଲ୍ଲାସ, ଘରେ ଘରେ ବଳଭଦ୍ର ଜନ୍ମ ଉତ୍ସବ ଓ ପିଠାପଣା, ଗୋରୁମାନଙ୍କୁ ପରିଚ୍ଛନ୍ନ ଓ ସୁବେଶ କରାଇ ଭୋଜନ ଦାନ ଏବଂ ଗୁହାଳ ପରିଷ୍କାର କରି, ତା'ର କାନ୍ଥମାନଙ୍କୁ ଚିତାରେ ମଣ୍ଡିତ କରିବାର ବିଧାନ ଭିତରେ କୃଷି-ଭିତ୍ତିକ ଓଡ଼ିଆ ସମାଜର ସଙ୍ଗୀତ ଓ ସମର ସରାଗ, କୃଷି ଓ ଗୋସମ୍ପଦ ପ୍ରତି ଆନ୍ତରିକତା, ସାମାଜିକ ଓ ପାରିବାରିକ ଜୀବନରେ ସ୍ନେହ, ଶ୍ରଦ୍ଧାର ବିନିମୟଧାରା ଏବଂ ଉତ୍ସବ ପ୍ରବଣତାର ପରିଚୟ ମିଳେ ।

ଅନେକ ଉତ୍ସବ-ମୁଖର ଏହି ଦିନଟିର ବର୍ଣ୍ଣନା କରି, ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରକାଶିତ ସଂକ୍ଷିପ୍ତ ଓଡ଼ିଆ ଜ୍ଞାନ କୋଷରେ ଉଲ୍ଲେଖ ଅଛି- "ଏହି ମାସର ପୂର୍ଣ୍ଣମୀରେ ବଳଭଦ୍ରଙ୍କର ଜନ୍ମବିଧି ଗ୍ରାମେ ଗ୍ରାମେ ପାଳିତ ହୋଇଥାଏ । ତା'ଛଡ଼ା ଗାଈ ଗୋରୁଙ୍କୁ ଘରେ ଘରେ ସୁବେଶିତ କରି, ସୁଖାଦ୍ୟ ଖୁଆଇ, ଏହି ଦିନ ବନ୍ଦାପନା କରନ୍ତି । ବିରି ଚାଉଳରେ ଚକୁଳି ପିଠା, ଏଣ୍ଡୁରି ଆଦି କରି ଗୋ-ଦେବତା ବଳଭଦ୍ରଙ୍କୁ ଭୋଗ କରାଯାଇଥାଏ । ପ୍ରତି ଗୋରୁ ମୁଣ୍ଡରେ ହଳଦୀ ଚିତା ଏବଂ ଶିଙ୍ଗରେ ହଳଦିଆ ପଇତା ଲଗାଇ ଦିଆଯାଏ । ଗାଈ ଗୋରୁ ନିରୋଗ ରହିବା ଲାଗି ସେମାନଙ୍କୁ ଗେଣ୍ଡାଳିଆ ଡାଳରେ ମାଡ଼ ଦିଆଯାଏ ।

ଏହାଛଡ଼ା, ଆଜିଠୁ ପାଇକମାନଙ୍କର ସାଧନା ଆରମ୍ଭ ହୋଇଥାଏ । ଏକ ସମୁଚ୍ଚ ଗହ୍ମାକୁଦ ମାଟିରେ ଗଢ଼ି ତାହା ଉପରୁ ପ୍ରଥମ କରି ଡିଆଁ ଆରମ୍ଭ ହୁଏ । ଏହାକୁ ଗହ୍ମାଡ଼ିଆଁ କହନ୍ତି । ଏହି ଡିଆଁରେ ସଫଳତା ମିଳିଲେ ଅନ୍ୟ ସାଧନା

ଶିଖାଯାଏ । ସାଧନା, ଦଶହରା ଅନୁକୂଳ ବେଳକୁ ଶେଷହୁଏ ।'' ଏଥିରୁ ଓଡ଼ିଶାର ସାମାଜିକ, ସାଂସ୍କୃତିକ, ଧାର୍ମିକ ଜୀବନରେ ଏହି ଦିନଟିର ମହତ୍ୱ ଓ ଗୁରୁତ୍ୱ ଉପଲବ୍ଧ କରିହେବ । ବହୁ ଦୁର୍ଯୋଗ ଭିତରେ କୃଷିନିର୍ଭର ଓଡ଼ିଆ ସମାଜରେ ସମର ପରମ୍ପରାର ସଙ୍କେତ ଏହି ପର୍ବପାଳନ ବିଧିର ଅନ୍ତରାଳରେ ତଥାପି ଦୀପ୍ୟମାନ ! ବଳଭଦ୍ର ଜନ୍ମ, ଗହ୍ମା ପୂର୍ଣ୍ଣମୀ ବ୍ୟତୀତ ରକ୍ଷା ବନ୍ଧନ ବା ରାଖି ବନ୍ଧା, ଉପାକର୍ମ, ଝୁଲଣ ଏହି ଦିନର ଅନ୍ୟ କେତୋଟି ଉତ୍ସବ ଓ ଧର୍ମକୃତ୍ୟ ବୋଲି ଉପରେ ସୂଚନା ଦିଆଯାଇଛି । ଶ୍ରାବଣ ଦଶମୀରୁ ଆରମ୍ଭ ହୋଇଥିବା ଝୁଲଣ ବା ହିନ୍ଦୋଳ, ଏହି ଦିନ ଅପରାହ୍ଣରେ ଉଦ୍‌ଯାପିତ ହୁଏ । ତେଣୁ ଏହି ପୂର୍ଣ୍ଣମୀର ଅନ୍ୟ ନାମ ଝୁଲଣ ପୂର୍ଣ୍ଣିମା । ଝୁଲଣ ସମୟରେ ଓଡ଼ିଆ ସଂସ୍କୃତିରେ ସଂଗୀତ ଅନୁରାଗ ଓ ପରମ୍ପରାର ଉତ୍କର୍ଷ ପ୍ରତ୍ୟକ୍ଷ କରାଯାଏ ।

୧୯୫୦ ମସିହାରେ ଶଶୀ ଭୂଷଣ ରାୟ ଲେଖିଥିଲେ - ''ବର୍ଷାର ଶେଷରେ ଝୁଲଣ ଯାତ୍ରା ପର୍ବ । ଏହି ଝୁଲଣ ଯାତ୍ରା ପୁରୀ, କେନ୍ଦ୍ରାପଡ଼ା, ଆଠଗଡ଼ରେ ପ୍ରସିଦ୍ଧ । ପୁରୀର ଝୁଲଣ ପ୍ରାୟ ପ୍ରତ୍ୟେକ ସାହିରେ ଏବଂ ପ୍ରଧାନ ପ୍ରଧାନ ମଠରେ ସମ୍ପନ୍ନ ହୋଇଥାଏ । ଠାକୁର ଠାକୁରାଣୀଙ୍କ ମୂର୍ତ୍ତି ବିମାନରେ ଅବସ୍ଥାପିତ ଏବଂ ସଖୀମାନଙ୍କ ମୂର୍ତ୍ତି ସହିତ କୁଞ୍ଜରେ ଶୋଭମାନ ! ମଧ୍ୟେ ମଧ୍ୟେ ଶଙ୍ଖ ଘଣ୍ଟାଧ୍ୱନି କର୍ଣ୍ଣବଧିର କରୁଅଛି ଏବଂ ପୁରୋହିତ ଅଥବା କୌଣସି ବ୍ରାହ୍ମଣ ବିମାନ ପଶ୍ଚାତରୁ ଥରେ ଥରେ ବିମାନକୁ ଠେଲି ଦେଉଅଛନ୍ତି । ପ୍ରତ୍ୟେକ ଝୁଲଣ ମଣ୍ଡପ ସମୀପରେ ଉତ୍କଳର ଖାଣ୍ଟି ଓଡ଼ିଆ ସଂଗୀତ ଓ ଛାନ୍ଦ ଗୀତ ହେଉଅଛି । ଏ ଦୃଶ୍ୟ କେବଳ ପୁରୀରେ ସ୍ୱାଭାବିକ । ଏହି ସ୍ୱାଭାବିକତା ଆଜିକାଲି ମିଶ୍ରିତ ଯୁଗରେ କେବଳ ପୁରୀ ରକ୍ଷା କରି ଆସୁଛି; ଅନ୍ୟ ସ୍ଥାନରେ ବଙ୍ଗଳା, ହିନ୍ଦି ଓ ଇଂରାଜୀ ରାଗିଣୀର ଅନୁକରଣରେ ଓଡ଼ିଆ ଗୀତ ରଚିତ ହୋଇ ବୋଲା ହୁଏ; ମାତ୍ର ପୁରୀରେ ଏ ପ୍ରଥା ନାହିଁ ।'' ସେ ପୁଣି ଓଡ଼ିଆ ସମାଜର ପାରମ୍ପରିକ ପଇତା ପିନ୍ଧା ବିଧି ଓ ନୂଆ ହୋଇ ଚଳୁଥିବା ରାଖି ବନ୍ଧନର ବର୍ଣ୍ଣନା କରି ଲେଖିଛନ୍ତି - 'ଝୁଲଣ ପୂର୍ଣ୍ଣିମାର ଅନ୍ୟ ନାମ ରାଖି (ରକ୍ଷା) ପୂର୍ଣ୍ଣିମା । ବର୍ଷା ଶେଷ ଓ ଶରତର ନବ ସଂଚାର ଏହି ଦିନରୁ ହୋଇଥାଏ । ବ୍ରାହ୍ମଣମାନେ ରାଖି, ନଡ଼ିଆ ଓ ପଇତା ଘେନି ଦ୍ୱାରେ ଦ୍ୱାରେ ଭ୍ରମଣ କରୁଅଛନ୍ତି । ଏହି ରାକ୍ଷୀ ପୂର୍ଣ୍ଣିମା ପର୍ବତ ବେଷ୍ଟିତ ଅରଣ୍ୟ ମରୁ ସଂକୁଳ ରାଜସ୍ଥାନର ଅତି ପ୍ରମୋଦମୟ ଉତ୍ସବ, ବହୁ ଦୂରବର୍ତ୍ତୀ ଶସ୍ୟ ଶ୍ୟାମଳ ଉତ୍କଳର

ପଲ୍ଲୀ ଗ୍ରାମ ସମୂହରେ ମଧ୍ୟ ଆଜି ସେହି ମଧୁର ଉତ୍ସବର ଆନନ୍ଦପୂର୍ଣ୍ଣ ପ୍ରଥା ଅନୁଭୂତ ହେଉଅଛି ।''

ସଂପ୍ରତି ରାକ୍ଷୀ ବା ରକ୍ଷା ବନ୍ଧନ ଓଡ଼ିଆ ସମାଜରେ ବିଶେଷ ପ୍ରଭାବ ବିସ୍ତାର କରିଛି । ଚିତଉ ଉଆଁସ ବା ଚିତାଲାଗି ଅମାବାସ୍ୟାଠାରୁ ସହରମାନଙ୍କରେ ଯେଉଁ ପରିମାଣରେ ରାକ୍ଷୀ ଦୋକାନ ଖୋଲେ ଓ ସେଠାରେ ମହିଳା, ବିଶେଷତଃ ଝିଅମାନଙ୍କର ଯେପରି ଭିଡ଼ ଜମେ, ସେଥିରୁ ଏହି ଉତ୍ସବଟିର ଲୋକପ୍ରିୟତା କଳନା କରିହେବ । ଭାଇ ହାତରେ ଭଉଣୀ ରାଖି ବାନ୍ଧିବା କିମ୍ବା ଦୂରରେ ଥିଲେ ତାକ ଯୋଗେ ରାଖିଟିଏ ପଠାଇଦେବା ଗୋଟିଏ ପ୍ରଥାରେ ପଡ଼ିଗଲାଣି । ଏହା ଓଡ଼ିଆ ସମାଜରେ କେବେ ରୋପିତ ହୋଇଥିଲା ସିନା, ଏବେ ଦୃଢ଼ମୂଳ ହୋଇଗଲାଣି । ଏବେ ରାଖି ବାନ୍ଧି ଭାଇ କରିବାର ବିଧି ମଧ୍ୟ ଓଡ଼ିଶାରେ ଚଳିଲାଣି । ସମଗ୍ର ଭାରତ ଗୋଟିଏ ସାଂସ୍କୃତିକ ମଣ୍ଡଳ (a single culture unit) ହୋଇଥିବାରୁ, ଉତ୍ତର ଭାରତର ଏହି ଲୋକପ୍ରିୟ ପର୍ବଟି ଓଡ଼ିଶାରେ ଏପରି ବିପୁଳ ଲୋକପ୍ରିୟତା ଲାଭ କରିବା ଏକ ସ୍ୱାଭାବିକ ଲକ୍ଷଣ ମାତ୍ର । କିନ୍ତୁ ଅଧୁନା ଉତ୍ତର - ଭାରତରେ ଏବଂ ଅନ୍ୟତ୍ର ଯେପରି ବିଧି ବିଧାନରେ ଏହା ପାଳିତ ହୋଉଛି, ତାହା ମୂଳତଃ ସେପରି ନଥିଲା ।

ନିର୍ଣ୍ଣୟ ସିନ୍ଧୁରେ ରକ୍ଷା ବନ୍ଧନ ବିଧିର ଉଲ୍ଲେଖ ଅଛି । ତଦନୁସାରେ ଗୃହକୁ ଗୋମୟରେ ଲିପି, ହଳଦୀ ଇତ୍ୟାଦିରେ ମଣ୍ଡଳ ଅଙ୍କନ ଏବଂ କଳସ ସ୍ଥାପନ କରି ସେଠାକୁ ଜଣେ ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରିବାକୁ ହେବ । ବ୍ରାହ୍ମଣ ଗୋଟିଏ ପିଢ଼ାରେ ବସି ମନ୍ତ୍ର ପାଠ କରି ରକ୍ଷା ସୂତ୍ର ବନ୍ଧନ କରିବେ । ଏହି ମନ୍ତ୍ରଟି ହେଲା-

ଯେନ ବଦ୍ଧୋ ବଳୀ ରାଜା ଦାନବେନ୍ଦ୍ର ମହାବଳଃ
ତେନ ତ୍ୱାଂ ପ୍ରତିବଧ୍ନାମି ରକ୍ଷୋ ମାଚଳ ମାଚଳ ।

ଏହି ପ୍ରସଙ୍ଗରେ ଗୋଟିଏ ପୌରାଣିକ ଉପାଖ୍ୟାନ ଅଛି । ସେଥିରୁ ଜଣାଯାଏ ଦେବତା ଓ ଅସୁରମାନଙ୍କ ମଧ୍ୟରେ ବାରବର୍ଷ ବ୍ୟାପୀ ସଂଗ୍ରାମ ଚାଲିଥିଲା । ଇନ୍ଦ୍ରଙ୍କ ନେତୃତ୍ୱରେ ଦେବତାମାନେ ଅସୁରମାନଙ୍କ ସହ ତୁମୂଳ ସଂଗ୍ରାମ କଲେ । ମାତ୍ର ବାରମ୍ବାର ପରାସ୍ତ ହେଲେ । ଦୈତ୍ୟରାଜ ସ୍ୱର୍ଗ ବିଜୟ କଲେ । ଇନ୍ଦ୍ର ବୃହସ୍ପତିଙ୍କୁ ନିଜର ଦୁଃଖ ଜଣାଇଲେ । ସେ ଦିନ ଶ୍ରାବଣ ଶୁକ୍ଳ ଚତୁର୍ଦ୍ଦଶୀ । ବୃହସ୍ପତି ତା'ର ପରଦିନ, ଅର୍ଥାତ୍ ଶ୍ରାବଣ ପୂର୍ଣ୍ଣିମା ଦିନ ପ୍ରାତଃ

କାଳରେ ରକ୍ଷା ବିଧାନ କରି ଇନ୍ଦ୍ରଙ୍କ ହାତରେ ମନ୍ତ୍ର ପଢ଼ି ରକ୍ଷା ସୂତ୍ର ବାନ୍ଧି ଦେଲେ। ଇନ୍ଦ୍ରାଣୀ ମଧ୍ୟ ଏହିପରି କରିଥିଲେ, ଏହାଫଳରେ ଇନ୍ଦ୍ର ଯୁଦ୍ଧରେ ବିଜୟଲାଭ କଲେ । ଏଥିରୁ ମନେହୁଏ, ବ୍ରାହ୍ମଣ ପୁରୋହିତ କିମ୍ବା ସୌଭାଗ୍ୟବତୀ ସ୍ତ୍ରୀମାନେ ରକ୍ଷା ବନ୍ଧନ କରିବାର ବିଧି ମୂଳରୁ ପ୍ରଚଳିତ ଥିଲା । ବୃହସ୍ପତି ଏବଂ ଇନ୍ଦ୍ରାଣୀ ଇନ୍ଦ୍ରଙ୍କ ହାତରେ ଏହା ବାନ୍ଧିଥିବାରୁ ଏପରି ଅନୁମାନ ଯଥାର୍ଥ । ସମ୍ଭବତଃ, ପରବର୍ତ୍ତୀ କାଳରେ ସୌଭାଗ୍ୟବତୀ ଭଗିନୀମାନେ ଭାଇମାନଙ୍କ ହାତରେ ରାକ୍ଷୀ ବାନ୍ଧି, ସେମାନଙ୍କର ସନ୍ତୋଷ ବିଧାନ କରି ଆଶୀର୍ବାଦ ନେବାର ପ୍ରଥା ପ୍ରଚଳିତ ହେଲା । ପୁଣି ମଧ୍ୟଯୁଗରେ ଏହା ଅଧିକ ବ୍ୟାପକ ହେଲା । ଯେକୌଣସି ନାରୀ-ପୁରୁଷ ରକ୍ଷା ବନ୍ଧନ ଦ୍ୱାରା ଭାଇ ଭଉଣୀ ସଂପର୍କ ସ୍ଥାପନର ପରମ୍ପରା ପ୍ରତିଷ୍ଠିତ ହେଲା । ମୋଗଲ ଶାସନ କାଳରେ ଚିତ୍ତୋରର ରାଣୀ କର୍ମାବତୀ ଆକବରଙ୍କ ପିତା ହୁମାୟୁନ୍‌ଙ୍କ ପାଖକୁ ରାକ୍ଷୀ ପଠାଇ, ତାଙ୍କୁ ନିଜର ଭାଇ ଭାବରେ ଗ୍ରହଣ କରିଥିଲେ । ଉଦାରଚେତା ହୁମାୟୁନ୍ ତାଙ୍କୁ ଭଉଣୀ ଭାବରେ ଗ୍ରହଣ କରି, ତାଙ୍କର ସୁରକ୍ଷା ଦାୟିତ୍ୱ ଗ୍ରହଣ କରିଥିଲେ । ଆକବର ତାଙ୍କ ଦରବାରରେ ଯେଉଁ କେତେକ ହିନ୍ଦୁ ପର୍ବ ଚଳାଇଥିଲେ, ତାହା ଭିତରେ ରାକ୍ଷୀ ଥିଲା ଅନ୍ୟତମ । ସମ୍ଭବତଃ, ମଧ୍ୟଯୁଗରେ ରାଜସ୍ଥାନ ଏବଂ ଉତ୍ତର ଭାରତରେ ଯେତେବେଳେ ଆକ୍ରମଣ, ପ୍ରତି ଆକ୍ରମଣ ଚାଲିଥିଲା, ସେହି ସମୟରେ ହିନ୍ଦୁ ରମଣୀମାନଙ୍କର ସୁରକ୍ଷା ନିମନ୍ତେ ଏପରି ରାକ୍ଷୀ ବାନ୍ଧି ଭାଇ ଭଉଣୀ ହେବାର ପ୍ରଥା ପ୍ରବର୍ତ୍ତିତ ହୋଇଥିଲା । ଯାହାହେଲେ ବି ଏହା ସଂଗ୍ରାମରତ ପରିସ୍ଥିତି ସହିତ ଜଡ଼ିତ ।

ବଳଭଦ୍ର ସଂଗ୍ରାମ ଓ କୃଷିର ଦେବତା । ସେ ଗଦାଧର ଓ ହଳଧର । ଶ୍ରାବଣ ପୂର୍ଣ୍ଣିମା ଦିନ ତାଙ୍କର ଜନ୍ମ । ଏହି ଦିନ ଗହ୍ମାକୁଦ ଉପରୁ ଡେଇଁବା ଓ ସେହି ସମୟରୁ ପାଇକ ଆଖଡ଼ାରେ ଗଦା ମୁଦ୍‌ଗର ଚାଳନା ଆଦି ସାଧନା ଆରମ୍ଭ କରିବାର ବିଧି ସଂପର୍କରେ ପୂର୍ବରୁ ସୂଚନା ଦିଆଯାଇଛି । ଏହାଛଡ଼ା 'ଗହ୍ମାବେଦୀ' ଅନ୍ୟ ଏକ ସ୍ମାରକୀ । ଗହ୍ମା ପୂର୍ଣ୍ଣିମା ଦିନ ବଳଭଦ୍ରଙ୍କ ପୂଜା ପାଇଁ ବଳଦ ଆକୃତିର ଗୋଟିଏ ବେଦୀ କରାଯାଏ । ଏହା 'ଗହ୍ମାବେଦୀ' । ଗୋଟିଏ ଅଣ୍ଡିରା ବାଛୁରୀକୁ ନେଇ ଏହି ବେଦୀକୁ ଡିଆଁଇ ଦିଆଯାଏ । ଏହା ପ୍ରାୟ ଅର୍ଦ୍ଧ ଶତାବ୍ଦୀ ପୂର୍ବେ ପୁରୀ ଜିଲ୍ଲାର ବହୁ ସ୍ଥାନରେ ପ୍ରଚଳିତ ଥିଲା । ସଂପ୍ରତି ଏହା ଲକ୍ଷ୍ୟ କରାଯାଉନାହିଁ । ମାତ୍ର ବାଳକ ଓ ଯୁବକମାନଙ୍କର କ୍ରୀଡ଼ା ଭାବରେ

ଗହ୍ମାଡ଼ିଆଁ ଓ ନଡ଼ିଆ ଲଢ଼େଇ କେତେକ ଅଞ୍ଚଳରେ ଅଧ୍ୟାବଧି ଚଳୁଛି । ଏହି ଗହ୍ମା ପୂର୍ଣ୍ଣିମା ଦିନ ଗୃହସ୍ଥମାନେ ଗୁହାଳ ଲିପା ପୋଛା କରାନ୍ତି । ଗୃହିଣୀମାନେ ଗୁହାଳ କାନ୍ଥରେ ବଳଦ, ହଳ, କୃଷି ଉପକରଣର ଚିତ୍ର ଅଙ୍କନ କରନ୍ତି । ଏହି ଦିନ ଗାଈ ଗୋରୁଙ୍କୁ ଫୁଲ ଚନ୍ଦନ, ହଳଦୀରେ ସୁବେଶ କରାଇବା ଏବଂ ଧୂପ, ନବବସ୍ତ୍ର, ନୈବେଦ୍ୟ ଆଦି ଦେଇ ବଳଭଦ୍ରଙ୍କ ଉଦ୍ଦେଶ୍ୟରେ ପୂଜା ଅର୍ପଣ କରିବାର ବିଧି ଚଳି ଆସୁଛି । ଲୋକପ୍ରଚଳିତ ବିଶ୍ୱାସ ଅନୁସାରେ ବଳଭଦ୍ର ଏହି ଦିନ ଲଙ୍ଗଳ ତିଆରି କରି କୃଷି ପ୍ରଣାଳୀ ପ୍ରବର୍ତ୍ତନ କରିଥିଲେ ଓ ଗାଈ ପୁଅ (ଅଣ୍ଡିରା ବାଛୁରୀ)କୁ ବଳଦ କରାଇ କୃଷି କାର୍ଯ୍ୟରେ ଉପଯୋଗ କରିବାର ପ୍ରଥା ଚଳାଇଥିଲେ ।

କଂସ, ବସୁଦେବଙ୍କୁ ବନ୍ଦୀକରି ନେବା ବେଳେ ତାଙ୍କର ଜଣେ ରାଣୀ, ରୋହିଣୀ ଗୋପରେ ନନ୍ଦଙ୍କ ଆଶ୍ରୟରେ ଥିଲେ । ଦେବୀ ଦୁର୍ଗା, ନାରାୟଣଙ୍କ ନିର୍ଦ୍ଦେଶରେ ଦେବକୀଙ୍କ ଷଷ୍ଠ ଗର୍ଭର ସନ୍ତାନଙ୍କୁ ଆକର୍ଷଣ କରି ନେଇ ରୋହିଣୀଙ୍କ ଗର୍ଭରେ ସ୍ଥାପନ କରିଥିଲେ । ସେହି ସନ୍ତାନ ସଂକର୍ଷଣ ବଳରାମ ।

ଭାଗବତ ଦଶମ ସ୍କନ୍ଧରେ ବଳରାମଙ୍କ ଜନ୍ମ ଉପାଖ୍ୟାନ ବର୍ଣ୍ଣିତ ହୋଇଛି । ଏହାଛଡ଼ା ବଳଭଦ୍ର ଜନ୍ମ ନେଇ ଖଣ୍ଡିଏ ବ୍ରତ କଥା ଅଛି । ବଳଭଦ୍ର ଜନ୍ମ ପୂଜାବିଧି ଓ ବ୍ରତ ପାଳନ ପ୍ରସଙ୍ଗରେ ଏଥିରେ ଉଲ୍ଲେଖ ଅଛି - 'ପୂଜା କଲା ଉତ୍ତାରେ ଗୀତ ବିନୋଦ ନୃତ୍ୟ ଏମାନ କରିବ । ଦୁନ୍ଦୁଭି ଶବଦ, ଶଙ୍ଖଧ୍ୱନି ଏମାନ କରିବ । ଉଜାଗର ହୋଇ ଜାଗର ପାଳିବ ।'

ଶ୍ରାବଣ ପୂର୍ଣ୍ଣିମା ସହିତ 'ଉପାକର୍ମ ଗୋଟିଏ ପ୍ରାଚୀନ ପରମ୍ପରା ଭାବରେ ବୈଦିକ ଯୁଗରୁ ଚଳି ଆସୁଥିଲା । ବିଦ୍ୟାକୁ ଶ୍ରବଣ, ଅବବୋଧ, ଶୁଦ୍ଧ ଉଚ୍ଚାରଣ କରିବା ସହିତ ସ୍ମରଣ ରଖି ବ୍ୟବହାର କରିବାର ତାଲିମ୍ ଭାରତୀୟ ପରମ୍ପରାର ଗୋଟିଏ ସୁପ୍ରାଚୀନ ପଦ୍ଧତି । ଲିପି ଉଦ୍‌ଭବ ପୂର୍ବରୁ ଏହିପରି ମୌଖିକ ପରମ୍ପରାରେ ଜ୍ଞାନର ପ୍ରସାର ଓ ସଂରକ୍ଷଣ ହେଉଥିଲା । ଚନ୍ଦ୍ର ମନର ଦେବତା । ସେ ଶ୍ରବଣା ନକ୍ଷତ୍ରରେ ଅବସ୍ଥାନ କରିବା କାଳରେ ଯେଉଁ ପୂର୍ଣ୍ଣିମା ହୁଏ, ସେହି ଶ୍ରାବଣ ପୂର୍ଣ୍ଣିମା ତିଥିରେ ଉପାକର୍ମ ବିଧାନ ପ୍ରଣିଧାନଯୋଗ୍ୟ । ଯାଜ୍ଞବଲ୍କ୍ୟ ସ୍ମୃତି (ଆଚାର ଅଧ୍ୟାୟ), ଅଶ୍ୱଳାୟନ ଗୃହ୍ୟସୂତ୍ର, ମନୁସ୍ମୃତି ଆଦିରେ ଉପାକର୍ମ ବିଧାନ ସଂପର୍କରେ ଉଲ୍ଲେଖ ଅଛି । ବେଦାଧ୍ୟୟନ ଆରମ୍ଭ ସମୟକୁ ଉପାକର୍ମ କୁହାଯାଏ । ଉପାକର୍ମ

ଦିନଠାରୁ ସାଢ଼େ ଚାରିମାସ ପର୍ଯ୍ୟନ୍ତ ପ୍ରତ୍ୟେକ ଦିନ ବେଦ ଅଧ୍ୟୟନ କରି ପୌଷ ବା ମାଘ ମାସରେ ରୋହିଣୀ ନକ୍ଷତ୍ରରେ ଜଳତଟକୁ ଯାଇ ଏହାର ଉତ୍ସର୍ଜନ ଉତ୍ସବ କରାଯାଏ । ଏଥିପାଇଁ କାୟ-ମନ-ବାକ୍ୟରେ ପବିତ୍ର ଓ ଶୁଦ୍ଧ ରହିବା ପାଇଁ ପଞ୍ଚଗବ୍ୟ ପ୍ରାସନ କରାଯାଏ । କାଳକ୍ରମେ ଉପାକର୍ମ ପାଳନ ବିଧି ନିଷ୍ପ୍ରଭ ହୋଇ ଆସିଲାଣି । ଇଦାନୀଂ ଏହି ଦିନକୁ 'ସଂସ୍କୃତ ଦିବସ' ଭାବରେ ପାଳନ କରାଯାଉଛି । ଏହା ପାରମ୍ପରିକ ପର୍ବର ନବୀକରଣ ।

ବର୍ଷକରେ ୪୨ ଦିନ ହଳ ନିଷେଧ । ତା' ଭିତରୁ ଶ୍ରାବଣ ପୂର୍ଣ୍ଣିମା ଗୋଟିଏ । ୧୯୯୮-୯୯ ମସିହାରେ ରାଷ୍ଟ୍ରୀୟ ପଞ୍ଜାଙ୍ଗରେ ଅଗଷ୍ଟ ୮ ତାରିଖ ଶ୍ରାବଣ ପୂର୍ଣ୍ଣିମାର ଧର୍ମକୃତ୍ୟ, ଉତ୍ସବ ଓ ଅନ୍ୟାନ୍ୟ ଗୁରୁତ୍ୱ ସଂପର୍କରେ ସୂଚନା ଦେଇ ଲେଖାଯାଇଛି- " ଝୁଲଣ ଯାତ୍ରା ସମାପନ (ଅପରାହ୍ଣ), ଅମରନାଥ ଯାତ୍ରା (ସୋଲୋନେ), ରକ୍ଷା ବନ୍ଧନ (ଦିଲ୍ଲୀ), ଅବନୀ ଅଭିତମ୍ (ଦାକ୍ଷିଣାତ୍ୟେ), ଗାୟତ୍ରୀ ଜପମ୍, ଋକ୍ ଉପାକର୍ମ, ରକ୍ଷା ବନ୍ଧନ, ଶ୍ରାବଣୀ ପୂର୍ଣ୍ଣିମା, ହଳ ନିଷେଧ, ଗହ୍ମା ପୂର୍ଣ୍ଣିମା, ଶ୍ରୀମନ୍ଦିରରେ ଗହ୍ମାପର୍ବ ବିଧି, ସଂସ୍କୃତ ଦିବସ, ମେହେର ଜୟନ୍ତୀ, କବି ମଞ୍ଜୁଳ କୃଷ୍ଣ ପ୍ରସାଦଙ୍କ ତିରୋଧାନ, ଶ୍ରୀ ବଳଦେବଙ୍କ ଜନ୍ମ ଉତ୍ସବ, ଶରଣ ।" ଏଥିରୁ କେତେକ ଧର୍ମ କୃତ୍ୟ, ହଳ ନିଷେଧ ଏବଂ ଶରଣ (ତୃଣ. କାଷ୍ଠାଦି ଛେଦନ ଓ ଗୃହ ନିର୍ମାଣ, ଗୃହାଚ୍ଛାଦନ ଆଦି କାର୍ଯ୍ୟ ନିଷେଧ) ପରି କୃଷିଭିତ୍ତିକ ସାମାଜିକ ଚଳଣିର ସୂଚନା ଅଛି, ତା' ସହିତ ସାରସ୍ୱତ ଦିବସ ଭାବରେ ସ୍ୱଭାବ କବି ଗଙ୍ଗାଧର ମେହେରେଙ୍କ ଜୟନ୍ତୀ ଓ କବି ମଞ୍ଜୁଳ କୃଷ୍ଣ ପ୍ରସାଦ ବସୁଙ୍କ ତିରୋଧାନ ଦିବସ ଭାବରେ ଏହି ଦିନଟିର ମହତ୍ତ୍ୱ ସମ୍ପର୍କରେ ସୂଚନା ଦିଆ ଯାଇଛି ।

ଶ୍ରାବଣ ପୂର୍ଣ୍ଣିମା ପରେ ଶରତ ଋତୁ ଆରମ୍ଭ ହୁଏ । ଏହି ଋତୁ ପ୍ରବେଶର ସୂଚନା କିପରି ଶ୍ରାବଣ ପୂର୍ଣ୍ଣିମାଠାରୁ ମିଳିଥାଏ, ସେ ବିଷୟରେ ଶଶୀ ଭୂଷଣ ରାୟ ବର୍ଣ୍ଣନା କରିଛନ୍ତି 'ପ୍ରଭାତର ସମୁଜ୍ଜ୍ୱଳ ଆଲୋକ, ନୀଳ ଆକାଶରେ ଅଭ୍ରପ୍ରାୟ ଶୁଭ୍ରମେଘ ଖଣ୍ଡର ସୁନ୍ଦର ସଞ୍ଚରଣ, ସତେଜ ବୃକ୍ଷ ପତ୍ରର ମୃଦୁ କମ୍ପନ ଏବଂ କ୍ଷେତ୍ର ସମୂହରେ ବିହଙ୍ଗ କୁଳର ସହର୍ଷ କାକଳୀ ଶରଦାଗମର ଉଦ୍‌ବୋଧନ କରୁଅଛି ।"

-୦-

# ସେଇ ଜହ୍ନ ସେଇ କଥା

ଶରତ ଋତୁର ଜହ୍ନ ଅପୂର୍ବ ଶୋଭା ଓ ଉଜ୍ଜ୍ୱଳତା ମଣ୍ଡିତ ହୋଇ ନିର୍ମେଘ ନିର୍ମଳ ଆକାଶରେ ଉଭା ହୁଏ । ଏକଦା ଭଞ୍ଜୀୟ କାବ୍ୟନାୟକ ସେଇ ଚନ୍ଦ୍ରଙ୍କୁ ଦେଖି ପ୍ରେମ ବିଭୋର ହୋଇ ଦୂରରେ ଥିବା ନାୟିକା  ପାଖକୁ ପ୍ରେମପତ୍ର ଲେଖିଥିଲା । କବି ବର୍ଣ୍ଣନା କରିଛନ୍ତି -

ନିର୍ମଳ ଚନ୍ଦ୍ରମଣ୍ଡଳ    ଶରଦେ ବିରାଜି
ଦିଶେ ଯଥା ଦର୍ପକ  ଦର୍ପଣେ ଅଛି ମାଜି
ଦେଖି କୁମର କାତର ଲେଖି ଆରମ୍ଭିଲା ବସି ବିନୟ ପତର......

ସେଇ ଜହ୍ନ ପୁଣି ଆସେ ଓଡ଼ିଆ ଶିଶୁ - ସମ୍ବଳା ଗୀତ (Nursery rhyme)ରେ  ମାମୁଁ ଭାବରେ । ଛୋଟ ଛୁଆଟିକୁ ଜହ୍ନକୁ ଦେଖାଇ ମାମୁଁ ବୋଲି ଚିହ୍ନାଇ ଦିଆଯାଏ ଓ ଗୀତ ବୋଲା ହୁଏ-

ଆ ଜହ୍ନ ମାମୁଁ ଶରଦ ଶଶି
ମୋ କାହ୍ନୁ ହାତରେ ପଡ଼ରେ ଖସି
ଆଉ ପିଲା ତୋତେ କରିବେ ଧୂଳି
ମୋ କାହ୍ନୁ ରଖିଛି ସୁନା ଖଟୁଲି......

କ୍ଷୀର ସମୁଦ୍ରରୁ ଲକ୍ଷ୍ମୀ ବାହାରିଥିଲେ ବୋଲି ତାଙ୍କର ଗୋଟିଏ ନାଁ- କ୍ଷୀରାବ୍ଧି ତନୟା । ପୁଣି ତାଙ୍କର ଆଉ ଗୋଟିଏ ନାଁ ଲୋକମାତା । ଚନ୍ଦ୍ର ବି କ୍ଷୀରାବ୍ଧି ମନ୍ଥନବେଳେ  ବାହାରିଥିଲେ । ତେଣୁ ସେ ଲୋକମାତା ଲକ୍ଷ୍ମୀଙ୍କର ଭାଇ ଓ  ସମସ୍ତଙ୍କର ମାମୁଁ । ଏଇ ହେଲା ପୌରାଣିକ ଉପାଖ୍ୟାନ ଓ ଲୋକ ବିଶ୍ୱାସ ।  ପ୍ରକୃତି ସହିତ ମଣିଷର କି ଅତୁଟ ସଂପର୍କ ଯୋଡ଼ି ଦେଇଛି - ମନୁଷ୍ୟର କଳ୍ପନା !  ମହାଶୂନ୍ୟର ସେଇ ସ୍ନିଗ୍ଧ ଉଜ୍ଜ୍ୱଳ ଜ୍ୟୋତିଷ୍କ ସଂପର୍କରେ କେତେ କଳ୍ପନା କେତେ କାହାଣୀ କେତେ ରସରେ ରସାଣିତ ନ କରିଛି ଜନମାନସକୁ ! ଭାରତର ଗୋଟିଏ ରାଜବଂଶ ନିଜ ନିଜକୁ ଚନ୍ଦ୍ରବଂଶୀ ବା ସୋମବଂଶୀ କ୍ଷତ୍ରୀୟ ବୋଲି ଦାବି କରନ୍ତି । ଚନ୍ଦ୍ର ସେମାନଙ୍କର ଇଷ୍ଟ ଦେବତା ।

ସେମାନେ ତାଙ୍କରିଠାରୁ ସୃଷ୍ଟି ହୋଇ ପୃଥିବୀରେ ରାଜୁତି କରିବାକୁ ଆସିଛନ୍ତି ବୋଲି କୁହାଯାଏ । ମହାକାଶର ଏହି ଜ୍ୟୋତିଷ୍ପ ପୁଣି ବହୁ ଧର୍ମ ଓ ପୁରାଣରେ ଜଣେ ଦେବତା ଭାବରେ କୀର୍ତ୍ତିତ ଓ ପୂଜିତ ହୁଅନ୍ତି । କିନ୍ତୁ ଯଦି ତାଙ୍କ ସହିତ ମଉଳା ସଂପର୍କ ଯୋଡ଼ି ଛୋଟ ଶିଶୁଟିଏ 'ଆ ଜହ୍ନ ମାମୁଁ ଶରଦ ଶଶି' ବୋଲି ଡାକୁଛି ଓ ଶରତ୍‌କାଳୀନ ଚନ୍ଦ୍ରକୁ କଳ୍ପନାର ସୁନା ଖଟୁଲିରେ ବସାଇବା ଲାଗି ହାତ ପାହାନ୍ତାରେ ପାଇଯିବାର ସ୍ୱପ୍ନ ଦେଖୁଛି, ତେବେ ତନୟବନ୍ତ ସାଧବର ଝିଅ ତଅପୋଇଟିର କପାଳରେ ଏତେ ଦୁଃଖ ଲେଖାହେଲା କାହିଁକି ? ଭାଦ୍ରବ ମାସ ରବିବାରମାନଙ୍କରେ ଖୁଦୁରୁକୁଣୀ ବା ତଅପୋଇ ଓଷା କଥା କାନରେ ପଡ଼ିଲେ ପ୍ରାଚୀନ ଓଡ଼ିଶାର ଅର୍ଥନୈତିକ ସମୃଦ୍ଧିର ଚିତ୍ର କଳ୍ପନା କଲାବେଳେ କେବେ ଅବା ହେମନ୍ତ ଋତୁର ଶିଶିରସିକ୍ତ କାର୍ତ୍ତିକ ପୂର୍ଣ୍ଣିମା ତିଥିରେ ବୋଇତ ଭସାଣି ଦେଖିବା ବେଳେ ସାଧବ କୁଳର ବୋଇତ ବଣିଜ କଥା ଭାବୁ ଭାବୁ ତଅପୋଇ ମନେପଡ଼ିଯାଏ ଓ ଏଇ ପ୍ରଶ୍ନଟି ମନକୁ ସ୍ପର୍ଶ କରେ ।

ଆମ ଲୋକ କଥା (Folktale) ଓ ପୁରା-କଥା ବା ପୁରାଣ କଥା ବା ଅତିକଥା (Myth)ରେ ସ୍ୱର୍ଗ ଓ ପାତାଳ ସହିତ ମର୍ତ୍ତ୍ୟର, ଅତୀତ ସହିତ ବର୍ତ୍ତମାନର ଓ ଭବିଷ୍ୟତ ସହିତ ବର୍ତ୍ତମାନର ସମ୍ବନ୍ଧ ଯୋଡୁଥିବା ଏକ ବିଚିତ୍ର ସୂତ୍ରର ବିଦ୍ୟମାନତା ଲକ୍ଷ୍ୟ କରାଯାଏ । ତନୟବନ୍ତ ସାଧବର ଝିଅ ତଅପୋଇ ଆଖ୍ୟାନ ଓ ଉପାଖ୍ୟାନରେ ବି ସେଇ ସୂତ୍ର ସମସ୍ତ ଲୀଳାଖେଳା ଘଟାଇଛି ।

ସାଗର-ମନ୍ଥନରୁ ଲକ୍ଷ୍ମୀ, ଚନ୍ଦ୍ର, ଅମୃତ ଇତ୍ୟାଦି ସହିତ ଅପ୍ସରାମାନେ ମଧ୍ୟ ବାହାରିଥିଲେ । ଏହି ଅପ୍ସରାମାନେ ସ୍ୱର୍ଗରେ ଗନ୍ଧର୍ବମାନଙ୍କର ପତ୍ନୀ ଓ ସ୍ୱର୍ଗପୁରର ଶୋଭା । ସେମାନେ ସ୍ୱର୍ଗରେ ଥାନ୍ତି ଓ ମର୍ତ୍ତ୍ୟକୁ ମନଖୁସିରେ କିମ୍ବା କୌଣସି କାର୍ଯ୍ୟ ସାଧନ ପାଇଁ ଆସନ୍ତି । କିନ୍ତୁ ଚିତ୍ରସେନ ଗନ୍ଧର୍ବର ପତ୍ନୀ କୌଣସି କାରଣରୁ ଅଭିଶାପ ପାଇଲେ ମର୍ତ୍ତ୍ୟରେ ଜନ୍ମ ହେବେ ଓ ସେଠାରେ ଷୋଳବର୍ଷ କଟାଇବେ । ସ୍ୱର୍ଗପୁରୀରୁ ଷୋଡ଼ଶ ବର୍ଷର ନିର୍ବାସନ ଦଣ୍ଡ ପାଇ ଜଣେ ଅପ୍ସରା ମର୍ତ୍ତ୍ୟରେ ମାନବୀ ଭାବରେ ଜନ୍ମିବେ ଓ ବଢ଼ିବେ । ଭାଗ୍ୟର କି ବିଚିତ୍ର ବିଡ଼ମ୍ବନା ! କିନ୍ତୁ ତାହା ହିଁ ଘଟିଲା ।

ମର୍ତ୍ତ୍ୟ ବା ପୃଥିବୀକୁ ଆସିଲେ ତାର ଭୂଗୋଳ ଓ ଇତିହାସ ବା ସ୍ଥାନକାଳର ସଂପର୍କ ତ ଆସିଯିବ, ପୁଣି ତା ସହିତ ପାତ୍ର ଓ ତା'ର ପରିବାର ବି ଆସିବ ।

ଅମର ଲୋକର ସେଇ ଅପ୍ସରା ଅଭିଶାପ ଫଳରେ ଜନ୍ମ ହୋଇଛନ୍ତି ମର-ଲୋକର ଅତି ସମୃଦ୍ଧିଶାଳୀ ଜମ୍ବୁଦ୍ୱୀପ ନିକଟବର୍ତ୍ତୀ ଅନ୍ୟ ଏକ ସମୃଦ୍ଧିଶାଳୀ ସୁଶାସିତ ଦ୍ୱୀପର ଧନବନ୍ତ ସାଧବ ତନୟବନ୍ତଙ୍କ ପରିବାରରେ । ପ୍ରାଚୀନ ଓ ମଧ୍ୟକାଳୀନ ଭାରତୀୟ ସମାଜରେ ଗହଳିଆ କୋଠ ପରିବାର ଥିଲା । ସେଇ ପରିବାରରେ ସମସ୍ତଙ୍କ ଆଦର ଯତ୍ନ ପାଉଥିଲା ପରିବାରର କନିଷ୍ଠତମ ଶିଶୁଟି । ତନୟବନ୍ତ ସାଧବଙ୍କର ସାତପୁଅ, ସାତବୋହୂ । ସାଧବାଣୀଙ୍କର ଏହି କନିଷ୍ଠତମ କନ୍ୟା ସନ୍ତାନର ନାଁ ଦିଆହେଲା - ତଅପୋଇ । ସେ ହେଲା ସମସ୍ତଙ୍କର ଆଦର ଯତ୍ନର ସ୍ୱାଭାବିକ ଅଧିକାରିଣୀ । ଧନର ପ୍ରାଚୁର୍ଯ୍ୟ ହେତୁ ତାର ସେବାକାରୀ ଥିଲେ ଅନେକ ଓ ତା' ପାଇଁ ନାନା ଦ୍ରବ୍ୟ ଭରପୂର ଥିଲା । ସେ ନଗରରେ ଅନ୍ୟ ଅନେକ ସାଧବ ବି ଥିଲେ । ପୁଣି ଥିଲେ ରଜା, ମଂତ୍ରୀ ଓ ଅନ୍ୟାନ୍ୟ ସମାନ ସ୍ତରର ଲୋକ, ଯେଉଁମାନଙ୍କ ପିଲାମାନଙ୍କ ସହିତ ତଅପୋଇ ଖେଳୁଥିଲା । ତା'ର ବୟସ ବଢ଼ିବା ସହିତ, ସେ ତାର ନିଜ ପାରିବାରିକ, ସାମାଜିକ ଜୀବନ ଓ ପରିବେଶ ସହିତ କ୍ରମେ କ୍ରମେ ସାମିଲ ହେଉଥିଲା ।

ଦିନେ ପାଞ୍ଚବର୍ଷ ବୟସର ଝିଅ ତଅପୋଇ ମନ୍ତ୍ରୀଙ୍କର ଝିଅ ଓ ଅନ୍ୟ ସାଙ୍ଗ ସାଥୀଙ୍କ ସହିତ ଦାଣ୍ଡରେ ଧୂଳିଘର କରି ଖେଳୁଥିଲା । ବାଉଁଶର ଛୋଟ ଛୋଟ କୁଲେଇ, ଟୋକେଇ ଥିଲା ତା ଖେଳର ଉପକରଣ । ଏହି ସମୟରେ ଜଣେ ବିଧବା ବ୍ରାହ୍ମଣୀ ପହଞ୍ଚିଲା । ସେ ତଅପୋଇକୁ କହିଲା- ତୁ ଏତେ ବଡ଼ ସାଧବର ଗୋଟିଏ ବୋଲି ଝିଅ ହୋଇ ସାମାନ୍ୟ ବାଉଁଶ ତିଆରି କୁଲେଇ ଟୋକେଇରେ ଖେଳୁଛୁ । ମୁଁ ତୋଅପରି ହୋଇଥିଲେ ବାପ ମାଆଙ୍କ ପାଖରେ ଅଳି କରି ସୁନାର ଚାନ୍ଦ ଗଢ଼ାଇ ଖେଳୁଥାଆନ୍ତି । ସନ୍ଧ୍ୟା ହେଲା । ଖେଳ ସରିଲା । ତଅପୋଇ ଘରକୁ ଫେରି ସୁନାର ଚାନ୍ଦ ପାଇଁ ଅଡ଼ି ବସିଲା ।

ସୁନାର ଚାନ୍ଦ ଗଢ଼ାଇବା ଥିଲା ତନୟବନ୍ତଙ୍କ ପାଇଁ ସାମାନ୍ୟ କଥା । ସେ ତଅପୋଇକୁ ବୁଝାଇ ସୁଝାଇ ପ୍ରତିଶ୍ରୁତି ଦେଲେ - ତିନି ଦିନ ଭିତରେ ତୋ ପାଇଁ ସୁବର୍ଣ୍ଣର ଚାନ୍ଦ ଗଢ଼ାଇ ଦେବି ।' ତା'ପର ଦିନଠାରୁ ଚାନ୍ଦ ଗଢ଼ା କାମ ଆରମ୍ଭ ହେଲା । ଚାରିପଟେ ହୀରାର ତାରକା ଖଚିତ ସୁବର୍ଣ୍ଣର ଚାନ୍ଦ ନିର୍ମାଣ ଚାଲିଥିବା ବେଳେ, ଚାନ୍ଦ ଅଧା ହୋଇ ଆସିବା ବେଳକୁ ସାଧବ ତନୟବନ୍ତ ମରଣ ବରଣ କଲେ । ତାହା ପୂର୍ଣ୍ଣ ହେବାବେଳକୁ ସାଧବାଣୀ ମଧ୍ୟ ଇହଲୀଳା ସାଙ୍ଗ କଲେ । ପନ୍ଦର ଦିନ ଭିତରେ ଚାନ୍ଦ ଗଢ଼ା ତ ସଂପୂର୍ଣ୍ଣ ହେଲା । କିନ୍ତୁ ତଅପୋଇ ଓ ତା'ର

ଭାଇମାନେ ହରାଇଲେ ସେମାନଙ୍କର ବାପା ଓ ମାଆଙ୍କୁ । କିଛିଦିନ ଗତେ ବାଣିଜ୍ୟ ଦ୍ରବ୍ୟ ସରିଲା । ବୋଇତ ଯାତ୍ରା ପାଇଁ ଅନୁକୂଳ ବାୟୁ ବହିଲା । ସାଧବ ସାତ ଭାଇ ସେମାନଙ୍କ ସ୍ତ୍ରୀମାନଙ୍କ ଦାୟିତ୍ୱରେ ସ୍ନେହର ଭଉଣୀ ତଅପୋଇକୁ ଛାଡ଼ିଦେଇ ବୋଇତମାନ ଧରି ବଣିଜ କରିଗଲେ ଦୂର ଦେଶକୁ ।

ସ୍ୱାମୀମାନେ କାନେ କାନେ କହି ଯାଇଥିଲେ - ତଅପୋଇର ଯେମିତି ସାମାନ୍ୟତମ ଅସୁବିଧା ନହୁଏ କି ସେ ବାପା ମାଆଙ୍କୁ ଝୁରି ହେବାର ଅବକାଶ ନପାଏ । ଭାଉଜମାନେ ମଧ୍ୟ ତଅପୋଇକୁ ବଡ଼ ଆଦର ଯତ୍ନରେ ଚଳାଉଥିଲେ । କିନ୍ତୁ ପୁଣି ସେଇ ବିଧବା ବ୍ରାହ୍ମଣୀ ବେଳକାଳ ଦେଖି ପହଞ୍ଚିଲା । ସେ ତଅପୋଇ ବିରୁଦ୍ଧରେ ସେମାନଙ୍କ ମନରେ ଏପରି ଆଶଙ୍କା ଓ ଅସହିଷ୍ଣୁତା ଭାବ ସୃଷ୍ଟି କରିଦେଲା ଯେ, ସାନବୋହୂ ଛଡ଼ା ସମସ୍ତେ ସେଥିରେ ଭଳି ଗଲେ ଓ ତାର ପ୍ରରୋଚନାରେ ପଡ଼ି ତଅପୋଇକୁ ମରଣ ମୁହଁକୁ ଠେଲିଦେଲା ଭଳି ବ୍ୟବସ୍ଥା କଲେ । ରହିବା, ଖାଇବା, ପିନ୍ଧିବା ଓ ଚଳିବା ଆଦି ସବୁ ଦିଗରୁ ତାକୁ କଷ୍ଟ ଓ ନିର୍ଯ୍ୟାତନା ଦେଲେ । ସେ ଢ଼ିଙ୍କିଶାଳରେ ରହି ବଣରେ ଛେଳି ଚରାଇବା କାମରେ ରହିଲା । ଛିଣ୍ଡା କନା ପିନ୍ଧି, ତେଲ ଅଭାବରେ ନୁଖୁରା ଗାଧୁଆ ପାଧୁଆ କରି, କେବେ ଅଖାଦ୍ୟ, କେବେ କୁଖାଦ୍ୟ ଖାଇ, କେବେ ଅବା ନିରାହାରରେ କାଳ କଟାଇଲା । ବଣ ପାହାଡ଼ରେ ବୁଲି ବୁଲି ଦିନସାରା ଛେଳି ଚରାଇବାକୁ ହେଲା । ସେଇ ଛେଳି ପଲରେ ଗୋଟାଏ ଅମାନିଆ ଛେଳି ଥାଏ - ଘରମଣି । ସେ ବଡ଼ ବୋହୂର ଛେଳି । କୁଆଡ଼େ ନାଇଁ କୁଆଡ଼େ ପଳାଏ । ତାକୁ ସମ୍ଭାଳିବା କଷ୍ଟ । କିନ୍ତୁ ବଡ଼ବୋହୂର ତାଗିଦ୍ - ଘରମଣି ଯଦି ହଜିବ, ତେବେ ତଅପୋଇର ନାକ କାଟି, ମୁହଁରେ ଚୂନକାଳି ଲଗାଇ, ତାକୁ ଘରୁ ବିଦାକରି ଦିଆଯିବ । ତାକୁ ବଣରେ ଛେଳି ଚରାଇବାର ଅସଲ ଉଦ୍ଦେଶ୍ୟ ଥିଲା ସେଠାରେ ତାକୁ ତା' ଭାଇମାନେ ଫେରିବା ପୂର୍ବରୁ ବଣରେ ବାଘ ଭାଲୁଙ୍କ ମୁହଁରେ ମରାଇଦେବା । ବିଧବା ବ୍ରାହ୍ମଣୀର ତାହା ହିଁ ଥିଲା ପରାମର୍ଶ ଓ ଯୋଜନା । ତଅପୋଇର ଭାଇମାନେ ବିଦେଶରେ ଦଶବର୍ଷ ରହିଗଲେ । ସେ ଏହିପରି ଦଶବର୍ଷ ଦୁଃଖ କଷ୍ଟ ଭୋଗୁଥିଲା ।

ସେ ବର୍ଷ ଭାଦ୍ରବ ମାସ । ତଅପୋଇ ବଣରେ ଛେଳି ଚରାଇବା ବେଳେ ମେଘ ଉଠାଇଲା । ଅନ୍ଧାର ମାଡ଼ି ଆସିଲା । ସେ ଛେଳିମାନଙ୍କୁ ଧରି ଘରକୁ ଫେରିଲା । କିନ୍ତୁ ଘରମଣି ବଣରେ ହଜିଗଲା । ବଡ଼ବୋହୂ ସବୁଦିନ ଗୁହାଳରେ ଛେଳିମାନଙ୍କୁ ଗଣେ । ସେଦିନ ଘରମଣିକୁ ନଦେଖି ତଅପୋଇକୁ ମାଡ଼ଗାଳି

ଦେଇ ତାକୁ ଖୋଜି ଆଣିବାକୁ ପଠାଇଲା । ନ ଆଣିଲେ ତାର ନାକ କାଟିଦେବ ଓ ଚୂନକାଳି ବୋଳି ଘରୁ ତଡ଼ିଦେବ ବୋଲି ଧମକ ଦେଲା । ତଅପୋଇ ସେ ଅନ୍ଧାର ଓ ବର୍ଷା ରାତିରେ ଘନଘୋର ଦୁର୍ଗମ ବନସ୍ତରେ ଘରମଣିକୁ ଖୋଜି ଖୋଜି ବୁଲିବାବେଳେ କେତେକ ଝିଅ ବଣ ଭିତରେ ଗୋଟିଏ ସ୍ଥାନରେ ଏକାଠି ବସି ଓଷା ପୂଜୁଥିବାର ଦେଖିଲା । ସେମାନଙ୍କଠାରୁ ବୁଝିଲା ଯେ, ତାହା ଖୁଦୁରୁକୁଣୀ ଓଷା । ମଙ୍ଗଳା ସେଇ ଓଷାର ଦେବତା । ସେଇ ଓଷା ପୂଜି ମାନସିକ କଲେ ମନସ୍କାମନା ପୂରଣ ହୁଏ । ମଙ୍ଗଳା ଠାକୁରାଣୀ ବଡ଼ ପ୍ରତ୍ୟକ୍ଷ ଦେବତା । ସେ ବୁଡ଼ିବା ଭେଳା ବି ରକ୍ଷା କରନ୍ତି । ତଅପୋଇ ସେମାନଙ୍କ ସହିତ ଓଷା ପୂଜି ଘରମଣିକୁ ପାଇବା ଲାଗି ମାନସିକ ଜଣାଇଲା । ସେଇଦିନ ଓଷା ପୂଜିସାରି ଫେରିବା ବାଟର ଘରମଣିକୁ ପାଇଲା । ଆଉ ଦିନକର କଥା, ଭାଦ୍ରବ ଦ୍ୱିତୀୟ ରବିବାର ହେବାକୁ ଆଉ କିଛି ଦିନ ଥାଏ । ସେଦିନ ସେ ଭାଇମାନଙ୍କ ବିଷୟରେ ଅସାର ସ୍ୱପ୍ନ ଦେଖିଲା । ସେମାନେ ସର୍ବଶୁଭରେ ଶୀଘ୍ର ଫେରିଆସନ୍ତୁ ବୋଲି ମାନସିକ କରି ତହିଁଆର ପାଳି ଓଷା ପୂଜିଲା । ଢ଼ିଙ୍କିଶାଳରେ ଥାଏ ତ, କ'ଣ ବା ପାଇବ ! ଖୁଦ କୁଣ୍ଡା କିଛି ସଂଗ୍ରହ କରି, ସେଥିରେ ଖୁଦ ଚାଉଳ ପୂର ଦେଇ ପିଠା କଲା । ଏମିତି ପ୍ରତି ରବିବାର ପାଳି ଓଷା ପୂଜିଲା । ସାଙ୍ଗ ଓଷେଇତିମାନଙ୍କ ଠାରୁ ଫଳ ଫୁଲରି ପିଠାମାନ ମାଗି ପଞ୍ଚମ ପାଳି ଓଷା ପୂଜା କଲା । ମଙ୍ଗଳା ଠାକୁରାଣୀଙ୍କ ଖୁଦୁରୁକୁଣୀ ଓଷାର ଅପାର ମହିମା ପ୍ରମାଣିତ ହେଲା । ତାର ଭାଇମାନେ ବଣିଜ ସାରି ଫେରି ଆସିଲେ ଓ ସେମାନଙ୍କ ବୋଇତ ରାଜ୍ୟରେ ଲାଗିଲା । କିନ୍ତୁ ସେମାନେ ସେ କାଳର ବିଧି ଅନୁସାରେ ବୋଇତ ବନ୍ଧାପନା କରିବା ପାଇଁ ଘରକୁ ଖବର ପଠାଇବା କଥା । ତା' ପୂର୍ବରୁ ପ୍ରଥମେ ତଅପୋଇକୁ ଗହନ ବନସ୍ତରେ ଛିଣ୍ଡାକନା ପିନ୍ଧି ନିରିମାଖି ଅବସ୍ଥାରେ ବସି କାନ୍ଦୁ ଥିବାର ଦେଖିଲେ । ତା'ଠାରୁ ସେମାନେ ସମସ୍ତ ଘଟଣା ବୁଝିଲେ । ବିଧି ଅନୁସାରେ ବୋଇତ ବନ୍ଧାଣ ତ ହେଲା, କିନ୍ତୁ ସେହି ଅବସରରେ ସାନବୋହୂ ନୀଳେନ୍ଦି ବ୍ୟତୀତ ଅନ୍ୟ ଛଅ ଜଣ ଯାକ ତଅପୋଇ ହାତରେ ଦଣ୍ଡ ପାଇଲେ । ଭାଇମାନଙ୍କ ନିର୍ଦ୍ଦେଶରେ ତଅପୋଇ ସେମାନଙ୍କର ନାକ କାଟିଦେଲା । ସେମାନେ ଲାଜ ଓ ଅପମାନରେ ବଣକୁ ପଳାଇଲେ ।

ବାପା ମା' ଗଢ଼ାଇଥିବା ହୀରାର ତାରକା ବେଷ୍ଟିତ ସୁନାର ଚାନ୍ଦ ଘରେ ଥାଏ । ତାହା ଗଢ଼ା ହେବାବେଳେ ତଅପୋଇର ବୟସ ହୋଇଥିଲା ପାଞ୍ଚ ବର୍ଷ ।

ଏ ଭିତରେ ଦଶବର୍ଷ ବିତିଗଲାଣି । ତଅପୋଇ ଏବେ ବିବାହଯୋଗ୍ୟା । ଜଣେ ବିଭବଶାଳୀ ସାଧବଙ୍କର ସୁଯୋଗ୍ୟ ପୁତ୍ର ସହିତ ତାର ବିବାହ ସ୍ଥିର ହେଲା । ଶୁଭ ଲଗ୍ନରେ ମହାଆଡ଼ମ୍ବରରେ ବିବାହ ଉତ୍ସବ ଯଥାବିଧି ସମ୍ପନ୍ନ ହେଲା । ବରକନ୍ୟା ଉପଯୁକ୍ତ ମର୍ଯ୍ୟାଦାର ସହିତ ବିଦା ହେଲେ । ତଅପୋଇ ଗଜଦନ୍ତ ଦୋଳାରେ ବସିଲା । ସେଥିରେ ସେହି ହୀରା ଖଚିତ ସୁବର୍ଣ୍ଣ ଚାନ୍ଦ ଚାନ୍ଦୁଆ ପରି ଟଣାଗଲା । ସେ ଶାଶୁଘରକୁ ଗଲା । ସେଠାରେ ଚଉଠି, ସପ୍ତମଙ୍ଗଳା ବିଧି ସରିଲା । ଅଷ୍ଟମଙ୍ଗଳା ଦିନ ବାପଘର ମୁହଁ ଦେଖିବାକୁ ଭାଇମାନଙ୍କ ସହିତ ଆସିବାର ବ୍ୟବସ୍ଥା ହେଲା । ସେତେବେଳେକୁ ତଅପୋଇକୁ ଷୋଳବର୍ଷ ପୂରି ଆସୁଥାଏ ।

ଚିତ୍ରସେନ ଗନ୍ଧର୍ବ ସ୍ୱର୍ଗରେ ଥାଇ ଦିନ ଗଣୁଥାନ୍ତି । ସେ ଇନ୍ଦ୍ରଙ୍କୁ ଜଣାଇଲେ ତାଙ୍କ ସ୍ତ୍ରୀଙ୍କର ଅଭିଶାପ ମୋଚନର ଦିନ ସରି ଆସିଲାଣି ଏବଂ ଇନ୍ଦ୍ରଙ୍କ ଆଦେଶରେ ପୁଷ୍ପକ ରଥ ଘେନି ମର୍ତ୍ତ୍ୟକୁ ଆସି ସୁଯୋଗର ଅପେକ୍ଷାରେ ରହିଲେ । ତଅପୋଇ ତାର ଭାଇମାନଙ୍କ ସହିତ ଅଷ୍ଟମଙ୍ଗଳା ଉପଲକ୍ଷେ ଫେରୁଥିବା ବାଟରେ ସେ ତାକୁ ପୁଷ୍ପକ ରଥରେ ବସାଇ ଘେନି ଆସିଲେ । ସ୍ୱର୍ଗରେ ପହଞ୍ଚିବା ମାତ୍ରକେ ତଅପୋଇର ମାନବୀ ରୂପ ଯାଇ ଅପ୍ସରା ରୂପ ସ୍ୱତଃ ଫେରି ଆସିଲା ।

ତଅପୋଇର ଭାଇମାନେ ନିଜ ନିଜ ପତ୍ନୀମାନଙ୍କ କଥା ମନେ ପକାଇ ଝୁରି ହେଲେ । ସେମାନେ ନାକ କଟା ହେବା ପରେ ବଣକୁ ପଳାଇଥିଲେ । ସେଠାରେ ଶାର୍ଦ୍ଦୂଳଟିଏ ଦେଖି ସେମାନଙ୍କର ଚେତା ବୁଡ଼ି ଯାଇଥିଲା । ଯୋଗକୁ ବନସ୍ତର ସେହି ସ୍ଥାନରେ ବିରୂପା ଶବର ଶିବଙ୍କର ମର୍କତ ଲିଙ୍ଗ ପୂଜା କରୁଥିଲା । ବିରୂପା ଶବର ଏହି ଅସହାୟାମାନଙ୍କ ପାଇଁ ଶିବଙ୍କୁ ପ୍ରାର୍ଥନା କରିବାରୁ ଶିବଙ୍କ କରୁଣାରୁ ସାଧବ ଛଅ ବୋହୂଙ୍କର ଚେତା ଫେରିଲା ଓ ନାକ କଅଁଳିଲା । ସେମାନେ ନିଜ ନିଜ ବାପ ଘରକୁ ଚାଲିଗଲେ । କାଳକ୍ରମେ ସାଧବ ଘରର ସେହି ବୋହୂମାନେ ତଅପୋଇ ସଂପର୍କରେ ସମସ୍ତ ଘଟଣା ଜାଣିଲେ । ସବୁ ଜାଣିବା ପରେ ସେମାନେ ନିଜ ନିଜ ସ୍ୱାମୀମାନଙ୍କ ପାଖକୁ ଫେରି ଆସିଲେ । ସ୍ୱର୍ଗର ଜଣେ ଅପ୍ସରୀ ତାଙ୍କ ପରିବାରରେ ଜନ୍ମ ହୋଇ ଏତେ ଲୀଳାଖେଳା କରି ଚାଲି ଯାଇଥିବାରୁ ସେହି ସ୍ମୃତି ସେମାନଙ୍କ ମନକୁ ଆବିଷ୍ଟ କଲା । ସେମାନେ ଭାଦ୍ରବ ମାସ ରବିବାରମାନଙ୍କରେ ମଙ୍ଗଳା ଠାକୁରାଣୀଙ୍କ ଖୁଦୁରୁକୁଣୀ ଓଷା ପାଳନ କଲେ ଏବଂ ମଙ୍ଗଳାଙ୍କ ଚିତ୍ର ପାଖରେ ତଅପୋଇର ଚାନ୍ଦ ମାଗିବାଠାରୁ ଛେଳି ଜଗିବା, ଢ଼ିଙ୍କିଶାଳରେ ରହିବା, ବୋଇତର ମଙ୍ଗକୋଣରେ ଛୁରୀଟିଏ ଧରି ବସିଥିବା ଇତ୍ୟାଦି

ଘଟଣାକୁ ଚିତ୍ରରେ ଅଙ୍କନ କରି ମଙ୍ଗଳାଙ୍କ ପୂଜା ସହିତ ତଅପୋଇର ଜୀବନ ଲୀଳା ସ୍ମରଣ କଲେ ।

ମର୍ତ୍ତ୍ୟର ମଣିଷ, ସେ ତା ଉପରେ ସ୍ୱର୍ଗ ଓ ତଳେ ପାତାଳର କଳ୍ପନା କରିଛି । ସୁନା, ହୀରା ପ୍ରଭୃତି ଖଣିଜ ଦ୍ରବ୍ୟ ପାତାଳର ସମ୍ପତ୍ତି । ଚନ୍ଦ୍ର ତାରା ସ୍ୱର୍ଗର ଦେବତା । ଇନ୍ଦ୍ର, ଚନ୍ଦ୍ର ଆଦି ଦେବଦେବୀ ସ୍ୱର୍ଗରେ ରହନ୍ତି । ବିପଦରେ ପଡ଼ି ମଣିଷ ପ୍ରାର୍ଥନା କଲେ ସେମାନେ ତାକୁ ରକ୍ଷା କରନ୍ତି । ପୁଣି ତା' ଉପରେ ରୁଷ୍ଟ ହେଲେ ଦଣ୍ଡ ବି ଦିଅନ୍ତି । ସେଇ ଦେବତାମାନଙ୍କ ଭିତରୁ କେହି କେହି ମଧ୍ୟ ଅଭିଶାପ ପାଇ କିମ୍ବା ଭକ୍ତର ବିକଳ ସହିନପାରି ମର୍ତ୍ତ୍ୟରେ କିଛି ଦିନ ପାଇଁ ଅବତରଣ କରି ମର୍ତ୍ତ୍ୟଲୀଳା କରନ୍ତି । ସ୍ୱର୍ଗର ଅପ୍ସରା ଓ ଗନ୍ଧର୍ବମାନେ ମଧ୍ୟ ଅଭିଶାପ ପାଇଲେ ମର୍ତ୍ତ୍ୟରେ ଜନ୍ମ ହୁଅନ୍ତି । ଏହା ଆଦିମ ମାନବର କଳ୍ପନା ଓ ବିଶ୍ୱାସ । ଏହି ଖୁଦୁରୁକୁଣୀ ବା ତଅପୋଇ ଓଷା କଥାରେ ସ୍ୱର୍ଗର ଅପ୍ସରୀ ମର୍ତ୍ତ୍ୟକୁ ଆସିଛି । ପାତାଳର ସମ୍ପଦ ସୁନା, ହୀରା ଆଦିରେ ସ୍ୱର୍ଗର ଚାନ୍ଦ ଗଢ଼ାଇ ଖେଳିବାକୁ ମାଗିଛି । ତାକୁ ପିତା ହୋଇ ପାଳୁଥିବା ମର୍ତ୍ତ୍ୟର ମଣିଷ ତାହା ଗଢ଼ାଇ ଦେଇଛି । କିନ୍ତୁ ଅପତ୍ୟ ସ୍ନେହର ମାୟା ଓ ଧନର ପ୍ରାଚୁର୍ଯ୍ୟରେ ପଡ଼ି ସ୍ୱର୍ଗର ଦେବତାକୁ ଖେଳଣାଟିଏ କରାଇ ଦେବାର ଅପରାଧରୁ ସେ ନିଜେ କାଳର ହାତରେ ଖେଳଣା ପାଲଟି ମୃତ୍ୟୁବରଣ କରିଛି । ପୁଣି 'ମାୟା' ସବୁ ଭୁଲାଇ ଦିଏ । ସ୍ୱର୍ଗର ଅପ୍ସରା ମର୍ତ୍ତ୍ୟରେ ଜନ୍ମ ଗ୍ରହଣ କରି ନିଜର ପୂର୍ବ ଜୀବନ କଥା ପାଶୋରି ଦେଇ ମର୍ତ୍ତ୍ୟରେ ମଣିଷ ଶିଶୁଟିଏ ପରି ବଢ଼ିଛି ଓ ଚଳିଛି । ପରିସ୍ଥିତିର ସ୍ୱାଭାବିକ ଚାଲରେ ଛନ୍ଦି ହୋଇ ମର୍ତ୍ତ୍ୟ-ଲୀଳା ସମ୍ଭାଳିଛି ।

ସମୁଦ୍ର, ନଦୀ, ହ୍ରଦ ପ୍ରଭୃତି ଜଳଭାଗ ଓ ଦ୍ୱୀପ, ଛୋଟ ବଡ଼ ଭୂଭାଗ ଓ ତହିଁରେ ଜନ୍ମିଥିବା ଉଦ୍ଭିଦ ଓ ଜୀବ ଜଗତ ପ୍ରକୃତିର ସୃଷ୍ଟି । ମଣିଷ ବି ସେଇ ପ୍ରକୃତିର ସୃଷ୍ଟି । କିନ୍ତୁ ସେ ପ୍ରକୃତିକୁ ଉପଯୋଗ କରି ଉନ୍ନତରୁ ଉନ୍ନତତର ଜୀବନ ବଞ୍ଚିବାର ଉପାୟ କରିଛି । ଗଛକାଟି ଭେଳା, ନୌକା ଆଦି କରିଛି; ଜଳ ଭାଗରେ ଯାତାୟତ କରିବାକୁ । ଗୋଟିଏ ଦ୍ୱୀପରୁ ଅନ୍ୟ ଦ୍ୱୀପକୁ ଯାଇ ଯୋଗାଯୋଗ ସ୍ଥାପନ କରିଛି । ଏଠାର ଦ୍ରବ୍ୟ ସେଠାକୁ, ସେଠାରୁ ଦ୍ରବ୍ୟ ଏଠାକୁ କରାଇ ବିଭିନ୍ନ ସ୍ଥାନରେ ବିଚ୍ଛିନ୍ନ ଭାବରେ ବସତି ବସାଇ ରହୁଥିବା ଜନଗୋଷ୍ଠୀର ଆବଶ୍ୟକତା ପୂରଣର ଉପାୟ କରିଛି । ନାରୀ-ପୁରୁଷ ମିଶି ପରିବାର ଗଢ଼ିଛନ୍ତି, ବହୁ ପରିବାର ମିଶି ଗ୍ରାମ, ଜନପଦ, ନଗର, ରାଜ୍ୟ ଗଢ଼ିଛନ୍ତି । ରାଜ୍ୟରେ ସୁଖ ଓ ଶୃଙ୍ଖଳାରେ

ଚଳିବାକୁ ଶାସନ କଳ ଗଢ଼ା ହୋଇଛି । ରାଜା, ମନ୍ତ୍ରୀ କଟୁଆଳ ସହିତ ବ୍ୟବସାୟ ବାଣିଜ୍ୟ ଦ୍ୱାରା ଆବଶ୍ୟକ ଦ୍ରବ୍ୟ ଯୋଗାଇବାକୁ ସାଧବ ଗୋଷ୍ଠୀ ବାହାରିଛନ୍ତି । ପାରିବାରିକ ସଂପର୍କ, ସାମାଜିକ ଜୀବନ, ରାଜ୍ୟ କାରବାର ଆଦି ଜନଗୋଷ୍ଠୀର ସଂହତ ଉଦ୍ୟମରେ ବିକାଶ ଲାଭ କରିଛି । ନାନା ଦେବଦେବୀଙ୍କ ପୂଜାବିଧି ବି ଚଳିଛି ସେଇ ମଣିଷ ଦ୍ୱାରା । ଆମ ସମାଜରେ ଚଳି ଆସୁଥିବା ଓଷାବ୍ରତ କଥା, ଗୁଡ଼ିକ ପୁରାଣ କଥା, ଅତିକଥା ବା ପୁରାକଥାର ଅନ୍ତର୍ଗତ । ଏଗୁଡ଼ିକରେ ପ୍ରକୃତି ଓ ସଂସ୍କୃତିର ଏହି ଲୀଳା ଖେଳା, ଏହି ଛନ୍ଦ ଓ ଛନ୍ଦଣି ଲକ୍ଷ୍ୟ କରାଯାଏ । ଏଗୁଡ଼ିକ ପ୍ରାଚୀନ ହୋଇଥିବାରୁ ପ୍ରାଚୀନ ସମାଜର ଜୀବନଧାରାକୁ କିୟତ୍ ପରିମାଣରେ ଧରି ପାରିଛନ୍ତି । ପୁଣି ଓଷାବ୍ରତ କଥାଗୁଡ଼ିକ ଦେବଦେବୀ କୈନ୍ଦ୍ରିକ । ଖୁଦୁରୁକୁଣୀ ଗୋଟିଏ ପ୍ରାଚୀନ ଓଷା ଏବଂ ଏହାର ଦେବୀ ମଙ୍ଗଳା ମଧ୍ୟ ପ୍ରାଚୀନ ଦେବୀ । ପ୍ରଥମେ ଦେବଦେବୀଙ୍କର ପୂଜା ଚଳୁଥିଲା । ପରେ ତାଙ୍କର ମହିମା କଥନ ପୂଜାର ଅଙ୍ଗ ଭାବରେ ଚଳିଲା । ଏହି ମହିମା କଥନ ହେଉଛି ଓଷାବ୍ରତ କଥା । ପୂଜାବିଧି ସହିତ ଏହା ଜଡ଼ିତ । ତେଣୁ ଏ ଦୁଇଟିକୁ ଘେନି ବିଚାର କଲେ ଓଷା ବା ବ୍ରତର ପ୍ରାଚୀନତା ଧରାପଡ଼େ ।

ସମାଜ ପ୍ରଥମ ଅବସ୍ଥାରେ ମାତୃତାନ୍ତ୍ରିକ ବା ମାତୃକୈନ୍ଦ୍ରିକ ଥିଲା । ସେହି ଅବସ୍ଥାରୁ କେତେକ ମାତୃଦେବୀଙ୍କର ପ୍ରତୀକ ପୂଜା ଚଳି ଆସୁଛି । ମଙ୍ଗଳା ସେହି ମାତୃତାନ୍ତ୍ରିକ ଯୁଗର ଦେବୀ । ତାଙ୍କ ସହିତ କୌଣସି ପୁରୁଷ ଦେବତାଙ୍କର କଳ୍ପନା ସୁଦ୍ଧା କରାଯାଇ ନାହିଁ । ଏବେ ମଧ୍ୟ ଗ୍ରାମମାନଙ୍କରେ ଗଛମୂଳେ ବା ଚାଳିଆ ଘରେ ଯେଉଁ ମଙ୍ଗଳା ପୂଜା ପାଉଛନ୍ତି, ତାହା ଖଣ୍ଡିଏ ଚୁଆ, ସିନ୍ଦୂର ଲେପିତ ପଥର । ତାଙ୍କୁ ମଙ୍ଗଳାଙ୍କର ପ୍ରତୀକ ଭାବରେ ପୂଜା କରାଯାଏ । ଅବଶ୍ୟ କେତେକ ସ୍ଥାନରେ ମଙ୍ଗଳାଙ୍କର ମୂର୍ତ୍ତି ମଧ୍ୟ ଅଛି । ଏହି ମୂର୍ତ୍ତି କଳ୍ପନା ପରବର୍ତ୍ତୀ କାଳର ଘଟଣା । ଏପରି ମଧ୍ୟ ଆଧ୍ୟାତ୍ମିକ ଦୃଷ୍ଟିରୁ ବ୍ରହ୍ମାଙ୍କର ରୂପ ନାହିଁ । 'ସାଧକାନାଂ ହିତାର୍ଥାୟ ବ୍ରହ୍ମଣୋ ରୂପକଳ୍ପନା ।' ପୁଣି ଲକ୍ଷ୍ୟ କଲେ କେତେକ ଓଷାବ୍ରତ କଥାରୁ ଜଣାଯାଏ ମଙ୍ଗଳା ଶାସ୍ତ୍ର ପୁରାଣର ଦେବୀ ନୁହନ୍ତି, ଲୌକିକ ଦେବୀ । ଓଡ଼ିଶାରେ ଚୈତ୍ରମାସରେ ପାଳିତ ହେଉଥିବା ଚଇତି ମଙ୍ଗଳବାର ଓଷା କଥାରେ ଅଛି - ''ଚଇତ ମଙ୍ଗଳାବାର କେହି ନ କରନ୍ତି । ସ୍ୱର୍ଗରେ ନିତାଇ ଧୋବଣୀ କରଇ, ମର୍ତ୍ତ୍ୟରେ ଚଇତି ହାଡ଼ିଆଣୀ କରଇ ।'' ବଙ୍ଗୀୟ ନାରୀ ସମାଜରେ ଚଳୁଥିବା ମଙ୍ଗଳ ଚଣ୍ଡୀ କଥାରେ ମଧ୍ୟ ଅଛି, ଧନପତି ସୌଦାଗରର

ସ୍ତ୍ରୀ ସାଧବାଣୀ ପ୍ରଥମେ ମଙ୍ଗଳ ଚଣ୍ଡୀ ପୂଜା ପ୍ରବର୍ତ୍ତନ କରିଥିଲେ । ସୁତରାଂ ଓଷା ବ୍ରତର ମଙ୍ଗଳା ଲୌକିକ ଦେବୀ । ଓଡ଼ିଶାର ଓଷାବ୍ରତ ଗୁଡ଼ିକରେ ସାଧବାଣୀ ମଙ୍ଗଳା ପୂଜା କରୁଥିବାର ବର୍ଣ୍ଣନା ପ୍ରାୟ ଲକ୍ଷ୍ୟ କରାଯାଏ । କାକଟପୁରଠାରେ ପୂଜା ପାଉଥିବା ମଙ୍ଗଳା (ମୂର୍ତ୍ତି)ଙ୍କୁ ଜଣେ ସାଧବ ସିଂହଳ ଦ୍ୱୀପରୁ ଆଣି ଏଠାରେ ପୂଜା କରୁଥିଲେ ବୋଲି ସ୍ଥାନୀୟ କିମ୍ବଦନ୍ତୀରୁ ଜଣାଯାଏ । କିନ୍ତୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ଏହି ପ୍ରତିମାର ନିର୍ମାଣ କାଳ ଆନୁମାନିକ ନବମ ଶତାବ୍ଦୀ ଏବଂ ଏହା ଗୋଟିଏ ବୌଦ୍ଧ ତାରା ମୂର୍ତ୍ତି ବୋଲି କହନ୍ତି । ତେବେ ସାରଳା ଦାସ (୧୫ଶ ଶତାବ୍ଦୀ)ଙ୍କ ସମୟକୁ ଏହି ମଙ୍ଗଳା ପ୍ରତିଷ୍ଠା ଓ ଖ୍ୟାତି ଲାଭ କରିସାରିଥିଲେ ଏବଂ ଏହା ଗୋଟିଏ ପ୍ରସିଦ୍ଧ ମଙ୍ଗଳା ପୀଠର ମର୍ଯ୍ୟାଦା ପାଇ ସାରିଥିଲା । ପୌରାଣିକ ଉପାଖ୍ୟାନ ଅନୁସାରେ ମହିଷାସୁର ନିଧନ ନିମନ୍ତେ ଦେବଦେବୀମାନଙ୍କ ତେଜଃ ପୁଞ୍ଜରୁ ସମ୍ଭୁତା ଦେବୀ ଦୁର୍ଗା ମହିଷାସୁର ସହିତ ଜଳରେ ଯୁଦ୍ଧ କରୁଥିବା ସମୟରେ ତାଙ୍କ ଶରୀରରୁ ମଙ୍ଗଳାଙ୍କର ଉଦ୍‌ଭବ ଘଟିଥିଲା ଏବଂ ସେ ତାଙ୍କୁ ଜଳ ଯୁଦ୍ଧରେ ସହାୟତା କରିଥିଲେ । ସୁତରାଂ ଜଳରେ ସୁରକ୍ଷା ପାଇଁ ସାଧବମାନେ ମଙ୍ଗଳାଙ୍କୁ ପୂଜା କରିବା ସ୍ୱାଭାବିକ ।

ଅପ୍ସରାମାନେ ସମୁଦ୍ର ମନ୍ଥନ ବେଳେ ବାହାରିଥିଲେ ବୋଲି ପୁରାଣରେ ଅଛି । ପୁଣି ଅନ୍ୟ ଏକ ପୌରାଣିକ ଉପାଖ୍ୟାନ ଅନୁସାରେ ହର--ପତ୍ନୀ-ସତୀଙ୍କର 'ଗଣ୍ଡ' ଅଂଶ ଗୋଦାବରୀରେ ପଡ଼ିଥିଲା ଏବଂ ସେ ସେଠାରେ 'ରଙ୍କିଣୀ' ଭାବରେ ଆରାଧିତା ହୁଅନ୍ତି । କୈବର୍ତ୍ତମାନଙ୍କର ଇଷ୍ଟଦେବୀ ବାସୁଳୀଙ୍କୁ ମଧ୍ୟ କେତେକ ମଙ୍ଗଳ ଗାଥାରେ 'ରଙ୍କିଣୀ' ବୋଲି ସମ୍ବୋଧନ କରାଯାଇଛି । ଡ଼ିଙ୍ଗି ଓ ବାସୁଳୀ ପୂଜା ସହିତ ମଧ୍ୟ ବୋଇତ ବୋହୁଥିବା କୈବର୍ତ୍ତ ଜାତିର ସଂପର୍କ ଅଛି । ତେଣୁ ଖୁଦୁରୁକୁଣୀ ଜଳଦେବୀ ରଙ୍କିଣୀଙ୍କ ପୂଜାର କୌଣସି ସ୍ଥାନୀୟ ଲୌକିକ ରୂପରୁ ବିବର୍ତ୍ତିତ ହୋଇଥିବା ମଧ୍ୟ ସମ୍ଭବ । ଓଷା କଥାରେ ତଅପୋଇ ବଣରେ ରହିଥିବା ଛେଳି ଖୋଜୁଥିବା ବେଳେ ସେଇ ବନସ୍ତର ଗୋଟିଏ ସ୍ଥାନରେ କେତେକ ବାଳିକା ଝିଅ ମିଳିମିଶି ମଙ୍ଗଳାଙ୍କର ଖୁଦୁରୁକୁଣୀ ଓଷା ପୂଜୁଥିବାର ବର୍ଣ୍ଣନା ଅଛି । ଏବେ ମଧ୍ୟ କଟକ ଜିଲ୍ଲାର କେତେକ ଅଞ୍ଚଳରେ ନାନା ବର୍ଣ୍ଣର ପତ୍ର ପୁଷ୍ପରେ 'ମାଳଚୁଳ' କରି ତାଙ୍କୁ ଖୁଦୁରୁକୁଣୀ ଦେବୀ (ମଙ୍ଗଳା) ଭାବରେ ପୂଜା କରାଯାଏ । ଏହାଛଡ଼ା ମଙ୍ଗଳାଙ୍କ ଚିତ୍ର ସହିତ ସେଥିରେ ତଅପୋଇର ଜୀବନ ଲୀଳାର ଚିତ୍ରିତ ରୂପ ଅଙ୍କିତ ପଟ୍ଟଚିତ୍ର ପୂଜା କରିବାର ବିଧି ମଧ୍ୟ

ଓଷା କଥାରେ ଅଛି । କେତେକ ଅଞ୍ଚଳରେ ମାଟିର ପ୍ରତିମା ଗଢ଼ି ପୂଜା କରିବା ବିଧି ମଧ୍ୟ ପ୍ରଚଳିତ । ଏହି ପ୍ରତିମାରେ ଦେବୀ ଗୋଟିଏ ଛୋଟ ଶିଶୁକୁ କାଖରେ ଧରିଥିବାର ଦେଖାଯାଏ । ଏହା 'ମାତୃଦେବୀ'ଙ୍କ ରୂପ କଳ୍ପନାରୁ ଗଠିତ ।

ସାଧବ ଝିଅ ତଅପୋଇ ଦୂର ବିଦେଶକୁ ବୋଇତ ବଣିଜରେ ଯାଇଥିବା ତାର ଭାଇମାନଙ୍କର ମଙ୍ଗଳ ମନାସି ଖୁଦୁରୁକୁଣୀ ପୂଜା କରିଥିବାରୁ, ବାତୁଅ ଝିଅମାନେ ଭାଇମାନଙ୍କ ପାଇଁ ଏହି ଓଷା କରନ୍ତି । ମାଳଶ୍ରୀ ଗାଇବା ବେଳେ, ସେଥିରେ ମଧ୍ୟ ଭାଇମାନଙ୍କର ମଙ୍ଗଳ ପାଇଁ ଦେବୀଙ୍କୁ ପ୍ରାର୍ଥନା କରନ୍ତି । ପାରିବାରିକ ଜୀବନରେ ଭାଇ ଭଉଣୀ ସଂପର୍କର ମଧୁମୟ ଚିତ୍ର ସହିତ ଅତୀତ ଓଡ଼ିଶାର ଅର୍ଥନୈତିକ ଓ ସାମାଜିକ ଜୀବନର ଏକ ସୁନ୍ଦର ଚିତ୍ରଣ ଏହି ଓଷାକଥାରେ ଫୁଟିଉଠିଛି ।

ମୂଳ କଥାଟି ବହୁ କାଳରୁ ଲୋକମୁଖରେ ଚଳି ଆସୁଥିଲା । ପରବର୍ତ୍ତୀ କାଳରେ ସମ୍ଭବତଃ ଷୋଡ଼ଶ-ସପ୍ତଦଶ ଶତାବ୍ଦୀ ବେଳକୁ ଗୋପୀନାଥ ଦାସ ଏହାକୁ ନବାକ୍ଷରୀ ପଦରେ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ଲୌକିକ ପୂଜାବିଧି ସହିତ ଯୋଡ଼ି ହୋଇଥିବା ଗୋଟିଏ ପୁରାକଥା ମୌଖିକ ପରମ୍ପରାରେ ପୁରୁଷ ପୁରୁଷ ଧରି ଗଡ଼ିଆସିବା ବେଳେ, ସେଥିରେ ମୂଳ ଘଟଣାବଳୀର କ୍ରମ ପରିବର୍ତ୍ତନ, ସଂଯୋଜନ, ବିଯୋଜନ ସହିତ ସ୍ଥାନେ ସ୍ଥାନେ ଅତିରଞ୍ଜନ ମିଶି ମିଶି ମୁହଁରୁ ମୁହଁକୁ, କାନରୁ କାନକୁ ଗତି କରୁଥାଏ । କୌଣସି ଜଣେ କବିଙ୍କ ମନକୁ ପାଇଲେ ବା ସେ ତାର ଆବଶ୍ୟକତା ଅନୁଭବ କଲେ ମୂଳକଥାକୁ ତାଙ୍କ ନିଜସ୍ୱ ଶୈଳୀରେ ଲେଖି ଯାଆନ୍ତି । ଗୋପୀନାଥ ଦାସ ତାହାହିଁ କରିଛନ୍ତି ।

ମୂଳ ଓଷା କଥାଟି ସାଧବ ପରିବାର ଉପରେ ଆଧାରିତ । ସାଧବମାନେ ଦରିଆପାରି ବାଣିଜ୍ୟ କରୁଥିଲେ । ଗୋପୀନାଥ ଦାସ ଏହି ସାଧବମାନଙ୍କ ବିଷୟରେ ଓ ସେ ସମୟର ସମାଜ ଓ ଶାସନ ସଂପର୍କରେ ଯାହା ଶୁଣିଛନ୍ତି ବା ଜାଣିଛନ୍ତି ତାକୁ ଉପଜୀବ୍ୟ କରି ପ୍ରସଙ୍ଗ କ୍ରମେ ଲେଖିଛନ୍ତି-

ତହିଁରରାଜା ତାଳଧ୍ୱଜ । ବହୁତ ଆୟତନ ରାଜ୍ୟ ॥
ସମସ୍ତ ଘରେ ଯେ କୁଶଳ । ଧର୍ମ ସ୍ଥାପିଣ ମହୀପାଳ ॥
ଭାରିଜା ନାମେପତିବ୍ରତା । ନିଯୋଗ ଲୋକ ଯେ ଖଟନ୍ତା ॥
ସଭାରେ ତାର ମିଛ ନାହିଁ । ରାଜ୍ୟକୁ ଶତ୍ରୁ ନ ଆସଇ ॥

ପରଜା ପାଳେ ପୁତ୍ର ଜାଣି । ଗୁହାରୀ ତତକାଳେ ଶୁଣି ॥

\+ + +

ସେ ନଗ୍ର ବଡ଼ ଶୋଭାବନ । ଅଳକା ପୁରୁକୁ ସମାନ ॥
ବହୁତ ସାଧବ ଅଛନ୍ତି । ବୋଇତ ବାଣିଜ୍ୟ କରନ୍ତି ॥
ସେହି ବାଣିଜ୍ୟ ପରସାଦେ । କିଣନ୍ତି କୁବେରକୁ ବାଦେ ॥
ପୋଇଲି ପିନ୍ଧେ ପାଟ ଶାଢ଼ି । ଆବର ହସ୍ତେ ସୁନା ଚୁଡ଼ି ॥

ଯେଉଁ ସମାଜରେ ପୋଇଲି ବା ଦାସୀ ବି ପାଟଶାଢ଼ି ଓ ସୁନାଚୁଡ଼ି ପିନ୍ଧେ, ସେ ସମାଜର ସଂପଦ ଓ ସମୃଦ୍ଧି କଥା ଅନୁମାନ କରିବା କଠିନ ନୁହେଁ । ସେହି ରାଜ୍ୟରେ ସେହି ସମୟରେ ତଅପୋଇ ଜନ୍ମ ହୋଇଛି ଜଣେ ସାଧବଙ୍କ ଘରେ । ତାହା ବର୍ଣ୍ଣନା କରି ଲେଖାଯାଇଛି -

ତହିଁରେ ଏକ ସାଧୁଘର । ତନୟ ବନ୍ତ ନାମ ତାର ॥
ପତ୍ନୀର ନାମ ଶକୁନ୍ତଳା । ଜନ୍ମ ସେ କଲା ସପ୍ତବଳା ॥
ଝିଅର ନାମ ତଅପୋଇ । ସବୁହୁଁ ଦୁଲଣା ଅଟଇ ॥
ସାଧବ ନାମ ଧନେଶ୍ୱର । ବୋଇତ ସାତଖଣ୍ଡ ତାର ॥
ସାତ ପୁଅକୁ ସାତ ବୋହୂ । ସମସ୍ତେ ସୁନ୍ଦରୀ ସବୁହୁଁ ॥
ଚାଲନ୍ତି ସୁନାରେ ରୂପାରେ । ଶୁଅନ୍ତି ଖଟ ପଲଙ୍କରେ ॥

ସେଇ ସାଧବଘର ଝିଅ ତଅପୋଇ ଯେତେବେଳେ 'ସୁନାର ଚାନ୍ଦଟି'ଏ ପାଇଁ ରୁଷି ଶୋଇଛି, ସେତେବେଳେ ସାଧବ ତାହା ଜାଣିପାରି କହୁଥିବାର ବର୍ଣ୍ଣନା ଅଛି -

ଏ ଛାର କଥାକୁ ଗୋ ମାଏ । ରୁଷିଛୁ ନ ମିଳିଲା ପ୍ରାୟେ ॥
କାଲି ଭିତରେ ଗଢ଼ାଇବି । ପନ୍ଦର ଦିନେ ଚାନ୍ଦ ଦେବି ॥
ଏମନ୍ତେ ରଜନୀ ପାହିଲା । ସାଧବ ବିନ୍ଧାଣି ଆଣିଲା ॥
ସାଧବ ସାଧବାଣୀ ବସି । ଗଢ଼ାନ୍ତି ସୁବର୍ଣ୍ଣର ଶଶୀ ॥
ଚାରି ପାରୁଶେ ଶୋହେ ହୀରା । ଚନ୍ଦ୍ରକୁ ବେଢ଼ି ଯେହ୍ନେ ତାରା ॥

ତଅପୋଇକୁ ଉପଯୁକ୍ତ ବୟସରେ ଉପଯୁକ୍ତ ଘର ଓ ବର ଦେଖି ଭାଇମାନେ ବିବାହ କରାଇ ଦେଇଛନ୍ତି । ବିବାହ ପରେ କନ୍ୟା ବିଦାବେଳେ ସେଇ ଚାନ୍ଦଟିକୁ ମଧ୍ୟ ତଅପୋଇ ବସିଥିବା ଗଜଦନ୍ତ ଦୋଳାରେ ବାନ୍ଧି ଦିଆଯାଇଥିବାର ବର୍ଣ୍ଣନା କରାଯାଇଛି-

ମୁଣ୍ଡ କରିଣ ଗଜଦୋଳି । ବସାଇ ତଅପୋଇ ବାଳି ।।
ସୁବର୍ଣ୍ଣ ଚାନ୍ଦ ଘରେ ଥିଲା । ସାଧବ ବେଗେ ଅଣାଇଲା ।।
ଉପରେ ଟଣାଇଲା ସେହି । ଦେଖି ଆନନ୍ଦ ତଅପୋଇ ।।
ଚନ୍ଦ୍ରକୁ ବେଢ଼ି ଯେହ୍ନେ ତାରା । ଅତି ସୁନ୍ଦର ଦିଶେ ତୋରା ।।

ଏ ଭିତରେ କେତୋଟି ଶତାବ୍ଦୀ ବିତିଗଲାଣି । ସୁନା ଓ ହୀରାର ଚାନ୍ଦ ତଅପୋଇ ସହିତ ଚାଲିଯାଇଛି । ଓଡ଼ିଶାର ସେହି ଅର୍ଥନୈତିକ ସମୃଦ୍ଧି ଓ ଉଜ୍ଜ୍ୱଳ ନୈତିକତାର ଯୁଗ ମଧ୍ୟ କିମ୍ବଦନ୍ତୀ ଓ ଇତିହାସରେ ରହିଯାଇଛି । କାର୍ତ୍ତିକ ପୂର୍ଣ୍ଣିମାରେ ବୋଇତ ବନ୍ଦାଣ ଉତ୍ସବ ଭିତରେ ଆମେ ସେଇ ଇତିହାସକୁ କେବଳ ସ୍ମରଣ କରୁଛୁ । ଅଥଚ ଋଷିଆର ୟୁରିଗାଗାରିନ୍ ଓ ଆମେରିକାର ଆର୍ମଷ୍ଟ୍ରଙ୍ଗ ଅନ୍ତରୀକ୍ଷରେ ବିଭିନ୍ନ ସ୍ତର ଭେଦ କରି ମହାକାଶରେ ଚନ୍ଦ୍ରକୁ ଦେଖି ଚାହିଁ ଫେରିଲେଣି । ଓଡ଼ିଶାରେ ଅନ୍ତର୍ଦ୍ଦେଶୀୟ-ବଣିକ ଦଳ ବେପାର କରିବାକୁ ପହଞ୍ଚିବା ଉପରେ । ଏବେବି ଭାଦ୍ରପଦ ରବିବାରମାନଙ୍କରେ ଆମେ ବାଳିକା କଣ୍ଠର ସେଇ ଖୁଦୁରୁକୁଣୀ ଗୀତ ଶୁଣୁଛୁ । ଶିଶିର ସିକ୍ତ ହେମନ୍ତ ଋତୁର କାର୍ତ୍ତିକ ପୂର୍ଣ୍ଣିମାରେ ବୋଇତ ବନ୍ଦାଣ ଉତ୍ସବ ପାଳନ କରୁଛୁ । ତଥାପି ଆକାଶରେ ସେଇ ଜହ୍ନ ଅଛି, ସେଇ କଥା ମନେପକାଇ ଦେଉଛି । ଚିନ୍ତା ଲଟେଇ ଯାଇଛି ଅନ୍ତରରୁ ଅନ୍ତରୀକ୍ଷ ଯାଏ ।

-୦-

# ଏକ ଦେବୀ ବହୁ ନାମ

ଶସ୍ୟ ଓ ପ୍ରଜନନର ଦେବୀ ଭୂଦେବୀ, ଶାକାମ୍ବରୀ, ଲକ୍ଷ୍ମୀ ଏବଂ ହୈମବତୀ ପାର୍ବତୀ ଉମା, ପୁଣି ଦେବତାମାନଙ୍କର ସମ୍ମିଳିତ ତେଜୋପୁଞ୍ଜ ସମ୍ଭୂତା ମହିଷମର୍ଦ୍ଦିନୀ ଦୁର୍ଗା ଭାବରେ ଦେବୀଙ୍କର ନାନା ରୂପ, ନାନା ଗୁଣ ଓ ବର୍ଣ୍ଣ ତଥା କୀର୍ତ୍ତି ଓ ମହିମାମାନ ପୁରାଣର ଉପାଖ୍ୟାନରେ ଓ ଆଚରିତ ପରମ୍ପରା ଭିତରେ ଦେଖିବାକୁ ମିଳେ । ମାର୍କଣ୍ଡେୟ ପୁରାଣରେ ଦୁର୍ଗାଙ୍କର ମହିମାମଣ୍ଡିତ ଗାଥା, ତାଙ୍କର ଆବିର୍ଭାବର ବର୍ଣ୍ଣନାରୁ ସ୍ପଷ୍ଟ ଜଣାଯାଏ ଯେ, ସେ ନଗାଧିରାଜ ହିମବନ୍ତଙ୍କର ତନୟା ପାର୍ବତୀ ନୁହନ୍ତି ବା ଦକ୍ଷ ପ୍ରଜାପତିଙ୍କର କନ୍ୟା ସତୀ ନୁହନ୍ତି । ପୁଣି ସେ ଶସ୍ୟ ଓ ପ୍ରଜନନର ଦେବୀ ଲକ୍ଷ୍ମୀ ନୁହନ୍ତି । ଦେବୀ ଦୁର୍ଗା ମହିଷାସୁରକୁ ବିନାଶ କରି ଦେବତାମାନଙ୍କ ଦୁର୍ଗତିର ଅବସାନ ଘଟାଇବା ପାଇଁ ଆବିର୍ଭୂତା ହୋଇଥିଲେ । ସେ ସମରର ଦେବୀ, ତେଣୁ ରାଜାମାନେ ନିଜ ନିଜ ଦୁର୍ଗର ଅଧିଷ୍ଠାତ୍ରୀ ଦେବୀ ଭାବରେ ତାଙ୍କର ପୂଜା ଆରାଧନା କରୁଥିଲେ । ପୁଣି ଆଉ ଜଣେ ଦେବୀ ମଙ୍ଗଳା । ତାଙ୍କୁ ଦୁରିତ ନାଶିନୀ ଦେବୀ ଭାବରେ ଆରାଧନା କରାଯାଉଥିଲେ ମଧ୍ୟ ପୁରାଣରେ 'ଯୋଷିତାଂ ଇଷ୍ଟଦେବତା' ବୋଲି ତାଙ୍କର ବର୍ଣ୍ଣନା କରାଯାଇଛି । ସେ ନାରୀ ଓ କୁମାରୀମାନଙ୍କ ଓଷାବ୍ରତର ଦେବୀ । ଗ୍ରାମ ଦେବୀ ଭାବରେ ମଧ୍ୟ ମଙ୍ଗଳାଙ୍କର ପୂଜାର୍ଚ୍ଚନା ହୁଏ । ଅଥଚ କେତେକ ସ୍ତବରେ ମଙ୍ଗଳା ଓ ଦୁର୍ଗାଙ୍କୁ ଏକ ଓ ଅଭିନ୍ନ ଦେବୀ ଭାବରେ ସ୍ତୁତି କରାଯାଇଛି । ଓଡ଼ିଶାର ନାରୀ ସମାଜରେ ବହୁଳ ଭାବରେ ପ୍ରଚାରିତ ଗୋଟିଏ ସର୍ବମଙ୍ଗଳା ସ୍ତୁତିରେ ମଙ୍ଗଳାଙ୍କର ବନ୍ଦନା ସହିତ ଓଡ଼ିଶାର ବିଭିନ୍ନ ଶକ୍ତିପୂଜା ସ୍ଥାନରେ ଅଧିଷ୍ଠିତା ଦେବୀମାନଙ୍କ ସଂପର୍କରେ ବର୍ଣ୍ଣନା କରାଯାଇଛି ।

ଅଳତା, ସିନ୍ଦୂର ଓ ରଙ୍ଗବସ୍ତ୍ର ପରିହିତା ମଙ୍ଗଳା ଦେବୀ ସିଂହ ବାହାନରେ ବିଜେ ହୋଇ ଚଣ୍ଡୀ ଚାମୁଣ୍ଡା ପ୍ରଭୃତିଙ୍କ ଗହଣରେ ନିଶାର୍ଦ୍ଧରେ ଭ୍ରମଣ କରନ୍ତି । ସେହି ଦେବୀଙ୍କୁ ନାରାୟଣୀ, ଅପର୍ଣ୍ଣା, ପାର୍ବତୀଙ୍କ ସହିତ ଅଭିନ୍ନ କଳ୍ପନା କରି ସେ ଓଡ଼ିଶାର ବିଭିନ୍ନ ପୀଠରେ ଭିନ୍ନ ଭିନ୍ନ ନାମରେ ଅଧିଷ୍ଠିତା ବୋଲି ସ୍ତୁତି କରାଯାଇଛି ।

"ନମୋ ନାରାୟଣୀ ମାଗୋ ଅପର୍ଣ୍ଣା ପାର୍ବତୀ,
ଭ୍ରମଣ ଯେ କରୁ ମାଗୋ ନିଶାଅର୍ଦ୍ଧ ରାତି ।
ଚଣ୍ଡୀ ଯେ ଚାମୁଣ୍ଡା ମାଗୋ ଖଟନ୍ତି ଅପାର,
ଏମାନଙ୍କୁ ସଙ୍ଗେ ଘେନି ଭ୍ରମଣ ତୋହର ।
ପୟରେ ଅଳତା ଭାଲେ ସିନ୍ଦୂରର ଚିତା,
ରଙ୍ଗ ବସନରେ ତୋର ଶ୍ରୀଅଙ୍ଗ ଶୋଭିତା ।
ସିଂହର ପୃଷ୍ଠରେ ମାଗୋ ବିଜେ କରିଯାଉ,
ଯେ ମୁଖେ ପଡ଼ିଲେ ମାଗୋ ନ ବର୍ତ୍ତନ୍ତି ଆଉ ।
ନମସ୍ତେ ଶାରଳା ମାଗୋ ଶଙ୍କର ଭାବିନୀ,
ରକ୍ଷା କର ମାଗୋ ଦନୁଜ ନାଶିନୀ ।

+ + +

ଝଙ୍କଡ଼େ ରହିଲୁ ମାଗୋ ଶାରଳା ବୋଲାଇ,
କାକଟପୁରେ ହୋଇଲୁ ମଙ୍ଗଳା ଯେ ତୁହି ।
ଲହ ଲହ ଜିହ୍ୱା ଯେ ସିନ୍ଦୂର ମୁଖ ମଣ୍ଡି,
କୋଣାରକେ ରହିଲୁ ଅଭୟା ରାମଚଣ୍ଡୀ ।
ଶ୍ରୀପୁରୁଷୋତ୍ତମେ ରହିଲୁ ବିମଳା ବୋଲାଇ,
ବାଙ୍କିରେ ରହିଲୁ ମାଗୋ ନାମ ଚର୍ଚ୍ଚିକାଇ ।
ସମ୍ବଲପୁରେ ରହିଲୁ ନାମ ସମଲାଇ,
ଯାଜପୁରରେ ରହିଲୁ ତୋ' ନାମ ବିରଜାଇ ।
ପଶ୍ଚିମେ ରହିଲୁ ମାଗୋ ନାମ ହିଙ୍ଗୁଳାଇ,
ଭୁବନେଶ୍ୱରେ ରହିଲୁ ଗଉରୀ ବୋଲାଇ ।
ବାଣପୁରେ ରହିଲୁ ଯେ ନାମ ଭଗବତୀ,
ସକଳ ଅମରେ ତୋତେ କରନ୍ତି ଯେ ସ୍ତୁତି ।
ଉତ୍ତରଦିଗେ ରହିଲୁ ଚଣ୍ଡୀନାମ ବହି,
ଏମନ୍ତ ଦ୍ୱାଦଶ ନାମ ବ୍ରହ୍ମା ଗଲେ ଦେଇ ।"

ଏହି ନାମ ଗୁଡ଼ିକ ବ୍ରହ୍ମା ଦିଅନ୍ତୁ ଅଥବା ନ ଦିଅନ୍ତୁ, ମା' ଦେବୀ ଦୁର୍ଗା ଏବଂ ନଗାଧିରାଜ ହିମାଦ୍ରି ତନୟା ପାର୍ବତୀ, ଯାହାଙ୍କୁ କାଳିଦାସ କୁମାର ସମ୍ଭବମ୍ କାବ୍ୟରେ 'ଦକ୍ଷସ୍ୟ କନ୍ୟା ହର ପୂର୍ବ ପତ୍ନୀ' ବୋଲି ଉଲ୍ଲେଖ କରିଛନ୍ତି, ସେହି ଅପର୍ଣ୍ଣା ପାର୍ବତୀ ଯେ ଅଭିନ୍ନା ଓ ଏକ ଦେବୀ, ତାହା ଏହି ସ୍ତୁତିରେ କୁହାଯାଇଛି । ପୁଣି ସେ ମହାଶକ୍ତି, ମହାଦେବୀ । ଓଡ଼ିଶାର ଝଙ୍କଡ଼ ବା କନକପୁରରେ ଶାରଳା, କାକଟପୁରରେ ମଙ୍ଗଳା, ସମୁଦ୍ର ତଟରେ ଚନ୍ଦ୍ରଭାଗା ମୁହାଣ ନିକଟରେ ରାମଚଣ୍ଡୀ, ପୁରୁଷୋତ୍ତମ କ୍ଷେତ୍ରରେ ବିମଳା, ମହାନଦୀ କୂଳରେ ବାଙ୍କିଠାରେ ଚର୍ଚ୍ଚିକା । ପୁଣି ସମ୍ବଲପୁରରେ ସେହି ମହାନଦୀ କୂଳରେ ସମଲାଇ, ଯାଜପୁରରେ ବୈତରଣୀ କୂଳରେ ବିରଜା, ଭୁବନେଶ୍ୱରରେ ଗୌରୀ, ବାଣପୁରରେ ଭଗବତୀ, ମହାନଦୀ ଓ କାଠଯୋଡ଼ି ମଧ୍ୟବର୍ତ୍ତୀ କଟକ ନଗରୀରେ ଚଣ୍ଡୀ ଭାବରେ ପ୍ରତିଷ୍ଠିତା ଓ ଆରାଧିତା ହେଉଛନ୍ତି । ଏହା ସେହି ଏକ ଦେବୀଙ୍କର ବହୁ ନାମ ଅଥବା ବହୁ ଧାମରେ ବହୁ ନାମରେ ଥିବା ଦେବୀମାନଙ୍କୁ ବିଭିନ୍ନ ଉପାଖ୍ୟାନ ଓ ବିଶ୍ୱାସଧାରା ମଧ୍ୟ ଦେଇ ଗୋଟିଏ ମହାସ୍ରୋତରେ ମିଶାଇ ଏକ ରୂପରେ ଦେଖିବାର ଉଦ୍ୟମ ହୋଇ ଆସିଛି ।

**ବିରଜା :-**

ଉପରେ ବର୍ଣ୍ଣନା କରାଯାଇଥିବା ଦେବୀମାନଙ୍କ ମଧ୍ୟରେ ବିରଜା ଓ ତାଙ୍କର ଯାଜପୁର ପୀଠ ପ୍ରାଚୀନତମ ବୋଲି ମନେହୁଏ । ମୂଳ ମହାଭାରତ ବନ ପର୍ବର ୮୫ ଅଧ୍ୟାୟରେ ଏହାଙ୍କ ବିଷୟରେ ଉଲ୍ଲେଖ ଅଛି । ସୁତରାଂ ଖ୍ରୀଷ୍ଟପୂର୍ବ ତୃତୀୟ ଚତୁର୍ଥ ଶତାବ୍ଦୀରେ ସଂସ୍କୃତ ମହାଭାରତ ରଚିତ ହେବା ପୂର୍ବରୁ ଏହା ପ୍ରତିଷ୍ଠା ଲାଭ କରି ସାରିଥିଲା । ଏହା ଉପରେ ଭିତ୍ତି କରି ଐତିହାସିକମାନେ ବିରଜା କ୍ଷେତ୍ରକୁ ଖ୍ରୀଷ୍ଟପୂର୍ବ ଷଷ୍ଠ ସପ୍ତମ ଶତାବ୍ଦୀରୁ ପୁଣ୍ୟ କ୍ଷେତ୍ର ଭାବରେ ପ୍ରସିଦ୍ଧିଲାଭ କରିଥିବାର ଅନୁମାନ କରନ୍ତି । ପୂର୍ବରୁ ଏହି କ୍ଷେତ୍ରର ନାମ ବିରଜା ଥିଲା । ପରେ ଖ୍ରୀ:ଅ: ୧୦ମ ଶତାବ୍ଦୀରେ ସୋମବଂଶୀ କେଶରୀ ରାଜବଂଶ ଅମଳରେ ଯଯାତି ନଗର ହେଲା । ମହାଭାରତ ବନପର୍ବ (୧୧୪ ଅଧ୍ୟାୟ)ରେ ଲୋମଶ ମୁନି ଯୁଧିଷ୍ଠିରଙ୍କୁ ଏହି କ୍ଷେତ୍ର ବିଷୟରେ କହିଛନ୍ତି - ଏହା ହିଁ କଳିଙ୍ଗ ଜାତିର ଦେଶ । ଏହାରି ମଧ୍ୟରେ ବୈତରଣୀ ନଦୀ ପ୍ରବାହିତ ହେଉଛି । ଏହାର ତୀରରେ ନିଜେ ଧର୍ମଦେବ ମଧ୍ୟ ଦେବତାମାନଙ୍କ ଆଶ୍ରୟରେ ଯଜ୍ଞ କରିଥିଲେ । ଏହି ନଦୀର ଉତ୍ତର ତୀର ଋଷିମାନଙ୍କ ଦ୍ୱାରା ଅଧ୍ୟୁଷିତ, ଯଜ୍ଞ କରିବାର ଯୋଗ୍ୟ

ଭୂମି, ପର୍ବତ ଦ୍ୱାରା ସୁଶୋଭିତ ଓ ଦ୍ୱିଜମାନଙ୍କ ଦ୍ୱାରା ସର୍ବଥା ସମାକୁଳ । ଏହି ସ୍ଥାନ ଦେବତା ବାସଭୂମି ସ୍ୱର୍ଗର ଦ୍ୱାର ପରି । ଏହି ସ୍ଥାନରେ ପୁରାକାଳରେ ଋଷିମାନେ ଯଜ୍ଞ କରିଥିଲେ ।

ଏହି ପବିତ୍ର କ୍ଷେତ୍ରର ପୀଠେଶ୍ୱରୀ - 'ବିରଜା' । ତାଙ୍କର ଧ୍ୟାନ ମନ୍ତ୍ରରେ ବର୍ଣ୍ଣିତ ଅଛି-

ଧୃତ କନକ ନିଭାଭାଂ ଶୂଳ ଲାଙ୍ଗୁଳ ହସ୍ତା
ପ୍ରବଳ ମହିଷ ପୃଷ୍ଠେ ଶୂଳ ନିର୍ଭେଦ୍ୟମାନା
ଗଣପତି ଫଣି ସମ୍ରାଟ ଯୋନି ଲିଙ୍ଗେନ୍ଦୁ ଚୂଡା
ରଚୟତୁ ବିରଜା ମେ ମଙ୍ଗଳଂ ମଙ୍ଗଳାନାମ୍ ।

କପିଳ ସଂହିତାରେ ମଧ୍ୟ "ଶ୍ୟାମାଙ୍ଗୀଂ ସିଂହମାରୂଢ଼ାଂ ଦ୍ୱିଭୁଜାଂ ଶୂଳ ଧାରିଣୀମ୍" ଭାବରେ ବିରଜା ଦେବୀଙ୍କର ବନ୍ଦନା କରାଯାଇଛି । ଏଥିରୁ ମନେହୁଏ ଦେବୀ ବିରଜା ମହିଷ ମର୍ଦ୍ଦିନୀ ଦୁର୍ଗା । ଅନ୍ୟ ଏକ ଧ୍ୟାନ ମନ୍ତ୍ରରେ ଏହା ସ୍ପଷ୍ଟ ।

ଦେବୀଂ ବ୍ରାହ୍ମଗ୍ନିଜାତାଂ ମହିଷ ତନୁଗତାଂ ଶୂଳ ଲାଙ୍ଗୁଳହସ୍ତା,
ଶୂଳଂ ଭିତ୍ୱାଚ ପୃଷ୍ଠେ ସୁର ରିପୁ ମହିଷ ପ୍ରାଣହାରାଂ ବ୍ୟାଳାମ୍ ।

ବିରଜା ଜନ୍ମ ଯାଜପୁରର ଗୋଟିଏ ପ୍ରସିଦ୍ଧ ପର୍ବ । ଏହି ଦିନ ବିରଜାଙ୍କୁ ସାବିତ୍ରୀ ବେଶରେ ସଜାଇ ହରିଦ୍ରାବର୍ଣ୍ଣର ବସ୍ତ୍ର ପରିଧାନ କରାଯାଏ । ସାବିତ୍ରୀ ମନ୍ତ୍ରରେ ତାଙ୍କର ପୂଜା ଉପଚାରାଦି କରାଯାଏ । 'ବ୍ରହ୍ମତନ୍ତ୍ର' ଅନୁସାରେ ବ୍ରହ୍ମ ଯଜ୍ଞରୁ ବ୍ରହ୍ମାଙ୍କର ଶକ୍ତି ରୂପିଣୀ ବ୍ରାହ୍ମଣୀ ବା ସାବିତ୍ରୀ କୋଟିସୂର୍ଯ୍ୟ ପ୍ରଭା ମଣ୍ଡଳରେ ଉଦ୍‌ଭାସିତା ହୋଇଥିଲେ । ମାଘମାସ ଅମାବାସ୍ୟା ତିଥି, ଶ୍ରବଣା ନକ୍ଷତ୍ର ଯୁକ୍ତ ମକର ଚନ୍ଦ୍ରରେ ମଧ୍ୟାହ୍ନ ସମୟରେ ଦେବୀ ଯଜ୍ଞାନଳରୁ ଆବିର୍ଭୂତା ହୋଇଥିବାରୁ ଏହି ଦିନଟିକୁ ତାଙ୍କର ଜନ୍ମ ଦିନ ରୂପେ ପାଳନ କରାଯାଏ । ମାତ୍ର ବ୍ରହ୍ମ ପୁରାଣରେ ବ୍ରହ୍ମଯଜ୍ଞର ବର୍ଣ୍ଣନା ପ୍ରସଙ୍ଗରେ କୁହାଯାଇଛି ଆହବନୀୟ, ଗାର୍ହପତ୍ୟ, ଦକ୍ଷିଣାଗ୍ନି ନାମକ କୁଣ୍ଡରୁ ଭଗବାନ୍ ଚନ୍ଦ୍ରଶେଖର ଆବିର୍ଭୂତ ହେଲେ । ବ୍ରହ୍ମା ତାଙ୍କୁ ସ୍ତୁତି ଓ ପୂଜାରେ ସନ୍ତୁଷ୍ଟ କଲେ । ସେ ହେଲେ ଈଶାନେଶ୍ୱର । ସେ ବ୍ରହ୍ମାଙ୍କ ସ୍ତୁତିରେ ଏହି କ୍ଷେତ୍ରରେ ସ୍ଥାୟୀ ଭାବରେ ଅଧିଷ୍ଠାନ କରିବାକୁ ସମ୍ମତ ହେଲେ ।

ତାଙ୍କର ଶକ୍ତି ମାହେଶ୍ୱରୀ ଇଶାନେଶ୍ୱରଙ୍କୁ ଦକ୍ଷିଣାଗ୍ନି ହୋମ କୁଣ୍ଡରୁ ଆବିର୍ଭୂତ ହେବାର ଜାଣି, ତାଧ ପଶ୍ଚିମରେ ଘୃତାହୁତି ପ୍ରଜ୍ୱଳିତ ଗାର୍ହପତ୍ୟ କୁଣ୍ଡରୁ ଦିବ୍ୟ ବସ୍ତ୍ରାଳଙ୍କାର ମଣ୍ଡିତା ହୋଇ ତାଙ୍କର ତେଜୋପୁଞ୍ଜରେ ଚତୁର୍ଦ୍ଦିଗକୁ ଆଲୋକିତ କରି ଦେବୀ ଆବିର୍ଭୂତା ହେଲେ । ଚନ୍ଦ୍ରଶେଖର ପାର୍ବତୀଙ୍କୁ ଆବିର୍ଭୂତା ହେବାର ଦେଖି କମନୀୟ ଶୋଭା ଧାରଣ କଲେ । ବ୍ରହ୍ମା ତାଙ୍କୁ ସ୍ୱର୍ଗ ଗଙ୍ଗାପରି ପବିତ୍ର ବୈତରଣୀ ଜଳରେ ସ୍ନାନ କରାଇ ଅର୍ଘ୍ୟ, ଗନ୍ଧ, ପୁଷ୍ପାଦିରେ ଅର୍ଚ୍ଚନା କରି ସ୍ତୁତିଗାନ କଲେ । ବ୍ରହ୍ମାଙ୍କ ସ୍ତବରେ ସନ୍ତୁଷ୍ଟ ହୋଇ ଦେବୀ କହିଥିଲେ- ''ତ୍ୱଂ ମାଂ ବିରଜସଂ ନାମ୍ନାମନ୍ୟସ୍ୱ କମଳାସନ, ପ୍ରସନ୍ନାଂ ଭବତେ କାମ ଜାନୀହି ଜଗତାଂପିତଃ ।'' ଏହାପରେ ବ୍ରହ୍ମା ଅନୁରୋଧ କରିଥିଲେ- 'ହେ ରଜୋଗୁଣ ରହିତା ସତ୍ତ୍ୱଗୁଣମୟୀ ଦେବି, ମାତା ବିରଜା, ମୋର ଏହି ସୁବିସ୍ତୃତ ପବିତ୍ର ବିରଜା କ୍ଷେତ୍ରରେ ଆପଣ କ୍ଷେତ୍ରାଧିଶ୍ୱରୀ ହୋଇ ଚିର ଅବସ୍ଥାନ କରନ୍ତୁ ।' ମାତ୍ର ବାୟୁ ପୁରାଣ ଓ ହରିବଂଶର ବର୍ଣ୍ଣନା ଅନୁସାରେ ବିରଜା ଆଜ୍ୟପା ନାମକ ପିତୃଗଣଙ୍କର ମାନସୀ କନ୍ୟା, ଯଯାତିଙ୍କ ଜନନୀ ଓ ନହୁଷଙ୍କ ସାଧ୍ୱୀ ପତ୍ନୀ । ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହିମତ ଉପରେ ନିର୍ଭର କରି କହିଛନ୍ତି - ''ବିରଜା ହେଉଛନ୍ତି ଆଜ୍ୟପା ପିତୃଗଣଙ୍କ ମାନସୀ କନ୍ୟା, ଏଣୁ ତାଙ୍କଠାରେ ପିଣ୍ଡଦାନ କଲେ ପିତୃଗଣ ତାହା ପାଆନ୍ତି ।'' ଏହିପରି ବିଭିନ୍ନ ପୁରାଣ, ଭିନ୍ନ ଭିନ୍ନ ଉପାଖ୍ୟାନ ଥିଲେ ହେଁ ବିରଜାଙ୍କୁ ମହିଷ ମର୍ଦ୍ଦିନୀ ଦୁର୍ଗା ଭାବରେ ପୂଜା କରାଯାଉଛି । ପୁରୀ ବିମଳାଙ୍କ ଠାରେ ଯେପରି ଆଶ୍ୱିନମାସ ଶାରଦୀୟ ଦୁର୍ଗୋତ୍ସବ ଷୋଡ଼ଶ ଉପଚାରରେ କରାଯାଏ, ବିରଜାଙ୍କଠାରେ ମଧ୍ୟ ସେହି ବିଧିରେ କରାଯାଏ ।

ଯେଉଁଠାରେ ଷୋଡ଼ଶ ରାତ୍ରି ପୂଜାବିଧି ପ୍ରଚଳିତ, ସେଠାରେ ଆର୍ଦ୍ରା ନକ୍ଷତ୍ରଯୁକ୍ତା କୃଷ୍ଣପକ୍ଷ ଅଷ୍ଟମୀ ବା ଜିତା ଅଷ୍ଟମୀ ଠାରୁ ଦେବୀଙ୍କୁ ଆବାହନ କରାଯାଏ । ପୂର୍ବାଷାଢ଼ା ନକ୍ଷତ୍ର ଯୁକ୍ତା ଅଷ୍ଟମୀ ବା ମହାଷ୍ଟମୀ ରାତ୍ରିରେ ଛାଗ, କୁଷ୍ମାଣ୍ଡ ଆଦି ବଳି ଅର୍ପଣ କରାଯାଏ । ଜିତାଷ୍ଟମୀ ଠାରୁ ମହାନବମୀ ପର୍ଯ୍ୟନ୍ତ ଷୋହଳ ଦିନ ହେଉଥିବା ଅଷ୍ଟମୀ ଦିନ ଦେବୀଙ୍କୁ ପୂଜା କରି ଜାଗ୍ରତ କରାଇବା ଆବଶ୍ୟକ । ରାତ୍ରିରେ ଦେବୀଙ୍କୁ ଜାଗ୍ରତ କରାଯାଏ ନାହିଁ । ପୁଣି ବିରଜା, ବିମଳା ପ୍ରଭୃତି ପୀଠରେ ଅଧିଷ୍ଠିତା ଦେବୀମାନଙ୍କର ପୂଜା ରାତ୍ରିକାଳରେ କରାଯାଏ । ଏପରି ଉତ୍ତରାଷାଢ଼ା ନକ୍ଷତ୍ରଯୁକ୍ତା ଶୁକ୍ଳପକ୍ଷ ମହାଷ୍ଟମୀ ପର୍ଯ୍ୟନ୍ତ ଷୋଳପୂଜା କରି

ଶ୍ରବଣା ନକ୍ଷତ୍ରଯୁକ୍ତା ଶୁକ୍ଳ ଦଶମୀଦିନ ଦେବୀଙ୍କର ବିଜୟୋତ୍ସବ ସଂପାଦନ କରାଯାଏ । ଏହି ଦିନଟି ବିଜୟା ଦଶମୀ ବା ଦଶହରା ।

ବିରଜାଙ୍କ ଠାରେ ଜିତା ଅଷ୍ଟମୀ ରାତ୍ରିରେ ଗଣପତି ଘଟ ସହିତ ହୋମକୁଣ୍ଡର ଦକ୍ଷିଣ ଭାଗରେ ଦଶଟି ଘଟ ସ୍ଥାପନ କରାଯାଏ । ନଅଟି ଘଟରେ ଶୈଳପୁତ୍ରୀ ପ୍ରଭୃତି ନବ ଦୁର୍ଗାଙ୍କୁ ଶକ୍ତି ପଲ୍ଲବ ତନ୍ତ୍ରୋକ୍ତ ବିଧିରେ ଷୋଡ଼ଶ ଉପଚାରରେ ପୂଜା କରାଯାଏ । ଏହିପରି ଅଷ୍ଟମୀ ଠାରୁ ମହାଳୟା ଅମାବାସ୍ୟା ପର୍ଯ୍ୟନ୍ତ ଦୈନିକ ସକାଳେ ଓ ରାତ୍ରିରେ ଦେବୀଙ୍କର ପୀଠରେ ତଥା ଘଟ ସମୀପରେ ଦୁଇଥର କରି ଷୋଡ଼ଶ ଉପଚାରରେ ପୂଜା ହୁଏ । ଅମାବାସ୍ୟା ଦିନ ରଥାଧିବାସ ଏବଂ ପ୍ରତିପଦ ଦିନ ରଥ ପ୍ରତିଷ୍ଠା ହୋଇ ବିରଜାଙ୍କର ପ୍ରତିନିଧି (ବିଜେ ପ୍ରତିମା)ଙ୍କୁ ରଥରେ ଆରୋହଣ କରାଯାଏ । ଏହି ରଥର ନାମ 'ବିଜୟା' । ପ୍ରତିପଦରୁ ମହାନବମୀ ପର୍ଯ୍ୟନ୍ତ ରଥ ନଅଥର ମନ୍ଦିର ପରିକ୍ରମା କରେ । ଏହି ସମୟରେ ରଥାରୂଢ଼ା ଦେବୀଙ୍କ ଦର୍ଶନ ପାଇଁ ଭାରି ଭିଡ଼ ହୁଏ । ଶୁକ୍ଳ ପଞ୍ଚମୀ ଠାରୁ ମହାହୋମ ଆରମ୍ଭ ହୋଇଥାଏ । ଅଗ୍ନି ସଂସ୍କାର କରି ପାଞ୍ଚଟି ଘଟ ସ୍ଥାପନ କରାଯାଏ । ପୂର୍ବ କଳସରେ ଗଣପତି, ଅଗ୍ନିକୋଣରେ ସ୍ଥାପିତ କଳସରେ ବ୍ରହ୍ମା, ନୈଋତ କୋଣରେ ଶିବ, ବାୟୁ କୋଣରେ ବିଷ୍ଣୁ, ଈଶାନ କୋଣରେ ବାସୁକୀ (ଅନନ୍ତ)ଙ୍କୁ କଳସ ସ୍ଥାପନ କରି ପୂଜା କରାଯାଏ । ମହାଷ୍ଟମୀ ପର୍ଯ୍ୟନ୍ତ ଏହି ହୋମ ହୁଏ । ଏକ ସହସ୍ର ଘୃତାହୁତି ଦିଆ ହୁଏ । ମହାଷ୍ଟମୀ ଦିନ ନିଶାର୍ଦ୍ଧ ପୂଜା ଶେଷ କରି ପୀଠରେ ଗୋଟିଏ ଘଟ ସ୍ଥାପନ କରି ତହିଁରେ ଚାମୁଣ୍ଡାଙ୍କୁ ପୂଜା କରାଯାଇ ଗୋଟିଏ ଛାଗ ବଳି ଦିଆଯାଏ । ଏହିପରି ଷୋଳ କଳସ ସ୍ଥାପନ କରି ପୂଜା ସଂପାଦନ କରାଯାଏ । ପର୍ବ ଶେଷରେ ପୂର୍ଣ୍ଣାହୁତି ଦିଆଯାଏ । ଏହି ଯଜ୍ଞ ଧୂପ ପରମ ପବିତ୍ର ଓ ବନ୍ଧ୍ୟାଦୋଷ ନାଶକ । ମହାନବମୀ ଦିନ ମହାନିଶାରେ ରଥ ଭ୍ରମଣ ପରେ ବିରଜାଙ୍କ ବିଜେ ପ୍ରତିମାଙ୍କୁ ରଥରୁ ଅବତରଣ କରାଇ ସୁସଜ୍ଜିତ ବିମାନରେ 'ଲାଖବିନ୍ଧା' ପଡ଼ିଆକୁ ନିଆଯାଏ । ପୂଜକ ଦେବୀଙ୍କ ପାଖରୁ ଚାରିଦିଗକୁ ଚାରୋଟି ଶର ନିକ୍ଷେପ କରନ୍ତି । ଏହି ଉତ୍ସବ ଶେଷ ହେବା ପରେ ଦେବୀଙ୍କୁ ବିନା ବାଦ୍ୟରେ ଏକ ମୁହାଁ ଘେନି ମନ୍ଦିର ମଧ୍ୟରେ ପ୍ରବେଶ କରାନ୍ତି ଓ କବାଟ ରୁଦ୍ଧ କରାଯାଏ । ଏହି ସମୟରେ ଭୈରବ ନାମକ ମହା ଅସିରେ ଘାତକ ଗୋଟିଏ ପ୍ରୋକ୍ଷିତ ମହିଷକୁ ବଳି ମଣ୍ଡପରେ ଛେଦନକରେ । ବଳି ଶେଷ ହେବା ପର୍ଯ୍ୟନ୍ତ ମନ୍ଦିର କବାଟ ରୁଦ୍ଧ ରଖାଯାଏ । ପଞ୍ଚମୀ ଦିନଠାରୁ ଯେଉଁ ଛାଗ ବଳି ପଡ଼େ ତାହା

ବିରଜାଙ୍କ ସମ୍ମୁଖରେ ନ ହୋଇ ପଶ୍ଚିମ ପାଖରେ ଥିବା ଭୈରବୀଙ୍କ ନିକଟରେ ହୁଏ । ମହିଷ ବଳି ଦେଖିବାକୁ ଦୂର ଦୂରାନ୍ତରୁ ଭକ୍ତମାନଙ୍କର ସମାଗମ ହୁଏ । ଏହି ବିଧାନରୁ ବିରଜାଙ୍କୁ ସମରଦେବୀ, ମହିଷ ମର୍ଦ୍ଦିନୀ ଦୁର୍ଗା ବୋଲି କହିବା ଯଥାର୍ଥ ।

**ମଙ୍ଗଳା :**

କାକଟପୁର 'ମଙ୍ଗଳା'ଙ୍କ ପାଇଁ ପ୍ରସିଦ୍ଧି ଲାଭ କରିଥିଲେ ସୁଦ୍ଧା ଏହି ସ୍ଥାନରେ ଗ୍ରାମଦେବୀ କାକଟାଇ । ମଙ୍ଗଳା ତାଙ୍କର ପରବର୍ତ୍ତୀ । ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ କାକଟପୁର ମଙ୍ଗଳା ମୂର୍ତ୍ତିର ନିର୍ମାଣ କାଳ ଖ୍ରୀଷ୍ଟୀୟ ନବମ ଶତାବ୍ଦୀ ଏବଂ ସେ ମୂଳତଃ ବୌଦ୍ଧ 'ତାରା' ମୂର୍ତ୍ତି । ପରବର୍ତ୍ତୀ କାଳରେ ତାଙ୍କୁ ମଙ୍ଗଳା ଭାବରେ ପୂଜା କରାଯାଇଛି । ପୁଣି ସାରଳା ଦାସ (ଖ୍ରୀ.ଅ. ୧୫ଶ ଶତାବ୍ଦୀ)ଙ୍କ ବେଳକୁ ଏହି ମଙ୍ଗଳାଙ୍କର ପୂଜା ପ୍ରତିଷ୍ଠା ଲାଭ କରିଥିଲା । ଏହି ଦେବୀ ଗୋଟିଏ ସ୍ୱତନ୍ତ୍ର ମନ୍ଦିରରେ ମଣ୍ଡପ ଉପରେ ଉପବେଶନ ଭଙ୍ଗୀରେ ବିରାଜମାନା । ସେ ଚତୁର୍ଭୁଜା, ଦକ୍ଷିଣ ଭୁଜ ଦ୍ୱୟରୁ ଉପର ଭୁଜରେ ପୂର୍ଣ୍ଣଚନ୍ଦ୍ର, ନିମ୍ନ ଭୁଜରେ ଜପମାଳା, ବାମ ଭୁଜ ଦ୍ୱୟରୁ ଉପର ଭୁଜରେ ପଦ୍ମ କଳିକା ଓ ନିମ୍ନ ଭୁଜ ଗଣନା ମୁଦ୍ରାରେ ଅଛି । ଦେବୀଙ୍କର ଚକ୍ଷୁ ଅର୍ଦ୍ଧନିମୀଳିତ ଓ ମୁଖମଣ୍ଡଳ ପ୍ରସନ୍ନ । ଏହାଙ୍କ ଧ୍ୟାନ ମନ୍ତ୍ରରେ ଅଛି-

''ଗୌରୀଦେହ ସମୁଦ୍‌ଭବାଂଚ ବିଲସତ୍ ଶୀତାଂଶୁ ତୁଲ୍ୟ ପ୍ରଭାମ୍
ପ୍ରାଚୀତଟ ନିବାସିନୀଂ ଭଗବତୀଂ ବନ୍ଦେ ମହାମଙ୍ଗଳାମ୍ ।''

ଅର୍ଗଳ ସ୍ତୋତ୍ରରେ ମଙ୍ଗଳାଙ୍କୁ ଜୟନ୍ତୀ, ମଙ୍ଗଳା, କାଳୀ, ଭଦ୍ରକାଳୀ, କପାଳିନୀ' ବୋଲି ସମ୍ବୋଧନ କରାଯାଇଛି । ଦେବୀ ପୁରାଣ ଓ ବିଷ୍ଣୁ ଧର୍ମୋତ୍ତର ପୁରାଣରେ ମଙ୍ଗଳାଙ୍କର ପ୍ରତିମାର ଯେଉଁ ଲକ୍ଷଣ ବର୍ଣ୍ଣିତ ହୋଇଛି, କାକଟପୁର ମଙ୍ଗଳା ପ୍ରତିମା ତାହାର ବ୍ୟତିକ୍ରମ । ଦେବୀ ପୁରାଣ ଅନୁସାରେ ମଙ୍ଗଳା ଜଟାମୁକୁଟ ମଣ୍ଡିତା, ସିଂହାସନସ୍ଥିତା, ସର୍ବାଭରଣ ଭୂଷିତା, ସୁସ୍ତନୀ, ଚାରୁହାସିନୀ ଦେବୀ । ସେ ଭୁଜରେ ଅକ୍ଷମାଳା, ଶୂଳ, ଦର୍ପଣ, ଶରଖେଟ, ଖଡ୍‌ଗ, ଚନ୍ଦ୍ର ଓ ଚାପ ଧାରଣ କରିଥାନ୍ତି । ତାଙ୍କର ଗୋଟିଏ ଭୁଜ ବରଦ ମୁଦ୍ରାରେ ଥାଏ । କିନ୍ତୁ ବିଷ୍ଣୁ ଧର୍ମୋତ୍ତର ପୁରାଣ ଅନୁସାରେ ସେ, ଚତୁର୍ଭୁଜା ଓ ସିଂହ ବାହନା । ସେ ଅକ୍ଷସୂତ୍ର, ଶୂଳ, ପଦ୍ମ ଓ କୁଣ୍ଡୀ ଧାରଣ କରିଥାନ୍ତି । ଏହି ବର୍ଣ୍ଣନାରୁ ମଙ୍ଗଳାଙ୍କୁ ସମର ଦେବୀ ବୋଲି

ଗ୍ରହଣ କରାଯାଇପାରେ । ମାତ୍ର ଦେବୀ ଭାଗବତ ଓ ବ୍ରହ୍ମ ବୈବର୍ତ୍ତ ପୁରାଣରେ ତାଙ୍କୁ 'ଯୋଷିତାଂ' ଇଷ୍ଟ ଦେବତା ବୋଲି ବର୍ଣ୍ଣନା କରାଯାଇଛି ।

ସାରଳା ଦାସଙ୍କ ବିଲଙ୍କା ରାମାୟଣ ଓ ଚଣ୍ଡୀ ପୁରାଣରେ ଅଛି ଦେବୀ ଦୁର୍ଗା ମହିଷାସୁରକୁ କୌଣସି ପ୍ରକାରେ ବଧ କରିବାକୁ ସମର୍ଥ ହୋଇପାରୁ ନଥିବା ଅବସ୍ଥାରେ, ଦେବୀଙ୍କର ମନୋରମା ନାମକ ଜଣେ ସହଚରୀ, ଦେବୀଙ୍କୁ ବିବସନା କାଳୀ ରୂପ ଧାରଣ କଲେ ମହିଷାସୁରକୁ ବଧ କରିବା ସମ୍ଭବ ହେବ ବୋଲି ସୂଚନା ଦେଇଥିଲେ । ଦେବୀ ତଦନୁସାରେ ମହିଷାସୁର ଉପରେ ବିଜୟ ଲାଭ କରିଥିଲେ । ମହିଷ ମର୍ଦ୍ଦିନୀ ଦୁର୍ଗା ମନୋରମାଙ୍କୁ ସର୍ବମଙ୍ଗଳା ନାମ ଦେଇଥିଲେ ବୋଲି ସାରଳା ଦାସଙ୍କ ଚଣ୍ଡୀ ପୁରାଣରେ ଉଲ୍ଲେଖ ଅଛି -

ସମସ୍ତ ସୁଲଭ ହେବ ତବ ପରସାଦେ
ସର୍ବ ମଙ୍ଗଳା ନାମ ତୋହର ହେଉ ହାଦେ ।

ଓଡ଼ିଶାର ଲୋକ ସମାଜରେ ମଙ୍ଗଳାଙ୍କର ଅନେକ ଗୁଡ଼ିଏ ଓଷାବ୍ରତ ପାଳିତ ହୁଏ । ଶ୍ରୀକ୍ଷେତ୍ର ପୁରୀ ଯିବା ବାଟରେ ବାଟମଙ୍ଗଳା ଅଛନ୍ତି । ଶ୍ରୀମନ୍ଦିର କଳ୍ପବଟ ତଳେ ସର୍ବମଙ୍ଗଳାଙ୍କର ମନ୍ଦିର ଅଛି । କୈବର୍ତ୍ତମାନେ ନାବ ପୂଜା ଓ ଚଇତି ଘୋଡ଼ା ନାଚ ଖେଳେ ବାସୁଳୀଙ୍କର ବନ୍ଦନା ପ୍ରସଙ୍ଗରେ ଗାଇଥାନ୍ତି -

"ଗାଁ ବାସୁଳୀ କି          ସିଦ୍ଧ ବାସୁଳୀ ମା
          କାକଟପୁରେ ତୋ ଘର
କାହୁଁ ଆଣି ଦେବି          ଶ୍ୱେତ ମନ୍ଦାର ମା
          ସୋଲ ଫୁଲେ ବିଜେ କର ।"

ନବ କଳେବର ସମୟରେ ଦଇତାମାନେ ଦାରୁ ଅନ୍ୱେଷଣରେ ଯିବା ପୂର୍ବରୁ କେଉଁ ଦିଗକୁ ଯାତ୍ରା କଲେ ଫଳପ୍ରଦ ହେବ, ଜାଣିବା ପାଇଁ ମଙ୍ଗଳାଙ୍କ ଉଦ୍ଦେଶ୍ୟରେ ଦେଉଳି ମଠଠାରେ ଅଧିଆ ପଡ଼ନ୍ତି । ପ୍ରତ୍ୟେକ ଗ୍ରାମରେ ଗ୍ରାମଦେବୀ ଭାବରେ ମଙ୍ଗଳାଙ୍କର ପୂଜା ହୁଏ । ବିବାହ ପ୍ରଭୃତି ମଙ୍ଗଳ କାର୍ଯ୍ୟ ଆରମ୍ଭ ପୂର୍ବରୁ ତାଙ୍କ ଠାରେ ପୂଜା କରାଯାଏ । ଏହିପରି ମଙ୍ଗଳାଙ୍କ ପୂଜା ଓଡ଼ିଶାର ଧର୍ମ ପରମ୍ପରାରେ ପ୍ରତିଷ୍ଠା ଲାଭ କରିଛି ।

ପଦ୍ମ ପୁରାଣ (ସୃଷ୍ଟି ଖଣ୍ଡ)ରେ ବିଭିନ୍ନ ସ୍ଥାନରେ ଅଧିଷ୍ଠିତା ଦେବୀମାନଙ୍କର ଯେଉଁ ଦୀର୍ଘ ତାଲିକା ଅଛି, ସେଥିରେ ସେ ଗଙ୍ଗାରେ ମଙ୍ଗଳା ଏବଂ

ପୁରୁଷୋତ୍ତମରେ ବିମଳା ଭାବରେ ପୂଜିତା ବୋଲି ଉଲ୍ଲେଖ ଅଛି । ପୁଣି ଦେବୀ ଭାଗବତରେ ଅଛି-

ଗୟାୟାଂ ମଙ୍ଗଳାପ୍ରୋକ୍ତା ବିମଳା ପୁରୁଷୋତ୍ତମେ ।

**ବିମଳା :**

ଶ୍ରୀମନ୍ଦିର ବେଢ଼ାର ନୈଋତ କୋଣରେ ରୋହିଣୀ କୁଣ୍ଡର ପଶ୍ଚିମକୁ ବିମଳାଙ୍କ ମନ୍ଦିର । ମତ୍ସ୍ୟ ପୁରାଣ, କପିଳ ସଂହିତା, ସ୍କନ୍ଦ ପୁରାଣରେ ବିମଳାଙ୍କର ଉଲ୍ଲେଖ ମିଳେ । ଅନ୍ନଭୋଗ ବିମଳାଙ୍କ ଠାରେ ସମର୍ପଣ ହେବା ପରେ ମହାପ୍ରସାଦ ହୁଏ । ଜଗନ୍ନାଥଙ୍କୁ ବିମଳାଙ୍କର ଭୈରବ ବୋଲି ବର୍ଣ୍ଣନା କରାଯାଇଛି । ଦଶହରା ବେଳେ ବିମଳାଙ୍କର ଷୋଳ ପୂଜା ହୁଏ । ଗୋପନରେ ପଶୁବଳି ପଡ଼େ । ଜଗନ୍ନାଥଙ୍କ ନିତି ଶେଷ ହେବା ପରେ ନିଶାର୍ଦ୍ଧରେ ଏହି ବଳି ପଡ଼େ । ଆମିଷ ରନ୍ଧା ହୋଇ ଭୋଗ ହୁଏ । ଶ୍ରୀମନ୍ଦିର ବେଢ଼ାରେ ଥିବା ଏହି ବିମଳାଙ୍କର ମୂଳ ମନ୍ଦିର ପ୍ରାଚୀନ ବୋଲି ମନେହୁଏ । ମାତ୍ର ଏହାର ମୁଖଶାଳା, ଭୋଗମଣ୍ଡପ ପରବର୍ତ୍ତୀ କାଳରେ ନିର୍ମିତ ହୋଇଛି । ଯାଜପୁରର ବିରଜା ଓ ପୁରୁଷୋତ୍ତମର ବିମଳା ସତ୍ତ୍ୱଗୁଣସଂପନ୍ନା ବୋଲି ପୁରାଣ ଓ ପରମ୍ପରାରେ ପ୍ରକାଶ ପାଇଥିଲେ ମଧ୍ୟ ସେଠାରେ ପ୍ରଚଳିତ ବଳି ପ୍ରଥା ଏ କ୍ଷେତ୍ରରେ ଭ୍ରମ ସୃଷ୍ଟି କରେ । ପୁଣି ବିରଜାଙ୍କ ପୀଠରେ ଯେପରି ଭୈରବୀଙ୍କ ନିକଟରେ ବଳି ଦିଆଯାଏ, ବିମଳାଙ୍କ ଠାରେ ସେହିପରି ହୁଏନାହିଁ । ବିମଳାଙ୍କ ଷୋଳ ପୂଜାରେ ରଥ ବ୍ରାହ୍ମଣମାନେ ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି । ମହାପ୍ରଭୁଙ୍କ ପହଡ଼ ପଡ଼ିବା ପରେ ପଶ୍ଚିମ ଦ୍ୱାର ବାଟେ ବଳି ପଶୁ ମନ୍ଦିର ବେଢ଼ାକୁ ଆଣିବାର ବ୍ୟବସ୍ଥା ହୁଏ । ଶାକ୍ତ ମତରେ ପୂଜା ବିଧି ଅନୁଷ୍ଠିତ ହୁଏ । ବ୍ରାହ୍ମଣ ପୂଜକ ବିମଳାଙ୍କ ସମ୍ମୁଖରେ ଥିବା ସିଂହ ନିକଟରେ ବଳି ମନ୍ତ୍ର ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ କଟେଇତ ପଶୁକୁ ଛେଦନ କରେ ଏବଂ ଗୋଟିଏ ପାତ୍ରରେ ତା'ର ରକ୍ତକୁ କଦଳୀ ଓ ଅରୁଆ ଚାଉଳରେ ମିଶାଇ ବିମଳାଙ୍କ ସମ୍ମୁଖରେ ବଢ଼ାଯାଏ । ଅବଶ୍ୟ ଆଶ୍ୱିନ ମାସର ସପ୍ତମୀ, ମହାଷ୍ଟମୀ, ମହାନବମୀ ତିଥିରେ ବିମଳାଙ୍କୁ ଭଦ୍ରକାଳୀ ରୂପେ ପୂଜା କରାଯାଏ । ଏହି ତିନିଦିନ ମତ୍ସ୍ୟବଳି ମଧ୍ୟ ଦିଆଯାଏ । ବଳି ପରେ ଚୂନ ପାଣି ଛିଞ୍ଚି ମନ୍ଦିର ଶୁଦ୍ଧ କରାଯାଏ ।

ବିମଳା ଚତୁର୍ଭୁଜା, ଦକ୍ଷିଣ ଉର୍ଦ୍ଧ୍ୱଭୁଜରେ ସ୍ଫଟିକମାଳା, ନିମ୍ନ ଭୁଜରେ ଅଭୟ ବରଦା ମୁଦ୍ରା, ବାମ ଉର୍ଦ୍ଧ୍ୱ ଭୁଜରେ ନାଗଫାଶ, ବାମ ନିମ୍ନ ହସ୍ତରେ ଅମୃତ

କଳସ ଅଛି ବୋଲି ପୂଜକଙ୍କ ଠାରୁ ଶୁଣାଯାଏ । ସେ ମହା ସରସ୍ୱତୀ ବୋଲି ଗୋଟିଏ ମତ ପ୍ରଚଳିତ । ତାଙ୍କର ଗୋଟିଏ ଧ୍ୟାନ ମନ୍ତ୍ରରେ ଅଛି-

'ଦେବୀଂ ବ୍ରହ୍ମ ଶିବେନ୍ଦ୍ର ବନ୍ଦ୍ୟ ବିମଳାଂ ବାଗୀଶ୍ୱରୀଂ ଚିନ୍ତୟେ ।'

ସେ କେବଳ ଆଶ୍ୱିନ ସପ୍ତମୀ, ମହାଷ୍ଟମୀ ଓ ମହା ନବମୀ ବ୍ୟତୀତ ଅନ୍ୟ ତିଥିରେ ମହା ସରସ୍ୱତୀ, ମହାଲକ୍ଷ୍ମୀ ଭାବରେ ସତ୍ତ୍ୱଗୁଣ ସମନ୍ୱିତା ଦେବୀ ଭାବରେ ପୂଜିତା ହୁଅନ୍ତି ବୋଲି କୁହାଯାଏ । ମାତ୍ର ତାଙ୍କର ପୂଜା ନୈବେଦ୍ୟ ଏକାକ୍ଷରୀ ଭୁବନେଶ୍ୱରୀ ' ମନ୍ତ୍ରରେ କରାଯାଏ । ପୁଣି ଜଗନ୍ନାଥଙ୍କୁ ଭୈରବ ଓ ବିମଳାଙ୍କୁ ତାଙ୍କର ଭୈରବୀ ବୋଲି କୁହାଯାଉଥିଲେ ମଧ୍ୟ ଏହି ପ୍ରସଙ୍ଗରେ ତନ୍ତ୍ର ଚୂଡ଼ାମଣିର-

"ଉତ୍କଳେ ନାଭିଦେଶଶ୍ଚ ବିରଜା କ୍ଷେତ୍ରମୁଚ୍ୟତେ
ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବ ।"

'ସା ଦେବୀ' ବୋଲି ଯାହାଙ୍କୁ କୁହାଯାଇଛି, ସେ ବିମଳା, ବିରଜା ନୁହନ୍ତି ତ ? ବିମଳା ଓ ବିରଜା ଏକ ଦେବୀ, ଦୁଇ ପୀଠରେ ଭିନ୍ନ ରୂପରେ ବିରାଜମାନ କି ? ମନରେ ଏପରି ପ୍ରଶ୍ନ ଉଠେ, ସଂଶୟ ଉପୁଜେ ।

**ସାରଳା :**

ଯାଜପୁର ବିରଜା ପୀଠ ଠାରୁ ପ୍ରାୟ ଷାଠିଏ ମାଇଲ ଦୂରରେ ସ୍ୱାରଳା ଦେବୀଙ୍କର ମନ୍ଦିର । କାଳୀ ନାଗ (ସାରୋଳ ଗ୍ରାମର ଅଂଶବିଶେଷ)ର ସିଦ୍ଧେଶ୍ୱର ପରିଡ଼ା ସ୍ୱାରଳା ଠାକୁରାଣୀଙ୍କ କୃପାରୁ ଚଣ୍ଡୀପୁରାଣ ଓ ମହାଭାରତ ଆଦି ଗ୍ରନ୍ଥ ଲେଖି ଖ୍ୟାତି ଅର୍ଜିଛନ୍ତି । ପୁଣି, ସେ ନିଜକୁ ସାରଳା ଠାକୁରାଣୀଙ୍କ ଦାସ ଭାବେ ସାରଳା ଦାସ ନାମରେ ପରିଚିତ କରାଇଛନ୍ତି । ତେଣୁ ଓଡ଼ିଆ ସାହିତ୍ୟରେ ସାରଳା ଦାସ ଓ ସ୍ୱାରଳା ଠାକୁରାଣୀ ସୁପରିଚିତ । ଏବେ କନକପୁର ଠାରେ ଯେଉଁ ସାରଳା ମନ୍ଦିର ଅଛି, ତାହା ଏତେ ପ୍ରାଚୀନ ନୁହେଁ । କିନ୍ତୁ ସେହି ମନ୍ଦିର ସାରଳା ଠାକୁରାଣୀଙ୍କ ପ୍ରାଚୀନ ପରମ୍ପରାର ଧାରକ । ପାଞ୍ଚ ଏକର ପରିମିତ ଜମି ଉପରେ ଏହି ମନ୍ଦିରଟି ନିର୍ମିତ ହୋଇଛି । ଠାକୁରାଣୀଙ୍କର ମଧ୍ୟ ଯଥେଷ୍ଟ ଭୂ-ସଂପତ୍ତି ଅଛି । ଏହା ଗୋଟିଏ ଟ୍ରଷ୍ଟ ବୋର୍ଡ଼ ଦ୍ୱାରା ପରିଚାଳିତ । ଏହି ମନ୍ଦିରର ଗର୍ଭଗୃହର ମଣ୍ଡପରେ ପାଷାଣ ନିର୍ମିତ ଅଷ୍ଟଭୁଜା ମୂର୍ତ୍ତିଙ୍କ ସହିତ ଚତୁର୍ଭୁଜା ଦେବୀ ସାରଳାଙ୍କର ବିଜେ ପ୍ରତିମା । ସ୍ୱାରଳା ଠାକୁରାଣୀ ମାଘ ଶୁକ୍ଳ ପଞ୍ଚମୀ ବା

ଶ୍ରୀପଞ୍ଚମୀ ତିଥିରେ ମହାସରସ୍ୱତୀ, ଦଶହରା ସମୟରେ ସିଂହବାହିନୀ ଦୁର୍ଗା ଏବଂ ଚତୁର୍ଦ୍ଦଶୀରେ କାଳୀ ରୂପରେ ପୂଜିତା ହୁଅନ୍ତି । ଆଶ୍ୱିନ ମାସରେ ବିମଳା, ବିରଜା ପ୍ରଭୃତି ଦେବୀ ପୀଠ ପରି ଏଠାରେ ମଧ୍ୟ ମୂଳାଷ୍ଟମୀ ଠାରୁ ଦଶହରା ପର୍ଯ୍ୟନ୍ତ ଷୋଳଦିନ ବ୍ୟାପୀ ପୂଜାବିଧି ଅନୁଷ୍ଠିତ ହୁଏ ।

ଗୋଟିଏ ସ୍ଥାନୀୟ କିମ୍ବଦନ୍ତୀ ଅନୁସାରେ ସାରଳା ପରଶୁରାମଙ୍କ ଦ୍ୱାରା ପ୍ରତିଷ୍ଠିତା ଓ ପୂଜିତା ଦେବୀ । ତେଣୁ ସମର ଓ ସମର ପରମ୍ପରା ସହିତ ତାଙ୍କର ସଂପର୍କକୁ ଆଡ଼େଇ ଦେଇ ତାଙ୍କ ସମ୍ବନ୍ଧରେ ଆଲୋଚନା କରିହେବ ନାହିଁ । ତା ସହିତ ଦେବୀ ଶୂଦ୍ରମୁନି ସାରଳା ଦାସଙ୍କୁ ସାକ୍ଷାତ ଦେବା ସଙ୍ଗେ ସଙ୍ଗେ ତାଙ୍କୁ ପୁତ୍ରସମ ଶ୍ରଦ୍ଧା ଓ କବିତ୍ୱ ଶକ୍ତି ଦେଇଥିବାର, ଏପରିକି ତାଙ୍କ ହାତରେ ମହାଭାରତ ଲେଖାଇ ଦେବାର କିମ୍ବଦନ୍ତୀ ପ୍ରଚଳିତ ଅଛି । ଏହି ପ୍ରସଙ୍ଗରେ କବିଙ୍କର ସ୍ୱୀକୃତିରୁ ଜଣେ ବ୍ରାହ୍ମଣେତର ଜାତିର ଭକ୍ତ ପ୍ରତି ଦେବୀଙ୍କର ସ୍ୱତନ୍ତ୍ର କରୁଣାର ସଂକେତ ମିଳେ ।

ପୁରୀ ଶ୍ରୀମନ୍ଦିର, ଭୁବନେଶ୍ୱର ଶ୍ରୀଲିଙ୍ଗରାଜ ମନ୍ଦିର, କପିଳେଶ୍ୱର ପ୍ରସାଦରେ ଶ୍ରୀ କପିଳେଶ୍ୱର ମହାଦେବଙ୍କ ମନ୍ଦିରରେ ବ୍ରାହ୍ମଣ ପୂଜକଙ୍କ ସହିତ ସମାନ ଗୁରୁତ୍ୱ ଥାଇ ବ୍ରାହ୍ମଣେତର ଜାତିର ପୂଜକ ମଧ୍ୟ ନିର୍ଦ୍ଦିଷ୍ଟ ପୂଜା ବିଧି ସଂପନ୍ନ କରନ୍ତି । ଏହି ପରମ୍ପରାର ଅନ୍ୟ ଏକ ଦିଗ ସାରଳାଙ୍କ ପୂଜାବିଧିରେ ବ୍ରାହ୍ମଣ ଓ ରାହୁଳମାନଙ୍କର ଅଂଶ ଗ୍ରହଣ ଏବଂ ରାହୁଳମାନଙ୍କର ସ୍ୱତନ୍ତ୍ର ଅଧିକାର ।

ପୁରାଣରେ ଅଛି ପରଶୁରାମଙ୍କର ପିତା ଯମଦଗ୍ନିଙ୍କୁ ସହସ୍ରାର୍ଜ୍ଜୁନ ଚରମ ଔଦ୍ଧତ୍ୟ ଓ ନୃଶଂସତାର ସହିତ ହତ୍ୟା କରିବା ଦ୍ୱାରା ପରଶୁରାମଙ୍କ ହୃଦୟରେ କ୍ରୋଧାଗ୍ନି ଜାଗ୍ରତ କରାଇଥିଲେ । ଏହା ଥିଲା ସମଗ୍ର କ୍ଷତ୍ରିୟ କୁଳର ବିପତ୍ତି । ଏହି ପ୍ରତିହିଂସାରେ ପରଶୁରାମ ଧରଣୀକୁ କ୍ଷତ୍ରିୟ ରୁଧିରରେ ପ୍ଳାବିତ କରିଥିଲେ । ପୁଣି, ଏହି ପାପର ପ୍ରାୟଶ୍ଚିତ ପାଇଁ ସମଗ୍ର ଭାରତ ଭ୍ରମଣ କରି ଯେଉଁଠାରେ ପୁଣ୍ୟତୋୟା ତୀର୍ଥ ବାରି ଦେଖିଛନ୍ତି, ସେଠାରେ ସ୍ନାନ ଓ ତର୍ପଣ କରିଛନ୍ତି । ସେତେବେଳେ କନକପୁର ନିକଟବର୍ତ୍ତୀ ଅଞ୍ଚଳରେ ଏକ ନଦୀ ପ୍ରବାହିତ ହେଉଥିଲା, ଯାହାର ନାମ ଥିଲା ଚନ୍ଦ୍ରଭାଗା । ପରଶୁରାମ ସେହି ନଦୀ କୂଳରେ ଥିବା ଗୋଟିଏ ବଟ ତରୁ ତଳେ ଆପଣାର ଧନୁଟି ରଖିଦେଇ ସ୍ନାନ କରିଗଲେ । ସାଧାରଣତଃ ତାଙ୍କ ଧନୁର ଭାରରେ ମାଟି ଦବିଯାଏ । ମାତ୍ର ଏଠାରେ

ସେପରି ହେଲାନାହିଁ । ତେଣୁ ସେ ଏହି ସ୍ଥାନର ସ୍ୱତନ୍ତ୍ର ମହିମା ଥିବା ଅନୁଭବ କରି, ଅନୁସନ୍ଧାନ କଲେ । ଯୋଗକୁ ସେଠାରେ ଗୋଟିଏ ପାଷାଣୀ ଦେବୀ ପ୍ରତିମା ପାଇ ତାଙ୍କୁ ପ୍ରତିଷ୍ଠା କରି ପୂଜା କଲେ । ସେହି ଦେବୀ ହେଉଛନ୍ତି ସାରଳା । ସେହି ସମୟରେ ଏହି ଅଞ୍ଚଳଟି ଶବର ଅଧ୍ୟୁଷିତ ଥିଲା । ପରଶୁରାମ ଜଣେ ଶବରଙ୍କୁ ଦେବୀଙ୍କ ପୂଜାର ଦାୟିତ୍ୱ ଦେଇ ତୀର୍ଥାଟନରେ ଅନ୍ୟତ୍ର ଚାଲିଗଲେ । ପୁଣି ମଧ୍ୟ ଶୁଣାଯାଏ, ସେ ଏଠାରେ ଗୋଟିଏ ଶବର କନ୍ୟାକୁ ବିବାହ କରିଥିଲେ ଏବଂ ତା'ର ପୁତ୍ର ରାହୁଳମାନେ ଦେବୀଙ୍କର ପୂଜା ଅଧିକାର ସେହି ସୂତ୍ରରୁ ଲାଭ କରିଛନ୍ତି । ପରବର୍ତ୍ତୀ କାଳରେ ବ୍ରାହ୍ମଣ ପୂଜକ ନିଯୁକ୍ତ ହୋଇଛନ୍ତି ଏବଂ ପୂଜା ପରମ୍ପରାରେ ଆର୍ଯ୍ୟ ଓ ଆର୍ଯ୍ୟେତର ଆଚାର ପରମ୍ପରାର ସମନ୍ୱୟ ଘଟିଛି । ସୁତରାଂ ସାରଳା ଠାକୁରାଣୀ ପରଶୁରାମଙ୍କ ଦ୍ୱାରା ଅଧିଷ୍ଠିତା ଦେବୀ, ଅଥଚ ଶାବର ବା ଅଷ୍ଟ୍ରିକ ପରମ୍ପରା ସହିତ ତାଙ୍କର ସମ୍ବନ୍ଧ । ଏହି କିମ୍ବଦନ୍ତୀରୁ ଏପରି ଅନୁମାନ ହୁଏ ।

**ଭଗବତୀ :**

ଅସୁର ପୂଜିତା ଦେବୀ କହିଲେ ବହୁ ପ୍ରାଚୀନ ଦେବୀଙ୍କୁ ବୁଝାଏ । ଓଡ଼ିଶାରେ ବାଣାସୁର ଶିବ ଓ ଶକ୍ତି ପୂଜା କରୁଥିବାର ଯେତେ ଯେତେ କିମ୍ବଦନ୍ତୀ, ଯେତେ ଯେତେ ଜାଗାରେ ଶୁଣାଯାଏ ତା' ଭିତରୁ ଚିଲିକା ନିକଟବର୍ତ୍ତୀ ଶାଳିଆ ନଦୀର ତୀରରେ ଥିବା ବାଣପୁର ଓ ଭଗବତୀ ପୀଠର ସ୍ୱତନ୍ତ୍ର ମର୍ଯ୍ୟାଦା ଅଛି । ଦେବୀ ଭଗବତୀ ବାଣାସୁର ଦ୍ୱାରା ପୂଜିତା ଥିଲେ ବୋଲି କିମ୍ବଦନ୍ତୀ ପ୍ରଚଳିତ । ବାଣାସୁର ଓ ତା' ରାଜ୍ୟର ପତନ ପରେ ଦେବୀ ଭୂଗର୍ଭରେ ଥିଲେ । ପରବର୍ତ୍ତୀ କାଳରେ ବାଣପୁର ରାଜା ଦେବୀଙ୍କର ସନ୍ଧାନ ପାଇ ତାଙ୍କୁ ପ୍ରତିଷ୍ଠା କରି ପୂଜା ଧିବାର ବିଧି ବ୍ୟବସ୍ଥା କରିଥିଲେ । ବାଣପୁରର ଜଣେ ସ୍ଥାନୀୟ କବି ଲେଖିଛନ୍ତି -

ଶକ୍ତିପୀଠ ଲଲାଟ      ମୁକୁଟ ମଣି ଶ୍ରେଷ୍ଠ
ପ୍ରକୃତି ରାଣୀ ଗନ୍ତାଘର,
ଘଣ୍ଟଶିଳା ଅଚଳ      ପାଦ ପଖାଳି ତାର
ବହଇ ଶାଳାବତୀ ନୀର,
ସେ ସ୍ରୋତସ୍ୱତୀ
ଶାଳ ଗହନ ବନ ଭେଦି ।

ଲୋକ ମୁଖ ପ୍ରଚାର     ନୁହଇ, ସତ୍ୟଗିର

ପୁରାଣ ଇତିହାସ କଥା,

ଭକ୍ତ ଗଣରେ ସାର     ବାଣା ନାମେ ଅସୁର

ଶାସଇ ରାଜ୍ୟ ବାଣପୁର,

ସେ ମହାବୀର

କୃପାରୁ ଭଗବତୀଙ୍କର ।

ଜଗତି ସେ ଶୋଲରୀ     ଭାଲେରୀ ଗିରିଦରୀ

କମ୍ପଇ ପ୍ରତାପେ ତାହାର ।

କିମ୍ବଦନ୍ତୀ ଅନୁସାରେ ଗୋଟିଏ କ୍ଷୀର କୋଳି ଗଛମୂଳେ ଭଗବତୀ ବିଜେ କରିଥିଲେ । ସେଠାରେ ତାଙ୍କୁ ଛାଗ ମହିଷାଦି ବଳି ଦିଆଯାଉଥିଲା । ନରବଳି ମଧ୍ୟ ଦିଆଯାଉଥିଲା । ପରବର୍ତ୍ତୀ କାଳରେ ରାଠୋର ବଂଶର ରାଜା ଜଗନ୍ନାଥ ହରିଚନ୍ଦନଙ୍କ ସମୟରେ ବର୍ତ୍ତମାନର ମୂଳ ମନ୍ଦିରଟି ନିର୍ମିତ ହୋଇଥିଲା । ସେ ମନ୍ଦିରର ପୂଜାବିଧି, ଛତିଶା-ନିଯୋଗ ବ୍ୟବସ୍ଥା ଖଞ୍ଜିଥିଲେ । ପରବର୍ତ୍ତୀ କାଳରେ ଏହି ମନ୍ଦିରର ଅନ୍ୟାନ୍ୟ ଅଂଶମାନ ନିର୍ମିତ ହୋଇଛି ।

ଭଗବତୀ ଅଷ୍ଟଭୁଜା । ଏହି ମନ୍ଦିରର ନାଟ ମଣ୍ଡପରେ ବିରଜାଇ ଠାକୁରାଣୀଙ୍କ ବିଜେ ପ୍ରତିମା 'କାଠି' ଆକାରରେ ରହିଥିବା ବିଶେଷ ପ୍ରଣିଧାନଯୋଗ୍ୟ । ଭଗବତୀଙ୍କର ବିଜେ ପ୍ରତିମା ମଧ୍ୟ 'କାଠି' । ଏହି 'କାଠି' ଠାକୁରାଣୀଙ୍କର ଯନ୍ତ୍ର ବୋଲି କୁହାଯାଏ । 'କାଠି' ଠାକୁରାଣୀଙ୍କୁ ପ୍ରତି ମଙ୍ଗଳବାର ଦିନ ନଚାଇ ନଚାଇ ଭଗବତୀଙ୍କ ମନ୍ଦିରକୁ ଅଣାଯାଇ ଆମିଷ ଭୋଗ ଅର୍ପଣ କରାଯାଏ । ଏହି ଯନ୍ତ୍ର ପ୍ରତିମା ଧାତୁ ନିର୍ମିତ । 'କାଠି' ଠାକୁରାଣୀ ପ୍ରତ୍ୟେକ ଯାନି ଯାତ୍ରାରେ ଭ୍ରମଣ ପାଇଁ ବାହାରନ୍ତି । । ଭଗବତୀଙ୍କର ଅନ୍ୟ ଏକ ବିଜେ ପ୍ରତିମା ଚତୁର୍ଭୁଜା କନକ ଦୁର୍ଗା । ସେ ଦୁର୍ଗୋତ୍ସବ ପର୍ବ ବ୍ୟତୀତ ଅନ୍ୟ ପର୍ବରେ ବାହାରକୁ ଆସନ୍ତି ନାହିଁ । ଅନ୍ୟାନ୍ୟ ଦେବୀ ପୀଠ ପରି ଭଗବତୀଙ୍କ ଠାରେ ଷୋଡ଼ଶ ଦିନ ବ୍ୟାପୀ ଦୁର୍ଗୋତ୍ସବ ପାଳିତ ହୁଏ । କିନ୍ତୁ ଏଠାରେ ନରବଳି ପ୍ରଥା ପ୍ରତୀକ ରୂପେ 'ବଳିଜେନା' ପରମ୍ପରା ପୁରୁଷାନୁକ୍ରମେ ଚଳି ଆସୁଛି । 'ବଳିଜେନା' ଶାରଦୀୟ ଦୁର୍ଗୋତ୍ସବ ସମୟରେ ନିଜେ ବଳି ହେବା ପାଇଁ ଉଦ୍ଦିଷ୍ଟ । ଭଗବତୀଙ୍କ ନିକଟରେ ରାତ୍ରିରେ ଛାଗ ମହିଷାଦି ବଳି ପଡ଼ିବା ପରେ 'ବଳିଜେନା' ମୃତ ପ୍ରାୟ ଦେବୀଙ୍କ

ସମ୍ମୁଖରେ ପଡ଼ିରହେ । ତା'ର ଚେତନା ନଥାଏ । ପତି ବଳି ପଡ଼ିଛନ୍ତି ବୋଲି ତା'ର ସ୍ତ୍ରୀ ମଧ୍ୟ ପ୍ରତିବର୍ଷ ସେହିଦିନ ବିଧବା ହୋଇ ବୈଧବ୍ୟ ବିଧି ପାଳନ କରିବାର ପ୍ରଥା ଚଳି ଆସୁଛି । ଏଥିପାଇଁ ବଳି ଢେନା ବଂଶ ଜାଗିର ଜମି ଭୋଗ କରନ୍ତି । ଏହା ଅବଶ୍ୟ ଅଭିନୟ ପ୍ରାୟ ହେଉଛି, ତଥାପି ଏହା ବଳି ପ୍ରଥାର ଐତିହାସିକତାର ପ୍ରମାଣ । ଭଗବତୀଙ୍କ ଠାରେ ଦଶହରା ବ୍ୟତୀତ ଅନେକ ପର୍ବ ପର୍ବାଣୀ ପାଳିତ ହୁଏ । ଏଠାରେ ମଧ୍ୟ ଆର୍ଯ୍ୟ ଓ ଅସୁର ପରମ୍ପରାର ସମନ୍ୱୟ ଲକ୍ଷ୍ୟ କରିବା କଷ୍ଟକର ନୁହେଁ ।

କ୍ଷୀର କୋଳି ଗଛମୂଳେ ଭଗବତୀଙ୍କର ପୂଜା ହେଉଥିଲା, ଏହା କିମ୍ବଦନ୍ତୀ କହେ ସିନା କିନ୍ତୁ ଠାକୁରାଣୀଙ୍କ ନାଁ ସହିତ ବୃକ୍ଷ ନାମ ଯୋଡ଼ି ହୋଇ ପାରିନାହିଁ । ବାଣପୁର ଠାରୁ ଖୋର୍ଦ୍ଧାର ବରୁଣେଇ ଖୁବ୍ ଦୂର ନୁହେଁ । ଗୋଟିଏ ପାହାଡ଼ର ବରୁଣ ଗଛମୂଳେ ଏହି ଠାକୁରାଣୀ ପୂଜା ପାଉଥିବାରୁ ତାଙ୍କର ନାମ ହୋଇଛି ବରୁଣେଇ । ସେହିପରି ଶିମିଳି ଗଛ ତଳେ ଉଭା ହୋଇଥିବା ଦେବୀ ହେଲେ ସମଲେଇ । ସେ ସମଗ୍ର ପଶ୍ଚିମ ଓଡ଼ିଶାରେ ଆରାଧିତା ଦେବୀ । ମଙ୍ଗଳାଙ୍କୁ 'ସମ୍ବଲପୁରେ ରହିଲୁ ନାମ ସମଲାଇ' କହିଦେଲେ ଯଥେଷ୍ଟ ହେଉନାହିଁ । ତାଙ୍କର ପରମ୍ପରା ସ୍ୱତନ୍ତ୍ର ।

**ସମଲେଇ :**

ଜଗବନ୍ଧୁ ସିଂହ ପ୍ରାଚୀନ ଉତ୍କଳ ପୁସ୍ତକରେ ସମ୍ବଲପୁର ଓ ସମଲେଇଙ୍କ ସମ୍ବନ୍ଧରେ ଲେଖିଛନ୍ତି "ସମଲେଇ ଠାକୁରାଣୀଙ୍କର ନାମାନୁସାରେ ଏହାର ନାମ ସମ୍ବଲପୁର ହୋଇଛି । ଶିମିଳି ଗଛମୂଳରେ ଠାକୁରାଣୀ ପ୍ରତିଷ୍ଠିତ ହୋଇଥିବାରୁ ତାଙ୍କର ନାମ ସମଲେଇ ।" କିନ୍ତୁ ସମ୍ବଲପୁର ସହରରେ ଠକୁରାଣୀଙ୍କର ଭବ୍ୟ ମନ୍ଦିର ଥିଲେ ମଧ୍ୟ ସେ କେବଳ ସମ୍ବଲପୁର ସହରର ଦେବୀ ନୁହନ୍ତି । ଶିବ ପ୍ରସାଦ ଦାସ 'ସମ୍ବଲପୁର ଇତିହାସ'ରେ ଲେଖିଛନ୍ତି - " ସମ୍ବଲପୁର ଜିଲ୍ଲାର ପ୍ରତି ଗ୍ରାମରେ ସମଲାଇ ଅଧିଷ୍ଠିତା ହୋଇଅଛନ୍ତି । ତାଙ୍କର ପାର୍ଶ୍ୱଦେବତା ରୂପେ 'ପିତାବଳି' ବୋଲି ଏକ ଦେବତାଙ୍କର ସ୍ଥାପନା ଦେଖାଯାଏ । ଏହି 'ପିତାବଳି କନ୍ଧ ପ୍ରଭୃତି ଜାତିମାନଙ୍କର 'ପିତା ବୋଲି' ଦେବତା ଅଟନ୍ତି । ଆଦିମ ପନ୍ଥୀର ଅନ୍ୟ ଅନେକ ଦେବତାଙ୍କର ପ୍ରଭାବ ମଧ୍ୟ ସମ୍ବଲପୁର ଆର୍ଯ୍ୟମାନଙ୍କ ମଧ୍ୟରେ ରହିଅଛି ।" ସେ ପୁଣି ଲେଖିଛନ୍ତି - "ସମ୍ବଲପୁର ଜିଲ୍ଲାର ସର୍ବତ୍ର ସମଲେଇଙ୍କ

ସେବାରେ ଆଦିମ ଜାତିର ଲୋକ ନିଯୁକ୍ତ ରହିଅଛନ୍ତି । ସମଲେଇଙ୍କୁ ଅମେଧ୍ୟ ମହିଷ ବଳି ଦିଆଯାଉଥିଲା । ସେ ଆଦିମପନ୍ଥାର ଦେବତା । ମହିଷବଳି ତହିଁର ପ୍ରକୃଷ୍ଟ ପ୍ରମାଣ । ଏବେ ମଧ୍ୟ ଛାଗ ଓ କୁକୁଡ଼ା ବଳି ଦିଆଯାଉଅଛି । ପାଟଣାରେ ପାଟଣେଶ୍ୱରୀ, ସମ୍ବଲପୁରରେ ସମ୍ବଲେଶ୍ୱରୀ, ଚୌହାନ ସମକୁଳର ଦେବତା ରୂପେ ଗୃହୀତ ହୋଇଅଛନ୍ତି । ସମ ଶବ୍ଦରୁ ବ୍ୟୁତ୍ପତ୍ତି କରି ସମ୍ବଲାଇଙ୍କୁ ସୋମଲେଶ୍ୱରୀ କହିବାର ଭ୍ରମ ଅଟେ । ସମ୍ବଲାଇ ସମ୍ବଲପୁରର ପ୍ରତି ଗ୍ରାମର ଉପକଣ୍ଠରେ, ବୃକ୍ଷମୂଳରେ ପ୍ରସ୍ତରମୟୀ ମୂର୍ତ୍ତି ରୂପରେ ପୂଜିତା ହୁଅନ୍ତି ।'' ବଳରାମ ଦେବ (ଖ୍ରୀ.ଅ. ୧୫୪୦-୫୬) ସମଲେଶ୍ୱରୀ ମନ୍ଦିର ନିର୍ମାଣ କରିଥିଲେ ଓ ତାଙ୍କ ପୂଜାବିଧିର ବ୍ୟବସ୍ଥା ଖଞ୍ଜିଥିଲେ । ବର୍ତ୍ତମାନ ସମ୍ବଲପୁରର ସମଲେଶ୍ୱରୀ ମନ୍ଦିରରେ ପୂଜା ପାଉଥିବା ସମଲେଇ ଠାକୁରାଣୀଙ୍କର ଆଖି, ମୁହଁ ଆଦି ତଳକୁ ଗୋଟିଏ ଲମ୍ବା ମୁହଁ ଅଛି । ତାହା ବରାହ ମୁହଁପରି ଦେଖାଯାଏ । ତା' ଉପରେ ଯେଉଁ କିରୀଟ ଅଛି, ତାକୁ ସିନ୍ଦୁର ବୋଳି ଗୋଟିଏ ଠାକୁରାଣୀ ମୂର୍ତ୍ତିରେ ରୂପ ଦିଆଯାଇଛି । ପ୍ରଫେସର ପ୍ରହ୍ଲାଦ ପ୍ରଧାନ ତାଙ୍କର ସମଲେଶ୍ୱରୀ ଓ ଖରମୁଣ୍ଡା ପ୍ରବନ୍ଧରେ ସମଲେଶ୍ୱରୀଙ୍କୁ ଖରମୁଣ୍ଡା ବୋଲି ବର୍ଣ୍ଣନା କରିଛନ୍ତି । ଖର ଅର୍ଥ ଗଧ । ଗଧ ମୁଣ୍ଡ ପରି ତାଙ୍କର ଆକୃତି ବୋଲି ସେ ଲକ୍ଷ୍ୟ କରିଛନ୍ତି । ଅନ୍ୟାନ୍ୟ ଦେବୀପୀଠରେ ଯେପରି ଆଶ୍ୱିନ ମାସର ମହାପାର୍ବଣ ଦଶହରା ପାଳିତ ହୁଏ ସମଲେଶ୍ୱରୀ ମନ୍ଦିରରେ ମଧ୍ୟ ସେହିପରି ପାଳନ କରାଯାଏ । ମାତ୍ର ସମଲେଶ୍ୱରୀ ମୂଳତଃ ଶବରମାନଙ୍କ ଦେବତା । ସେ ପରବର୍ତ୍ତୀ ସମୟରେ ଦୁର୍ଗା ଭାବରେ, ଭଗବତୀ ଭାବରେ ଆରାଧିତା ହୋଇଛନ୍ତି । ସ୍ୱଭାବ କବି ଗଙ୍ଗାଧର ତାଙ୍କର 'ସମଲେଇ ଦେବୀଙ୍କ ପ୍ରତି' କବିତାରେ ଲେଖିଛନ୍ତି -

ଜୟ ମାତଃ ସମଲାଇ ରତ୍ନ କିରୀଟିନୀ,
କବରୀ ଶୋଭିତ ତୋର କେତକୀର ଦଳେ
ଶ୍ୱେତ ଶାନ୍ତ ରୂପେ ହେଉ ତ୍ରିଦଶ ତଟିନୀ
ଧବଳ କୁସୁମ ମାଳା ଲମ୍ବୁଥାଇ ଗଳେ ।

\+ + +

ଜବା ପୁଷ୍ପ ଗଭା ମଧ୍ୟେ ହୀରକର ଭୂଷା
ଚାହିଁ ମୋ ହୃଦୟ ହୁଏ ଆଶା ପଦ୍ମାକର

\+ \+ \+

ତୁହି ଶକ୍ତି ତୁହି ବୁଦ୍ଧି ତୁହି ସରସ୍ୱତୀ
ତୁ ପ୍ରତିଭା ତୁହି ମାଗୋ ଲକ୍ଷ୍ମୀ ସ୍ୱରୂପିଣୀ
ଜଗତ ଜନନୀ ତୁହି ଆଦ୍ୟା ଭଗବତୀ
ସମ୍ପତ୍ତି ଦାୟିନୀ ସର୍ବ ବିପତ୍ତି ନାଶିନୀ ॥

ବଡ଼ ବିଚିତ୍ର ଏହି ଦେବୀମାନଙ୍କର 'ଏକ ଦେବୀ ଭିନ୍ନ ରୂପା' 'ଭିନ୍ନ ଦେବୀ ଏକ ରୂପା' ହେବାର ଲୀଳା । ସର୍ବମଙ୍ଗଳା ସ୍ତୁତିରେ ଯେଉଁଠି ଶାରଳା, ମଙ୍ଗଳା, ବିମଳା, ଚର୍ଚ୍ଚିକାଇ, ବିରଜାଇ ପ୍ରଭୃତିଙ୍କର ଉଲ୍ଲେଖ ଅଛି, ସେହିଠାରେ ମଧ୍ୟ କୁହାଯାଇଛି - 'ପଶ୍ଚିମେ ରହିଲୁ ମା ତୋ ନାମ ହିଙ୍ଗୁଳା' । ମାତ୍ର ଏହି ହିଙ୍ଗୁଳା ମଧ୍ୟ ଆର୍ଯ୍ୟେତର ପରମ୍ପରାର ଦେବୀ ।

**ହିଙ୍ଗୁଳା :**

ତାଳଚେରର ପଶ୍ଚିମରେ ଗୋପାଳ ପ୍ରସାଦ ଗ୍ରାମରେ ହିଙ୍ଗୁଳା ଦେବୀଙ୍କର ଆସ୍ଥାନ । ସେ ଜ୍ୱଳାମୁଖୀ ଅଗ୍ନିବର୍ଣ୍ଣା, ତାଙ୍କର ବାହନ ବ୍ୟାଘ୍ର ବୋଲି ଶୁଣାଯାଏ । ପୂର୍ବେ ଦେବୀ ଏକ ମାଟି ମଣ୍ଡପରେ ରହୁଥିଲେ । ପରେ ତାଙ୍କ ପାଇଁ ଗୋଟିଏ ପକ୍କା ମଣ୍ଡପ ନିର୍ମାଣ କରାଯାଇଛି । ଏହି ଗୋପାଳ ପ୍ରସାଦ ଗ୍ରାମଟି ଏକଦା ନଳ ବଂଶୀ ରାଜାଙ୍କର ଅଧୀନରେ ଥିଲା ଏବଂ ବର୍ତ୍ତମାନ ହିଙ୍ଗୁଳାଙ୍କର ଯେଉଁ 'ଦେହୁରୀ' ପୂଜକ ଅଛନ୍ତି, ସେମାନେ ଏହି ନଳ ବଂଶର ଅବତଂଶ ବୋଲି କୁହାଯାଏ । ତାଳପତ୍ର ପୋଥି ଛୋଟ ଶାଳଗ୍ରାମ ଆକାରର 'ଆଲମ୍' ରୂପରେ ନାଲିକନାରେ ଗୁଡ଼ା ହୋଇ ଦେହୁରୀ ଘରେ ଅଛି । ଚୈତ୍ର ମାସ ପ୍ରଥମ ଗୁରୁବାର ଠାରୁ 'ଦେହୁରୀ' ହବିଷ ପାଳନ କରି ଦେବୀଙ୍କ ମଣ୍ଡପରେ ଅଧିଆ ପଡ଼େ । ସ୍ୱପ୍ନ ଦେଖେ, ଦେବୀ କେବେ କେଉଁ ନିର୍ଦ୍ଦିଷ୍ଟ ସ୍ଥାନରେ ଦେଖାଦେବେ । ସେ ପ୍ରାୟ ମଣ୍ଡପର ପୂର୍ବ ବା ପଶ୍ଚିମ ଦିଗରେ ହିଁ ଦର୍ଶନ ଦିଅନ୍ତି । 'ଦେହୁରୀ' ଦେଖିପାରେ ଦେବୀ ଅଗ୍ନି ରୂପରେ ଚାଲି ଯାଉଛନ୍ତି । ସେ ମନ୍ତ୍ରବଳରେ ତାଙ୍କୁ ଅଟକାଇ ରଖେ । ଚନ୍ଦନ କାଠ ଘିଅ ଆହୁତି ଦିଏ । ନଅଦିନ ଯାଏ ଦେବୀ ଏହିପରି ପୂଜା ଆହୁତି ପାଇ ରହନ୍ତି । ଶେଷଦିନ ପଣା, ପଞ୍ଚାମୃତ ଦେଇ ତାଙ୍କୁ ନିର୍ବାପିତ କରାଯାଏ । ଦେବୀ ସ୍ୱସ୍ଥାନ ଗମନ କରନ୍ତି । ଏହାକୁ କୁହାଯାଏ ଶୀତଳା ପର୍ବ । ଦେବୀଙ୍କ

ଠାରେ ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ ଠାରୁ ଏକ ସପ୍ତାହ ବ୍ୟାପି ଗୋଟିଏ ବଡ଼ ମେଳା ମଧ୍ୟ ବସେ । ବହୁ ଜନ ସାମାଗମ ହୁଏ ।

**ଚର୍ଚ୍ଚିକା :**

ମହାନଦୀ କୂଳରେ ବାଙ୍କୀ ସହର । ସେଠାରେ ଗୋଟିଏ ପାହାଡ଼ ଉପରେ ଦେବୀ ଚର୍ଚ୍ଚିକାଙ୍କ ମନ୍ଦିର । ସେ ବାଙ୍କୀର ଅଧିଷ୍ଠାତ୍ରୀ ଦେବୀ । ସେ ଅଧିଷ୍ଠିତ ପର୍ବତର ନାମ ଚାଚକ ଗିରି । ଝଙ୍କଡ଼ର ସାରିଳାଙ୍କ ସହିତ ପରଶୁରାମଙ୍କ ସମ୍ପର୍କରେ ଯେପରି କିମ୍ବଦନ୍ତୀ ଅଛି, ଏଠାରେ ମଧ୍ୟ ସେହିପରି ପରଶୁରାମଙ୍କ ସହିତ ଚର୍ଚ୍ଚିକାଙ୍କର ସଂପର୍କ ଯୋଡ଼ି ହୋଇଯାଇଛି । କିନ୍ତୁ କିମ୍ବଦନ୍ତୀଟି ଟିକେ ଭିନ୍ନ ।

ପରଶୁରାମ ମାତୃହତ୍ୟା ଅପରାଧରୁ ମୁକ୍ତିଲାଭ କରିବା ପାଇଁ ଏହି ଚାଚକ ଗିରିରେ ତପସ୍ୟା କରି ସିଦ୍ଧିଲାଭ କରିଥିଲେ । ସେତେବେଳେ ଏହି ପର୍ବତର ପାଦ ଦେଶରେ ରେଣୁକା ନାମରେ ଏକ ନଦୀ ପ୍ରବାହିତ ହେଉଥିଲା । ଅବଶ୍ୟ ଏବେ ତା'ର ଚିହ୍ନ ବର୍ଣ୍ଣ ନାହିଁ । ଚର୍ଚ୍ଚିକା ନାବିକ ପୂଜିତା ଦେବୀ ବୋଲି କିମ୍ବଦନ୍ତୀରେ ଖ୍ୟାତିଲାଭ କରିବା ସଙ୍ଗେ ସଙ୍ଗେ ରାଜ ପ୍ରତିଷ୍ଠିତା ଓ ରାଜ ପୂଜିତା ଦେବୀ ଭାବରେ ମଧ୍ୟ ଅଧିଷ୍ଠିତା ହୋଇଛନ୍ତି । ସେ ବାଙ୍କିର ରାଜବଂଶର ଇଷ୍ଟଦେବୀ । ବନଦୁର୍ଗା ମନ୍ତ୍ରରେ ତାଙ୍କର ପୂଜା କରାଯାଏ । ସେ ଅଷ୍ଟଭୁଜା । ଦକ୍ଷିଣ ଭୁଜ ଗୁଡ଼ିକରେ ଖଡ୍‌ଗ, ତ୍ରିଶୂଳ, ସର୍ପ, ଅଙ୍କୁଶ, ଅକ୍ଷମାଳା ଏବଂ ବାମ ହସ୍ତଗୁଡ଼ିକରେ ଖର୍ପରଘିତ କଟାମୁଣ୍ଡ, ଡମ୍ବରୁ, ହସ୍ତର କନିଷ୍ଠ ଆଙ୍ଗୁଠିଟିକୁ ଦାନ୍ତରେ କାମୁଡ଼ିବା ସଙ୍ଗେ ସଙ୍ଗେ ଗୋଟିଏ ଭୁଜରେ ଛିନ୍ନ ମସ୍ତକ ଧାରଣ କରିଛନ୍ତି । ତାଙ୍କର ବକ୍ଷ ଦେଶରେ ନରମୁଣ୍ଡମାଳା । ଦେବୀ ଉଲଗ୍ନା ଓ ଶବ ଉପରେ ଆସୀନା । ତାଙ୍କର ଧ୍ୟାନ ମନ୍ତ୍ରରେ ଏହିପରି ବର୍ଣ୍ଣନା ଅଛି । ଏହି ମୂର୍ତ୍ତିର ବର୍ଣ୍ଣନାରୁ ସେ ଚାମୁଣ୍ଡା ବୋଲି ଜଣାଯାଏ । ଏଠାରେ ଆମିଷ ଭୋଗ ହୁଏ । ଆଶ୍ୱିନ ମାସ ଦଶହରା ଉପଲକ୍ଷେ ଏଠାରେ ମଧ୍ୟ ଅନ୍ୟାନ୍ୟ ଦେବୀପୀଠ ପରି ଜିତା ଅଷ୍ଟମୀ ଠାରୁ ଷୋଡ଼ଶ ଉପଚାରରେ ଷୋଳ ଦିନ ବ୍ୟାପୀ ପୂଜା ଅନୁଷ୍ଠିତ ହୋଇଥାଏ । ମହାଷ୍ଟମୀ ଦିନ ରାତିରେ ମଙ୍ଗଳା ଠାକୁରାଣୀଙ୍କ ନିକଟରେ ପୋଡ଼ ବଳି ଦିଆଯାଏ । ବହୁ ଛାଗ, ମେଷ ବଳି ମଧ୍ୟ ପଡ଼େ । ଚୈତ୍ର ମାସରେ ମହାବିଷୁବ ସଂକ୍ରାନ୍ତି ଦିନ ଚର୍ଚ୍ଚିକାଙ୍କ ପୀଠରେ ପଣାଯାତ୍ରା ବା ଝାମୁଯାତ୍ରା ଅନୁଷ୍ଠିତ ହୁଏ । କିମ୍ବଦନ୍ତୀ ଅଛି ବାଙ୍କିର ରାଜା ମୂଳିଆ ଧଳଙ୍କ ରାଜତ୍ୱ କାଳରେ ଚର୍ଚ୍ଚିକାଙ୍କ ଠାରେ ଏହି ଝାମୁଖେଳା

ଯାତ୍ରା ପ୍ରବର୍ତ୍ତିତ ହୋଇଥିଲା । ଚର୍ଚ୍ଚିକାଙ୍କର ସେବା ପୂଜା ପାଇଁ ରାଜା ଛତିଶା-ନିଯୋଗ ଓ ବହୁ ଜମିବାଡ଼ି ଖଞ୍ଜି ଦେଇ ଯାଇଛନ୍ତି ।

ସର୍ବମଙ୍ଗଳା ସ୍ତୁତିରେ ଥିବା ଦେବୀମାନଙ୍କ ଭିତରେ ଦୁଇଜଣ 'ଚଣ୍ଡି' ରାମଚଣ୍ଡୀ ଓ କଟକ ଚଣ୍ଡୀଙ୍କ ମଧ୍ୟରେ ରାମଚଣ୍ଡୀ ପ୍ରାଚୀନ । ସ୍ତୁତିରେ ଅଛି - 'କୋଣାରକେ ରହିଲୁ ମା ଅଭୟା ରାମଚଣ୍ଡୀ' । ସେ ସମୁଦ୍ର ମୁହାଣରେ ଅବସ୍ଥିତା ଦେବୀ ।

**ରାମଚଣ୍ଡୀ :**

କୁଶଭଦ୍ରା ଓ ଧନୁଆ ନଦୀର ଜଳ ପ୍ରବାହ ଯେଉଁଠି ମହୋଦଧିରେ ମିଶି ଯାଇଛି ତା'ର ବାମ ଦିଗରେ ଗୋଟିଏ ବାଲୁକା ସ୍ତୂପରେ ରାମଚଣ୍ଡୀଙ୍କ ମନ୍ଦିର। ଏବେ ରାମଚଣ୍ଡି ମନ୍ଦିରକୁ ଯିବା ଲାଗି ରାସ୍ତାର ସୁବିଧା ହୋଇଗଲାଣି । କିନ୍ତୁ ଏକ ସମୟରେ ଏହା ଥିଲା ସମୁଦ୍ରକୂଳରେ ଅବସ୍ଥିତ ଅଥଚ କୋଣାର୍କ ସୂର୍ଯ୍ୟମନ୍ଦିର ନିକଟବର୍ତ୍ତୀ ଗୋଟିଏ ନିକାଞ୍ଚନ ନିରୋଳା ଜାଗା । ସାରଳା ଦାସ ତାଙ୍କ ମହାଭାରତ ବନପର୍ବରେ ରାମଚଣ୍ଡୀଙ୍କର ବର୍ଣ୍ଣନା କରିଛନ୍ତି । ସେ ବର୍ଣ୍ଣନାଟି କିମ୍ବଦନ୍ତୀ ଆଧାରିତ । ରାମଚନ୍ଦ୍ର ଲଙ୍କା ଯିବା ପାଇଁ ବନ୍ଧ ବାନ୍ଧିବାର କାମନା କରି ଏହିଠାରେ ଚଣ୍ଡୀଙ୍କର ପୂଜା କରିଥିଲେ । ମାତ୍ର ସେଠାରେ ବିଭୀଷଣ ଉପସ୍ଥିତ ହୋଇଥିଲେ ଏବଂ ଏଠାରେ ବନ୍ଧ ବାନ୍ଧିବାର ସୁବିଧା ହେବ ନାହିଁ ବୋଲି ସୂଚନା ଦେଇଥିଲେ । ବଳରାମ ଦାସଙ୍କ ଦାଣ୍ଡି ରାମାୟଣରେ ଅଛି- ଶ୍ରୀରାମ ଚନ୍ଦ୍ରଭାଗା ତୀର୍ଥରେ ସ୍ନାନ କରି ରାମଚଣ୍ଡୀଙ୍କୁ ପୂଜାର୍ଚ୍ଚନା କରିଥିଲେ ।

''ଏହାକହି ଦାଶରଥି ତହୁଁ ଚଳିଗଲେ,
ଚନ୍ଦ୍ରଭାଗା ସଙ୍ଗମ ତୀର୍ଥକୁ ଯେ ଦେଖିଲେ ।
ବୁଲାଇ ଚଣ୍ଡୀ ବୋଲି ଅଛଇ ଏକ ଦେବୀ,
ତାହାଙ୍କୁ ଶ୍ରୀରାମ ଯେ ଅନେକ ମତେ ସେବି ।
ଉତ୍ତର ମୁଖ କରିଣ ତାହାଙ୍କୁ ବସାଇଲେ,
ଶ୍ରୀ ରାମଚଣ୍ଡୀ ବୋଲିଣ ତାହା ନାମ ଦେଲେ ।''

ଏଥିରୁ ରାମଚଣ୍ଡୀ ନାମ କିପରି ହେଲା, ତାହା ଜଣାପଡ଼େ । କେତେକ ଐତିହାସିକଙ୍କ ମତରେ ରାମଚଣ୍ଡୀ କୋଣାର୍କ ମନ୍ଦିରରେ ପ୍ରଥମେ ପୂଜିତା

ହେଉଥିଲେ । ତାଙ୍କୁ ପରବର୍ତ୍ତୀ କାଳରେ କୁଶଭଦ୍ରା ମୁହାଣ ନିକଟରେ ସ୍ଥାପନ କରି ପୂଜାର୍ଚ୍ଚନା କରାଯାଇଥିଲା । ବର୍ତ୍ତମାନ ଏ ଦେବୀଙ୍କର ମନ୍ଦିର ଯେପରି ଭାବରେ ଅଛି ଏବଂ ସେଠାରେ ଯେଉଁ କେତୋଟି ମୂର୍ତ୍ତି ଅଛି, ସେଥିରୁ ଏହାର ପ୍ରାଚୀନତା ନିରୂପଣ ଗବେଷଣା ସାପେକ୍ଷ । ଏହି ମନ୍ଦିରରେ ଅଧିଷ୍ଠିତା ରାମଚଣ୍ଡୀ ମହିଷ ମର୍ଦ୍ଦିନୀ ଦୁର୍ଗା । ବହୁ ଆୟୁଧ ଧାରିଣୀ ବସ୍ତ୍ର ଅଳଙ୍କାର ବିଭୂଷିତା ଦେବୀ । ଏଠାରେ ପ୍ରଚଳିତ ଗୋଟିଏ କିମ୍ବଦନ୍ତୀରେ ଅଛି, କଳାପାହାଡ଼ ଦେବୀଙ୍କର ମୂର୍ତ୍ତି ଭାଙ୍ଗିବାକୁ ଆସିବା ବେଳେ ଦେବୀ ଗୋଟିଏ କଳସ ଧାରଣ କରି ସାଧାରଣ ନାରୀ ବେଶରେ ମନ୍ଦିରଛାଡ଼ି ଚାଲି ଯାଇଥିଲେ । 'ଭଲା ରାମଚଣ୍ଡୀ ଭଲାରେ, କଳାପାହାଡ଼କୁ ଦୁଆରେ ବସାଇ ଭଲା ପାଣି ଆଣି ଗଲାରେ- ବଚନ ଓ କିମ୍ବଦନ୍ତୀରୁ ଜଣାଯାଏ ଯେ, ବୈଦେଶିକ ଆକ୍ରମଣ ବେଳେ ମନ୍ଦିରର ଦେବଦେବୀମାନଙ୍କୁ ବିଭିନ୍ନ ଉପାୟରେ ସ୍ଥାନାନ୍ତରିତ କରାଯାଇଥିଲା ।

**କଟକ ଚଣ୍ଡୀ :**

କଟକ ଚଣ୍ଡୀ କଟକ ନଗରୀର ଇଷ୍ଟ ଦେବୀ ଭାବରେ ସଂପ୍ରତି ପୂଜା ପାଉଛନ୍ତି । ବିଭିନ୍ନ ପ୍ରସିଦ୍ଧ ଦେବୀ ପୀଠ ପରି ଏଠାରେ ମଧ୍ୟ ମହା ଆଡ଼ମ୍ବର ଅଥଚ ନିଷ୍ଠାର ସହିତ ଦେବୀଙ୍କର ପୀଠରେ ଷୋଡ଼ଶ ଦିନ ବ୍ୟାପୀ ଦୁର୍ଗାପୂଜା ଅନୁଷ୍ଠିତ ହେଉଛି । ମୂଳତଃ ଏହି ଦେବୀ ରାଜ ପ୍ରତିଷ୍ଠିତା ନଥିଲେ । ବାରବାଟୀ ଦୁର୍ଗର ଚଣ୍ଡୀ ବର୍ତ୍ତମାନ କଟକ ଚଣ୍ଡୀ ନାମରେ ପୂଜିତା ଦେବୀ ନୁହନ୍ତି । ମାତ୍ର ଦେବୀଙ୍କର ଚମତ୍କାର ମୂର୍ତ୍ତି । ଗତ କେତେବର୍ଷ ମଧ୍ୟରେ ପ୍ରବର୍ତ୍ତିତ ପୂଜାବିଧି ବହୁ ଭକ୍ତ, ଦର୍ଶକଙ୍କୁ ଆକୃଷ୍ଟ କରିଛି । କଟକ ଚଣ୍ଡୀ ଚତୁର୍ଭୁଜା । ଭୁବନେଶ୍ୱରୀ ମନ୍ତ୍ରରେ ତାଙ୍କର ପୂଜାବିଧି ସଂପନ୍ନ କରାଯାଏ । ଦୁର୍ଗାପୂଜା ଓ ବାସନ୍ତୀ ପୂଜା ସମୟରେ ଏଠାରେ ବଳିପଡ଼େ । ବହୁ ସଂଖ୍ୟକ ଛାଗ ବଳି ପଡ଼ିଥାଏ । ଅର୍ଦ୍ଧ ରାତ୍ରିରେ ସନ୍ଧିପୂଜା ସମୟରେ ଏହି ବଳି ପଡ଼େ । ଏହିବଳି ପ୍ରଥା ବନ୍ଦ କରିବାଲାଗି ଅନେକ ଉଦ୍ୟମ ହୋଇ ତାହା ଫଳପ୍ରଦ ହୋଇନାହିଁ । ଏଥିରୁ ଏହି ପୀଠର ଦୃଢ଼ ପରମ୍ପରା ସୂଚିତ ହୁଏ । ଚଣ୍ଡୀ ମନ୍ଦିରରେ ପ୍ରତ୍ୟହ ପୂଜାବିଧି ଚଣ୍ଡୀ ପାଠ ହୋମ ଯଜ୍ଞ ଜନଗହଳି ଯେପରି ଭାବରେ ଦେଖାଯାଏ, ସେଥିରୁ ତାଙ୍କୁ କଟକ ନଗରର ଅଧିଷ୍ଠାତ୍ରୀ ଦେବୀ ମନେ କରିବା ସ୍ୱାଭାବିକ ।

**ଗୌରୀ :**

ଶୈବ ପୀଠ ଭୁବନେଶ୍ୱରରେ ଶକ୍ତି ପୂଜାର ପ୍ରାଧାନ୍ୟ ରହିବା ସ୍ୱାଭାବିକ । ଶ୍ରୀଲିଙ୍ଗରାଜ ମନ୍ଦିରରେ ପାର୍ବତୀ ଓ ଭୁବନେଶ୍ୱରୀ ଅଛନ୍ତି । ବିବିଧ ଉପଚାରରେ ତାଙ୍କର ପୂଜାବିଧି ପାଳନ କରାଯାଏ । ଏଠାରେ ବୋଇତାଳ ମନ୍ଦିର ନାମରେ ପରିଚିତ ଗୋଟିଏ ପ୍ରାଚୀନ ମନ୍ଦିରରେ ଚାମୁଣ୍ଡା ଦେବୀ ଅଧିଷ୍ଠିତା । ସେ କାଳୀଙ୍କ ପରି ଶବ ଉପରେ ଉପବେଶନ କରିଛନ୍ତି ଓ ତାଙ୍କର ଗଳାରେ ନରମୁଣ୍ଡମାଳ ଲମ୍ବିଛି । ଏହି ବୋଇତାଳ ମନ୍ଦିର ଗାତ୍ରରେ ମଧ୍ୟ ଅଷ୍ଟଭୁଜା ମହିଷ ମର୍ଦ୍ଦିନୀ ଦୁର୍ଗାଙ୍କ ମୂର୍ତ୍ତି ଅଛି । ଶିଶିରେଶ୍ୱର ମନ୍ଦିରରେ ଦଶଭୁଜା ମହିଷାସୁର ମର୍ଦ୍ଦିନୀ ଦୁର୍ଗା ପୂଜା ପାଉଛନ୍ତି । ଅଥଚ ଗୌରୀଙ୍କୁ ଉପରୋକ୍ତ ସର୍ବମଙ୍ଗଳା ସ୍ତୁତିରେ ବିଶେଷ ଭାବରେ ଉଲ୍ଲେଖ କରାଯାଇଛି । କଳାମୁଗୁନି ପଥରରେ ନିର୍ମିତ ଚମତ୍କାର ଗୌରୀ ମୂର୍ତ୍ତି ଦଣ୍ଡାୟମାନ ଅବସ୍ଥାରେ ପୂର୍ବାଭିମୁଖୀ ହୋଇ ରହିଛନ୍ତି । କେଦାରଗୌରୀ ବେଢ଼ାରେ କେଦାରଶ୍ୱର ଏବଂ ଗୌରୀ ଠାକୁରାଣୀଙ୍କର ମନ୍ଦିର ବିଦ୍ୟମାନ ଓ କେଦାରଗୌରୀ କୁଣ୍ଡ ନାମରେ ସ୍ୱଚ୍ଛ ନିର୍ଝରରୁ ଚିରନ୍ତନ ଝରୁଥିବା ଜଳରେ ପରିପୂର୍ଣ୍ଣ ତିନୋଟି କୁଣ୍ଡ ରହିଛି । ଗୌରୀ ଠାକୁରାଣୀ ପରମ ବୈଷ୍ଣବୀ ଭାବରେ ପୂଜିତା ହୁଅନ୍ତି ।

ଏହିପରି ସର୍ବମଙ୍ଗଳା ସ୍ତବରେ ଯେଉଁ ଦେବୀମାନଙ୍କର ଉଲ୍ଲେଖ କରାଯାଇଛି, ତା' ବ୍ୟତୀତ ଓଡ଼ିଶାର ବହୁ ସ୍ଥାନରେ ବହୁ ଦେବୀ ବହୁ ପ୍ରାଚୀନ କାଳରୁ ପୂଜା ପାଇ ଆସୁଛନ୍ତି ଏବଂ ଅର୍ବାଚୀନ ଦେବୀ ପରବର୍ତ୍ତୀ କାଳରେ ପ୍ରତିଷ୍ଠିତା ହୋଇ ଖ୍ୟାତି ଲାଭ କରିଛନ୍ତି । ଅଦ୍ଭୁତ ଲୋକପ୍ରିୟତା ଅର୍ଜ୍ଜନ କରିଛନ୍ତି । ବହୁ ପରମ୍ପରା, ବହୁ ବିଶ୍ୱାସଧାରା ଗୋଟିଏ ମୁଖ୍ୟ ସ୍ରୋତରେ ମିଶି ପ୍ରବାହିତ ହେବାର ପ୍ରବଣତା ଓଡ଼ିଶାର ଶାକ୍ତ ଆରାଧନାକୁ ପୁଷ୍ଟ ଓ ବଳିଷ୍ଠ କରିଛି । ପୁଣି ଏଥିରୁ ଓଡ଼ିଆ ସଂସ୍କୃତିର ପ୍ରାଚୀନତା ଓ ସ୍ୱଭାବର ସଂକେତ ମିଳୁଛି ।

--୦--

# ଆଶ୍ୱିନେ ଶୁକ୍ଳ ପକ୍ଷେ ତୁ..........

ଦୁର୍ଗାପୂଜା ବା ଦଶହରା ଆଶ୍ୱିନ ମାସର ପ୍ରଧାନ ପର୍ବ । ତେଣୁ ଓଡ଼ିଶାର କେତେକ ଅଞ୍ଚଳରେ ଏଇ ମାସଟିକୁ ଦଶହରା ମାସ କହନ୍ତି । ଆଶ୍ୱିନ ଶୁକ୍ଳପକ୍ଷ ସପ୍ତମୀକୁ ମହାସପ୍ତମୀ, ଅଷ୍ଟମୀକୁ ମହାଷ୍ଟମୀ ଓ ନବମୀକୁ ମହାନବମୀ ଓ ଦଶମୀକୁ ଅପରାଜିତା ଦଶମୀ ବା ଦଶହରା କୁହାଯାଏ । ସାଧାରଣତଃ ଶୁକ୍ଳପକ୍ଷ ସପ୍ତମୀରୁ ନବମୀ ପର୍ଯ୍ୟନ୍ତ ତିନିଦିନ ଦୁର୍ଗାପୂଜା କରି ଦଶମୀ ଦିନ ବିସର୍ଜନ ପୂଜା କରାଯାଏ । କିନ୍ତୁ ଓଡ଼ିଶାର ପ୍ରସିଦ୍ଧ ଦେବୀପୀଠମାନଙ୍କରେ ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀ ବା ମୂଳାଷ୍ଟମୀଠାରୁ ସହସ୍ର କୁମ୍ଭବରଣ ଓ ଷୋଡ଼ଶ ଦିବସାତ୍ମକ ଦୁର୍ଗାପୂଜା ଅନୁଷ୍ଠିତ ହୁଏ । ସଂପ୍ରତି ସହରମାନଙ୍କରେ ମୃଣ୍ମୟୀ ଦୁର୍ଗା ପୂଜାର ଅଟୋପ ଆଡ଼ମ୍ବର ଏହି ସମୟଟିକୁ ଉତ୍ସବ ମୁଖର କରୁଛି । ଆମର ପୁରାଣ ଓ ପରମ୍ପରା ସହିତ ଏହି ପର୍ବଟିର ସଂପର୍କ ନିବିଡ଼ ।

ସାରଳା ଦାସଙ୍କ ମହାଭାରତ (ସଭା ପର୍ବ)ରେ ଅଛି, ଜରାସନ୍ଧଙ୍କ ବନ୍ଦୀଶାଳାରେ ଥିବା ରାଜାମାନେ କାରାମୁକ୍ତ ହେଲେ ଶରତ୍‌କାଳରେ ଦୁର୍ଗାପୂଜା କରି ମହାଷ୍ଟମୀ ଦିନ ନିଶାକାଳରେ ବଳି ପ୍ରଦାନ କରିବାକୁ ମାନସିକ କରିଥିଲେ । ଦେବୀ ପ୍ରସନ୍ନ ହୋଇ ସେମାନଙ୍କୁ ଅଭୟଦାନ କରିଥିଲେ । ଏହି ପ୍ରସଙ୍ଗରେ ଦେବୀଙ୍କଠାରେ ଛାଗ, ମେଷ, ମହିଷ, ଏପରିକି ନରବଳି ମାନସିକ କରିବାର ଉଲ୍ଲେଖ ଅଛି ।

ମାଗୋ କନ୍ୟା ମାସ ଶୁକଳ ପକ୍ଷ ଅଷ୍ଟମୀର ତିଥି
ଶରଦ ଉଚ୍ଛବ କରି ତୋତେ ହୋଇବୁ ଭଗତି
ଅନେକ ସମ୍ଭାର ଭରି ମାଗୋ ମହାନିଶାୟେ ତୋତେ ପୂଜି
ଚାରି ଚାରି ଜଣ ନରବଳି ତୋତେ ଦେଉଥିବୁ ଭୋଜି ।
ମଇଁଷି ମେଷ ଛାଗଳ ରୋଧିର ମାଂସେ ପୂଜା
ଦୁର୍ଗାଙ୍କୁ ଲୟେ କରି ସୁମରଣା କରନ୍ତି ସର୍ବ ରାଜା ।

କିନ୍ତୁ ଏହି ରକ୍ତ ଲୋଲୁପାଦେବୀ କିଏ ? ସେ ଦକ୍ଷ ପ୍ରଜାପତିଙ୍କ କନ୍ୟା ସତୀ ନୁହନ୍ତି । ସେ ମଧ୍ୟ ହିମବନ୍ତ ତନୟା ଉମା ବା ପାର୍ବତୀ ନୁହନ୍ତି

ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ଶ୍ରୀ ଦୁର୍ଗା ସପ୍ତଶତି ବା ସପ୍ତଶତ ଶ୍ଳୋକରେ ଲିଖିତ ଦେବୀ ମହାତ୍ମ୍ୟ ଅନୁସାରେ, ସେ ବିଷ୍ଣୁ, ଶିବ ଓ ଅନ୍ୟ ସମସ୍ତ ଦେବଗଣଙ୍କର ସମ୍ମିଳିତ ତେଜୋପୁଞ୍ଜ ସମ୍ଭୂତା ଦେବୀ । ଏହି ସମ୍ପର୍କୀୟ ଉପାଖ୍ୟାନଟି ବଡ଼ ଚିତ୍ତାକର୍ଷକ ।

ଦେବରାଜ ଇନ୍ଦ୍ର ଓ ଅସୁରରାଜ ମହିଷାସୁର ମଧ୍ୟରେ ଶହେ ବର୍ଷ ଧରି ତୁମୂଳ ସଂଗ୍ରାମ ଲାଗିଲା । ଦେବତାମାନେ ହାରିଗଲେ । ଦେବଲୋକ, ସ୍ୱର୍ଗ ଭୁବନ ହେଲା ଅସୁରମାନଙ୍କର ଅଧିକାରଭୁକ୍ତ । ଇନ୍ଦ୍ର ସମେତ ସମସ୍ତ ଦେବତାଙ୍କର ଦୁଃଖ ନିର୍ଯାତନାର ଅନ୍ତ ରହିଲା ନାହିଁ । ସେମାନେ ବ୍ରହ୍ମାଙ୍କୁ ସାଙ୍ଗରେ ଘେନି ବିଷ୍ଣୁ ଓ ଶିବଙ୍କ ନିକଟକୁ ଗଲେ । ଦେବତାମାନଙ୍କଠାରୁ ମହିଷାସୁର ଓ ଅସୁରମାନଙ୍କର ଉତ୍ପାତରେ ଦେବଲୋକର ଦୁର୍ଦ୍ଦଶା ଶୁଣି ବିଷ୍ଣୁ ଓ ଶିବଙ୍କର ଯେଉଁ ପ୍ରତିକ୍ରିୟା ହେଲା ଏବଂ ତାହା କ୍ରମେ ଯେଉଁ ରୂପ ଧାରଣ କଲା, ତାହା ବର୍ଣ୍ଣନା କରାଯାଇଛି-

ଇତ୍ଥଂ ନିଶମ୍ୟ ଦେବାନାଂ ବଚାଂସି ମଧୁସୂଦନଃ ।
ଚକାରା କୋପଂ ଶମ୍ଭୁଶ୍ଚ ଭ୍ରୁକୁଟୀ କୁଟିଳାନନୌ ।।
ତତୋଽତି କୋପ ପୂର୍ଣ୍ଣସ୍ୟ ଚକ୍ରିଣୋ ବଦନାତ୍ତତଃ ।
ନିଶ୍ଚକ୍ରାମ ମହତ୍ତେଜୋ ବ୍ରହ୍ମଣଃ ଶଙ୍କରସ୍ୟ ଚ ।।
ଅନ୍ୟେଷାଂ ଚୈବ ଦେବାନାଂ ଶକ୍ରାଦିନାଂ ଶରୀରତଃ ।
ନିର୍ଗତଂ ସୁମହତ୍ତେଜସ୍ତଚ୍ଚୈକ୍ୟଂ ସମଗଚ୍ଛତ ।।
ଅତୀବ ତେଜସଃ କୂଟଂ ଜ୍ୱଳନ୍ତମିବ ପର୍ବତମ୍ ।
ଦଦୃଶୁସ୍ତେ ସୁରାସ୍ତତ୍ର ଜ୍ୱାଳା ବ୍ୟାପ୍ତ ଦିଗନ୍ତରମ୍ ।।
ଅତୁଳଂ ତତ୍ର ତତ୍ତେଜଃ ସର୍ବଦେବ ଶରୀରଜମ୍ ।
ଏକସ୍ଥଂ ତଦଭୂନ୍ନାରୀ ବ୍ୟାପ୍ତଲୋକତ୍ରୟଂ ତ୍ୱିଷା ।।

ବିଷ୍ଣୁ ଏବଂ ଶିବ ଦେବତାମାନଙ୍କ କଥା ଶୁଣି ଭୀଷଣ ଭାବରେ କ୍ରୁଦ୍ଧ ହୋଇ ଉଠିଲେ । ସେମାନଙ୍କ କ୍ରୋଧରୁ ଅଗ୍ନି ଜାତ ହେଲା । ବ୍ରହ୍ମା ଓ ଅନ୍ୟାନ୍ୟ ଦେବତାଙ୍କ ମୁଖରୁ ମଧ୍ୟ ଭୟଙ୍କର ମହାତେଜ ଜାତ ହୋଇ ସମସ୍ତ ମହାତେଜ ଏକତ୍ର ଘନୀଭୂତ ହୋଇ ପର୍ବତାକାର ଧାରଣ କଲା ଏବଂ ତାହା ଚତୁର୍ଦ୍ଦିଗକୁ ବ୍ୟାପିବାକୁ ଆରମ୍ଭ କଲା । ସେହି ଘନୀଭୂତ ମହାତେଜରେ ତ୍ରିଲୋକ ଉଦ୍ଭାସିତ

ହେଲା ଏବଂ ଦେବଗଣଙ୍କର ସେହି ପୁଞ୍ଜିଭୂତ ତେଜରୁ ଜଣେ ଦେବୀ ଆବିର୍ଭୂତା ହେଲେ । ଦେବୀ ମହାତ୍ମ୍ୟରେ ସେହି ଦେବୀଙ୍କର ବିଭିନ୍ନ ଅବୟବ ଗଠନର ମଧ୍ୟ ସୁନ୍ଦର ବର୍ଣ୍ଣନା କରାଯାଇଛି ।

ଶିବଙ୍କ ମୁଖ ନିର୍ଗତ ତେଜରୁ ଦେବୀଙ୍କର ମୁଖ, ଯମଙ୍କ ତେଜରୁ ଦୁଇ ବକ୍ଷୋଜ, ଇନ୍ଦ୍ରଙ୍କ ତେଜରୁ କଟି, ବରୁଣଙ୍କ ତେଜରୁ ଜଙ୍ଘ ଓ ଉରୁ, ପୃଥିବୀଙ୍କ ତେଜରୁ ନିତମ୍ବ, ବ୍ରହ୍ମାଙ୍କ ତେଜରୁ ପଦ, ସୂର୍ଯ୍ୟଙ୍କ ତେଜରୁ ପଦାଙ୍ଗୁଳି, ବସୁମାନଙ୍କ ତେଜରୁ କରାଙ୍ଗୁଳି, କୁବେରଙ୍କ ତେଜରୁ ନାଶିକା, ପ୍ରଜାପତିଙ୍କ ତେଜରୁ ଦନ୍ତପନ୍ତି, ଅଗ୍ନିଙ୍କ ତେଜରୁ ତ୍ରିନେତ୍ର ଗଠିତ ହେଲା । ଉଭୟ ସନ୍ଧ୍ୟାଙ୍କ ତେଜରୁ ଭ୍ରୁଯୁଗଳ, ବାୟୁଙ୍କ ତେଜରୁ କର୍ଣ୍ଣ ହେଲା । ଏହିପରି ବିଭିନ୍ନ ଦେବତାଙ୍କ ତେଜ ପୁଞ୍ଜରୁ ସମୁଦ୍‌ଭବା ଦେବୀ ଦେବତାମାନଙ୍କ ନିକଟରେ ଉପଗତା ହେବାରୁ ବିଷ୍ଣୁ, ଶିବ, ବରୁଣ, ଅଗ୍ନି, ବାୟୁ, ଯମ, ବ୍ରହ୍ମା, କାଳ, ମରୁତ୍ ପ୍ରମୁଖ ଦେବଗଣ ସେମାନଙ୍କ ଆୟୁଧରୁ ଗୋଟିଏ ଗୋଟିଏ ତତ୍‌ତୁଲ୍ୟ ଆୟୁଧ କାଢ଼ି ତାଙ୍କୁ ପ୍ରଦାନ କଲେ । ହିମବାନ୍ ଏହି ଦେବୀଙ୍କ ବାହନ ପାଇଁ ସିଂହ ଓ ବ୍ୟବହାର ପାଇଁ ବିବିଧ ରତ୍ନ, କୁବେର ନିରନ୍ତର ସୁରାପୂର୍ଣ୍ଣ ରହିବା ଭଳି ପାନପାତ୍ର, ପୃଥିବୀକୁ ଧାରଣ କରୁଥିବା ଶେଷନାଗ ମହାମଣି ବିଭୂଷିତ ନାଗ-ହାର ପ୍ରଦାନ କଲେ । ଅନ୍ୟାନ୍ୟ ଦେବତାମାନେ ଏହିପରି ନିଜ ନିଜ ଆୟୁଧ ଓ ଭୂଷଣମାନ ଦେଇ ଦେବୀଙ୍କୁ ସମ୍ମାନ ଦେଖାଇଲେ । ଦେବୀ ସମସ୍ତ ଭୂଷଣ ପରିଧାନ କରି, ଆୟୁଧ ଧାରଣ କରି, ସିଂହ ବାହନରେ ଆରୁଢ଼ା ହୋଇ ମୁହୁର୍ମୁହୁଃ ଅଟ୍ଟହାସ କଲେ । ତାଙ୍କର ନିରବଚ୍ଛିନ ଭୟାନକ ଅଟ୍ଟହାସରେ ଆକାଶ ପ୍ରତିଶବ୍ଦ କଲା, ସମସ୍ତ ଭୁବନ, ସସାଗରା ମେଦିନୀ କମ୍ପି ଉଠିଲା, ଭୂମିକମ୍ପ ହୋଇ ପର୍ବତମାନ ଥରିବାକୁ ଲାଗିଲେ । ଦେବତାମାନେ ସେହି ସିଂହବାହିନୀ ଦେବୀଙ୍କର ଜୟନାଦ କଲେ । ଋଷିମାନେ ଭକ୍ତି ନିବେଦନ କଲେ । ଅସୁରମାନେ ଦେଖିଲେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତ୍ରିଭୁବନ ସଂକ୍ଷୁବ୍ଧ ହୋଇ ଉଠୁଛି । ସେମାନଙ୍କର ସମସ୍ତ ସେନାବାହିନୀ ଉଦ୍ୟତ ଅସ୍ତ୍ର ହୋଇ ଅଗ୍ରସର ହେଲା । ମହିଷାସୁର କ୍ରୋଧରେ "ଆଃ ଏଇଟା କଅଣ" ବୋଲି କହି ଅସଂଖ୍ୟ ଅସୁର ବାହିନୀ ଦ୍ୱାରା ପରିବୃତ ହୋଇ ଦେବୀଙ୍କ ଆଡ଼କୁ ଅଗ୍ରସର ହେଲା । ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ଦେବୀ ମହାତ୍ମ୍ୟ ବା ମହିଷାସୁର ବଧ ଉପାଖ୍ୟାନରେ ଏହି ବର୍ଣ୍ଣନା ବଡ଼ ଚମତ୍କାର ।

ମହିଷାସୁର ଦେଖିଲା ଦେବୀଙ୍କ ପଦାଘାତରେ ପୃଥିବୀ ନଇଁଯାଉଛି, ତାଙ୍କର କିରୀଟ ଆକାଶ ସ୍ପର୍ଶ କରୁଛି, ତାଙ୍କ ଧନୁ ଗୁଣର ଟଙ୍କାକରେ ପାତାଳ କମ୍ପିଯାଉଛି । ଦେବୀ ସହସ୍ର ବାହୁ ହୋଇ ସଂଗ୍ରାମ ଲାଗି ଉଦ୍ୟତା । ଦେବୀ ଏବଂ ଅସୁରଙ୍କ ମଧ୍ୟରେ ତୁମୂଳ ସଂଗ୍ରାମ ଲାଗିଗଲା । ଅସ୍ତ୍ର, ଶସ୍ତ୍ରର ଘର୍ଷଣରେ ଚତୁର୍ଦ୍ଦିଗ ଆଲୋକିତ ହୋଇ ଉଠିଲା । ମହିଷାସୁରର ବଡ଼ ବଡ଼ ସେନାଧ୍ୟକ୍ଷ ଚିକ୍ଷୁରା, ଚାମର, ବିଡ଼ାଳ, ମହାହନୁ ପ୍ରମୁଖ ରଥ, ହସ୍ତୀ ପ୍ରଭୃତି ଚତୁରଙ୍ଗ ସେନାଧରି ସଂଗ୍ରାମ କଲେ । ମହିଷାସୁର ମଧ୍ୟ ବହୁସଂଖ୍ୟକ ଅଶ୍ୱ, ଗଜ, ରଥାରୋହୀ ସେନାଙ୍କ ଦ୍ୱାରା ପରିବୃତ୍ତ ହୋଇ ସଂଗ୍ରାମ କଲା । ଦେବୀ ଚଣ୍ଡିକା ଅକ୍ଳେଶରେ ସେମାନଙ୍କର ଆୟୁଧକୁ କାଟିଦେଇ ଗଲେ । ସେ ଅସୁରମାନଙ୍କ ଉପରକୁ ତାଙ୍କର ଆୟୁଧମାନ ନିକ୍ଷେପ କଲେ । ଅସୁର ସେନା ନିହତ ହେଲେ । ଦେବୀଙ୍କର ନିଶ୍ୱାସରୁ ବହୁ ସଂଖ୍ୟକ ସୈନ୍ୟ ସୃଷ୍ଟି ହୋଇଗଲେ । ସେମାନେ ଶଙ୍ଖ, ମୃଦଙ୍ଗ, ଘଣ୍ଟାଦି ନାଦ କରି ଉତ୍ସବ କଲେ । ଏଠାରେ ଯୁଦ୍ଧ ହିଁ ଉତ୍ସବ ଓ ଉତ୍ସବ ହିଁ ଯୁଦ୍ଧ । ବିଷୟଟି ଦେବୀ ମହାତ୍ମ୍ୟ ହୋଇଥିବାରୁ ଦେବୀଙ୍କର ମହିମା ବର୍ଣ୍ଣନା ହୋଇଛି ଏହାର ମୁଖ୍ୟ ଆଖ୍ୟାନ ।

ଦେବୀ ଖଡ୍‌ଗ, ଗଦା, ତ୍ରିଶୂଳରେ ଅସୁରଙ୍କୁ ନିପାତ କଲେ । ତାଙ୍କର ଘଣ୍ଟାନାଦରେ ମଧ୍ୟ ବହୁ ଅସୁର ମୂର୍ଚ୍ଛିତ ହୋଇପଡ଼ିଲେ । ସେ ବହୁ ଅସୁରଙ୍କୁ ପାଶରୁଦ୍ଧ କରି ଟାଣିଆଣି ଗଦା, ଖଡ୍‌ଗ ଦ୍ୱାରା ହତ୍ୟା କଲେ । ସମରାଙ୍ଗନରେ ଯୁଦ୍ଧବାଦ୍ୟ ସହିତ ତାଳ ପକାଇ ବହୁ ଅସୁରଙ୍କ କବନ୍ଧ ନୃତ୍ୟ କଲେ । ଅସୁରମାନେ ଅଙ୍ଗ ପ୍ରତ୍ୟଙ୍ଗ ହରାଇ ଭୂପତିତ ହେଲେ । ମୃତ ଗଜ ଓ ଅଶ୍ୱ ଏବଂ ଭଗ୍ନରଥ ସହ ବହୁ ସଂଖ୍ୟକ ଅସୁର ସୈନ୍ୟଙ୍କ ଶବରେ ସମରାଙ୍ଗନ ପରିପୂର୍ଣ୍ଣ ହେଲା । ରକ୍ତ ନଦୀ ପ୍ରବାହିତ ହେଲା । ଦେବୀଙ୍କ ସେନାଙ୍କ ସମର ଦେଖି ଦେବଗଣ ପୁଷ୍ପ ବୃଷ୍ଟି କଲେ । ଦେବୀଙ୍କର ବାହନ ଭୟାନକ ଗର୍ଜ୍ଜନ କରି ଚାଲିଲା । ଏହାପରେ ଦେବୀ ଅବଲୀଳା କ୍ରମେ ତାଙ୍କ ସମ୍ମୁଖକୁ ଆସୁଥିବା ଚିକୁର, ଉଦଗ୍ର ପ୍ରମୁଖ ସେନାଧ୍ୟକ୍ଷମାନଙ୍କୁ ହତ୍ୟା କଲେ । ଶେଷରେ ମହିଷାସୁର ଭୀଷଣ ମହିଷ ରୂପ ଧାରଣ କରି ଦେବୀଙ୍କୁ ଓ ତାଙ୍କ ଦେବୀ ସେନାକୁ ଭୟଭୀତ କରିବାକୁ ଚେଷ୍ଟା କଲା । ସେ ଖୁରାରେ ଓ ସିଙ୍ଘରେ ଭୂମି ବିଦାରଣ କରି, ପର୍ବତ ତାଡ଼ି, ତାର ଲାଞ୍ଜ ଭୟାନକ ଭାବରେ ଆନ୍ଦୋଳିତ କରି ଖର ନିଃଶ୍ୱାସ ତ୍ୟାଗ କରି କ୍ଷୀପ୍ର ଓ ଭୟଙ୍କର ଗତି ବେଗରେ ଆତଙ୍କ ସୃଷ୍ଟି କରିବାକୁ ଲାଗିଲା । ସେ ପରିଶେଷରେ ଦେବୀଙ୍କର ବାହନ ସିଂହକୁ ହତ୍ୟା କରିବାକୁ ଉଦ୍ୟତ ହେଲା ।

ଦେବୀ ଅମ୍ବିକା ପାଶ ପକାଇ ମହିଷାସୁରକୁ ବାନ୍ଧି ପକାଇଲେ । ସେ ଏପରି ପାଶବିଦ୍ଧ ହେବାରୁ ମହିଷ ରୂପ ତ୍ୟାଗ କରି ସିଂହ ରୂପ ଧାରଣ କଲା । ଦେବୀ ଖଡ୍‌ଗରେ ତାର ମୁଣ୍ଡ କାଟିଦେଲେ । ସେ ମନୁଷ୍ୟ ରୂପ ଧାରଣ କରି ଖଡ୍‌ଗ ପାଣି ହୋଇ ସଂଗ୍ରାମ କଲା । ଦେବୀ ଖଡ୍‌ଗ ସହ ତାର ମନୁଷ୍ୟ ଦେହକୁ ଶରାଘାତରେ ଖଣ୍ଡ ଖଣ୍ଡ କରିଦେଲେ । ସେ ବିରାଟ ଦନ୍ତାବଳ ହସ୍ତୀ ରୂପ ଧାରଣ କରି ଦେବୀଙ୍କ ବାହନ ସିଂହ ଆଡ଼କୁ ଅଗ୍ରସର ହେଲା । ଦେବୀ ତାଙ୍କର ଖଡ୍‌ଗରେ ତାର ଦନ୍ତ ସହ ହସ୍ତୀ ରୂପକୁ ଖଣ୍ଡ ଖଣ୍ଡ କରି କାଟି ପକାଇଲେ । ମହିଷାସୁର ନିଜର ମହିଷ ରୂପ ଧାରଣ କରି ସଚରାଚର ତ୍ରୈଲୋକ୍ୟକୁ ତାର ପ୍ରକୋପରେ ପ୍ରକମ୍ପିତ କରାଇଲା । ଦେବୀ ପୁନଃ ପୁନଃ ସୁରାପାନ କରି ରକ୍ତ ଲୋଚନା ହୋଇ ତାକୁ କ୍ରୁଦ୍ଧ ଭାବରେ ଅନାଇଲେ ।

ବଳବୀର୍ଯ୍ୟ ମଦୋଦ୍ଧତ ମହିଷାସୁର ସିଙ୍ଗରେ ପର୍ବତମାନ ତାଡ଼ି ଦେବୀଙ୍କ ଉପରକୁ ନିକ୍ଷେପ କଲା ଓ ଗର୍ଜନ କରିବାକୁ ଲାଗିଲା । ଦେବୀ ତା' ଉପରକୁ ଲମ୍ଫ ପ୍ରଦାନ କରି ପାଦରେ ତା ବେକକୁ ଚାପିଧରି ଶୂଳବିଦ୍ଧ କଲେ । ମହିଷାସୁର ସ୍ୱରୂପ ଧାରଣ କରି ତା'ର ମହିଷ ଦେହରୁ ଅର୍ଦ୍ଧ ନିର୍ଗତ ହେଲା । ଦେବୀ ଯୋଯୁଧ୍ୟମାନ ଅର୍ଦ୍ଧ ନିଷ୍କ୍ରାନ୍ତଃ ମହିଷାସୁରର ଶୀରକୁ ଖଡ୍‌ଗରେ ଛେଦନ କଲେ । ଏପରି ମହିଷାସୁର ନିହତ ହେଲା ଏବଂ ତା'ର ଅବଶିଷ୍ଟ ସେନାବାହିନୀ ଭୟରେ ପଳାୟନ କଲେ । ଦେବତା, ଗନ୍ଧର୍ବ, ଋଷିମାନେ ଆନନ୍ଦରେ ହର୍ଷଧ୍ୱନି କଲେ । ଗନ୍ଧର୍ବମାନେ ଗାନ କଲେ, ଅପ୍ସରାମାନେ ନୃତ୍ୟ କଲେ । ସୁତରାଂ ଏହି ଦେବୀ ସମରର ଦେବୀ । ଆଶ୍ୱିନ ମାସର ଦୁର୍ଗୋତ୍ସବ ଦେବତାମାନଙ୍କର ବିଜୟୋତ୍ସବ ।

ଦୁର୍ଗାପୂଜା ସମୟରେ ଦୁର୍ଗା ବା ଚଣ୍ଡୀଙ୍କର ଉପରୋକ୍ତ ମହିମାମୂଳକ ଗାଥା ପଠିତ ହୁଏ ଓ ତାଙ୍କର ମହିଷ ମର୍ଦ୍ଦିନୀ ମୂର୍ତ୍ତିଙ୍କୁ ପୂଜା କରାଯାଏ । ଓଡ଼ିଶାରେ ପ୍ରଚଳିତ ପାଞ୍ଜିରେ ଉଲ୍ଲେଖ ଥାଏ- "ଆଶ୍ୱିନେ ଶୁକ୍ଳ ପକ୍ଷେ ତୁ ସପ୍ତମ୍ୟାଂଚ ବିଶେଷତଃ ଶାସ୍ତ୍ରାସ୍ତ୍ରଂ ପୂଜୟେଦ୍ଧିମାନ୍ ପତ୍ରିକୋକ୍ତ ବିଧାନତଃ । ଅଦ୍ୟ ଶ୍ରୀକ୍ଷେତ୍ରେ ବିମଳା ପୀଠେ ଉତ୍କଳେ ସର୍ବତ୍ର ଶ୍ରୀ ଶ୍ରୀ ଦୁର୍ଗାଦେବ୍ୟାଂ ଶାରଦୀୟ ତ୍ରିଦିବସାତ୍ମକ ମହାପୂଜାରମ୍ଭଃ । ପୋଥିପୂଜା ସପ୍ତମୀ ବେଦ ଶାସ୍ତ୍ରାଦି ପୂଜା, ଶାସ୍ତ୍ର ଶସ୍ତ୍ରାଦି ଖଡ୍‌ଗ ପୂଜାଂଚ ବଙ୍ଗ ଦେଶୀ ମତେ ପୂର୍ବାହ୍ନ X X X ଶ୍ରୀ ମୃଣ୍ମୟୀ ଦେବୀଙ୍କର ପତ୍ରିକା ପ୍ରବେଶ ଓ ସ୍ଥାପନ ସପ୍ତମ୍ୟାଦି କଳ୍ପରମ୍ଭଶ୍ଚ ।" କଳ୍ପ ଅର୍ଥ ଦୁର୍ଗାଙ୍କର ପୂଜନ ପରିପାଟୀ । ଦୁର୍ଗା ପୂଜାର ସାତ ପ୍ରକାର କଳ୍ପ ଅଛି ।

ପ୍ରବନ୍ଧର ଆରମ୍ଭରେ ପୀଠମାନଙ୍କରେ ଚଳି ଆସୁଥିବା ଷୋଡ଼ଶାହ ବ୍ୟାପିନୀ ପୂଜା ଓ ସାଧାରଣତଃ ତ୍ରିଦିବସାତ୍ମକ ପୂଜାର ଉଲ୍ଲେଖ କରାଯାଇଛି । ଷୋଡ଼ଶ ଦିନ ଧରି ହେଉଥିବା ପୂଜା ଶାସ୍ତ୍ରୋକ୍ତ ବିଧି ଅନୁସାରେ ଆଦ୍ରା ନକ୍ଷତ୍ରଯୁକ୍ତା କୃଷ୍ଣପକ୍ଷ ଅଷ୍ଟମୀ ବା ଜିତାଷ୍ଟମୀଠାରୁ ଦେବୀଙ୍କୁ ଆବାହନ କରାଯାଏ ଏବଂ ଉତ୍ତରାଷାଢ଼ା ନକ୍ଷତ୍ରଯୁକ୍ତା ଶୁକ୍ଲପକ୍ଷ ମହାନବମୀ ପର୍ଯ୍ୟନ୍ତ ଷୋଡ଼ଶ ଦିନ ପୂଜା କରି ଶ୍ରବଣା ନକ୍ଷତ୍ରଯୁକ୍ତା ଶୁକ୍ଲପକ୍ଷ ଦଶମୀ ଦିନ ବିଜୟ ଦଶମୀ ବା ଦଶହରା ଦିନ ଦେବୀଙ୍କର ବିଜୟୋତ୍ସବ ସଂପାଦନ କରାଯାଏ । ପୂର୍ବାଷାଢ଼ା ନକ୍ଷତ୍ରଯୁକ୍ତା ଶୁକ୍ଳାଷ୍ଟମୀ ବା ମହାଷ୍ଟମୀ ରାତ୍ରିରେ 'ଛାଗ, କୁଷ୍ମାଣ୍ଡାଦି ବଳି ଅର୍ପଣ କରାଯାଏ । ଷୋଡ଼ଶାହ-ବ୍ୟାପିନୀ ପୂଜାରେ ଜିତାଷ୍ଟମୀ ଠାରୁ ମହାନବମୀ ପର୍ଯ୍ୟନ୍ତ ଷୋଳ ଦିନ ହେଉଥିବା ଅଷ୍ଟମୀ ଦିନ ଦେବୀଙ୍କୁ ଜାଗ୍ରତ କରାଇବା ବିଧି । ଏ ସଂପର୍କରେ ଶାସ୍ତ୍ରରେ ସତର୍କ କରାଇ ଦିଆଯାଇଛି ଯେ ତିଥି ବୃଦ୍ଧି ହେଉଥିଲେ ସୁଦ୍ଧା ଦେବୀଙ୍କର ଶୋଇବା ସମୟ ବଢ଼ାଇବା ଉଚିତ୍ ନୁହେଁ । ଏହି ପ୍ରସଙ୍ଗରେ ପ୍ରଣିଧାନଯୋଗ୍ୟ ଯେ - ବିରଜା, ବିମଳା ପ୍ରଭୃତି ପୀଠ ଦେବୀ ବା ସ୍ଥାୟୀ ପ୍ରତିଷ୍ଠିତ ପ୍ରତିମାଙ୍କର ପୂଜା ରାତ୍ରିରେ ହୁଏ । ମାତ୍ର ମୃଣ୍ମୟୀ ପ୍ରତିମାଙ୍କର ପୂଜା ଦିନ ସମୟରେ ହୁଏ ।

ପଣ୍ଡିତମାନଙ୍କ ମତରେ ମାର୍କଣ୍ଡେୟ ପୁରାଣ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ ପୂର୍ବରୁ ରଚିତ ବା ସଂକଳିତ ହୋଇଥିଲା । ଯାଜପୁରରେ ବର୍ତ୍ତମାନ ପୂଜା ପାଉଥିବା ଶୂଳ ଲାଙ୍ଗୁଳହସ୍ତା ଦ୍ୱିଭୁଜା ବିରଜା ମୂର୍ତ୍ତିଙ୍କର ନିର୍ମାଣ କାଳ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ବୋଲି ରମା ପ୍ରସାଦ ଚନ୍ଦ ଓ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କର ମତ । ପୁଣି ଭୁବନେଶ୍ୱରର ମାର୍କଣ୍ଡେଶ୍ୱର ମନ୍ଦିରରେ ଯେଉଁ ଚତୁର୍ଭୁଜା ମହିଷାସୁର ମର୍ଦ୍ଦିନୀ ମୂର୍ତ୍ତିଅଛି, ସେଥିରେ ଦେବୀ ଗୋଟିଏ ହସ୍ତରେ ମହିଷାସୁରର ଲାଞ୍ଜକୁ ଧରି ଅନ୍ୟ ହସ୍ତରେ ତା' ଦେହରେ ଶୂଳବିଦ୍ଧ କରୁଛନ୍ତି । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତରେ ଏହା ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀର ପ୍ରତିମା । ସୁତରାଂ ମାର୍କଣ୍ଡେୟ ପୁରାଣରେ ଦେବୀ ମହାତ୍ମ୍ୟ ବା ମହିଷାସୁର ବଧ ଉପାଖ୍ୟାନ ସଂକଳିତ ହେବା ବେଳକୁ ଓଡ଼ିଶାରେ ମହିଷ ମର୍ଦ୍ଦିନୀ ଦୁର୍ଗାଙ୍କର ପୂଜା ପ୍ରଚଳିତ ଥିଲା । ସଂପ୍ରତି ପ୍ରଚଳିତ ମୃଣ୍ମୟୀ ଦୁର୍ଗାପୂଜା ଓଡ଼ିଶାରେ ଅର୍ବାଚୀନ । ଏହା ବଙ୍ଗୀୟ ପ୍ରଭାବରେ ବହୁ ପରବର୍ତ୍ତୀ କାଳରେ ପ୍ରଚଳିତ ହୋଇଛି । ପୁଣି ବଙ୍ଗରେ ମଧ୍ୟ ଏହାର ଇତିହାସ ବିଶେଷ ପ୍ରାଚୀନ ନୁହେଁ । ମାତ୍ର ଅର୍ବାଚୀନ ହେଉ ବା ପ୍ରାଚୀନ ହେଉ ସଂପ୍ରତି ମୃଣ୍ମୟୀ ମୂର୍ତ୍ତିପୂଜା ଆମର ଧର୍ମ ଓ ସାଂସ୍କୃତିକ ଜୀବନର ଏକ ଅଙ୍ଗ ହୋଇଗଲାଣି ।

ମାଟିରେ ହେଲେ ମଧ୍ୟ ପ୍ରତିମା ନିର୍ମାଣ ସହଜ କଥା ନୁହେଁ । ଏଥିପାଇଁ ଶିଳ୍ପୀର ଶାସ୍ତ୍ରଜ୍ଞାନ, କର୍ମାଭ୍ୟାସ ଓ ଧ୍ୟାନ ତିନୋଟିରେ ଦକ୍ଷତା ଓ ନିଷ୍ଠା ଆବଶ୍ୟକ । କାରଣ ଶାସ୍ତ୍ରୋକ୍ତ ନିୟମ ଅନୁସାରେ ପୂଜା ପାଇଁ ଉଦ୍ଦିଷ୍ଟ ଦେବୀ ପ୍ରତିମା ଧର୍ମକୃତ୍ୟର ଅଙ୍ଗ । ତେଣୁ ଶିଳ୍ପୀର ଖିଆଲ ବା ଶିଳ୍ପ ବିଳାସ ଏଥିରେ ପ୍ରତିଫଳିତ ହେବା ଉଚିତ୍ ନୁହେଁ । ଓଡ଼ିଶାରେ ଦୁର୍ଗାପୂଜା ସମୟରେ ନିର୍ମିତ ଦେବୀ ପ୍ରତିମାଗୁଡ଼ିକ ଓଡ଼ିଆ ଶିଳ୍ପୀମାନଙ୍କର ସୌନ୍ଦର୍ଯ୍ୟବୋଧ, ଶାସ୍ତ୍ରଜ୍ଞାନ ଓ ପ୍ରତିମା ନିର୍ମାଣ ପାଟବର ନିଦର୍ଶନ । ଏହି ଦୃଷ୍ଟିରୁ ଏହାର ବିଚାର ଆବଶ୍ୟକ । ଗତ କେତେବର୍ଷ ଧରି ପୂଜା ଅବସରରେ ବିଭିନ୍ନ ସାହିତ୍ୟ ପତ୍ରିକାର ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ ଓ ପୁସ୍ତକ ପ୍ରକାଶନ ସଂସ୍ଥାମାନଙ୍କ ପକ୍ଷରୁ ପୁସ୍ତକ ପ୍ରକାଶ, ଏହି ଉତ୍ସବକୁ ସାରସ୍ୱତ ଗୌରବରେ ମଧ୍ୟ ମଣ୍ଡିତ କରୁଛି । ବ୍ୟବସାୟ ବିସ୍ତାର ପାଇଁ ମଧ୍ୟ ଏହି ଉତ୍ସବର ଉପଯୋଗ ହେଉଛି । ଏପରି ଆଶ୍ୱିନ ଶୁକ୍ଳପକ୍ଷର ଏହି ଉତ୍ସବଟି ବହୁ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ।

-o-

# ଐତିହାସିକ ପର୍ବ ବାଲିଯାତ୍ରା

କାର୍ତ୍ତିକ ପୂର୍ଣ୍ଣିମା ଦିନ କଟକରେ ମହାନଦୀ କୂଳର ଗଡ଼ଗଡ଼େଶ୍ୱର ଘାଟ ଠାରେ ନଗରୀର ନରନାରୀ ବିଶେଷତଃ ନାରୀମାନେ ପାହାନ୍ତି ଗାଧୁଆ ସାରି କଦଳୀ ବାସୁଙ୍ଗାରେ ତିଆରି ଛୋଟ ଛୋଟ ଡଙ୍ଗାରେ ଦୀପ ଜାଳି ସେଥିରେ ଗୁଆ, ପାନ ଅକ୍ଷତ ଓ ରାଶି ମିଶ୍ରିତ ପଞ୍ଚଶସ୍ୟ ରଖି ହୁଳହୁଳି ପକାଇ ଡଙ୍ଗାଟି ଭସାଇ ଦିଅନ୍ତି । ଡଙ୍ଗାଟି ଭସାଇବା ବେଳେ କହନ୍ତି - "ଆ କା ମା ଭୈ, ପାନ ଗୁଆ ଖାଇ, ପାନଗୁଆ ତୋର, ମାସକ ଧର୍ମ ମୋର ।" ଏହା ମାସ ବ୍ୟାପି କାର୍ତ୍ତିକ ବ୍ରତ, ହବିଷ ପାଳନର ଉଦ୍‌ଯାପନ ତିଥି । କାର୍ତ୍ତିକ ସ୍ନାନ ବିଧି ଭାରତର ଅନ୍ୟତ୍ର ପ୍ରଚଳିତ ଥିଲେ ହେଁ ଏପରି ଡଙ୍ଗା ଭସାଇବା ପରମ୍ପରା ସର୍ବତ୍ର ନାହିଁ । ତେଣୁ କେତେକଙ୍କ ମତରେ ଏହି ବିଧି ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟର ସ୍ମୃତି ବହନ କରେ । ଏହି ସମୟରେ ମହାନଦୀ କୂଳରେ ଥିବା ବାରବାଟି କିଲ୍ଲା ଠାରୁ ଗଡ଼ ଗଡ଼େଶ୍ୱର ଘାଟ ପର୍ଯ୍ୟନ୍ତ ବିସ୍ତୃତ ପଡ଼ିଆରେ ମେଳା ଜମେ । ବହୁ ଜନସମାଗମରେ କିଣାବିକା ଚାଲେ । କଦଳୀ ବାସୁଙ୍ଗା ଅଥବା ଆଜିକାଲି ସୋଲ, କାଗଜ ଇତ୍ୟାଦିରେ ନିର୍ମିତ ଛୋଟ ଛୋଟ ଡଙ୍ଗା ଭସାଇବାର ବିଧିଠାରୁ ମହାନଦୀ କୂଳ ବାଲୁକାରେ ବାଲୁକା ଲିଙ୍ଗ ସ୍ଥାପନ କରି ପୂଜା କରିବାର ବିଧି ଓ ମେଳାର ଆନନ୍ଦ ଏହି ପରିବେଶକୁ ଉତ୍ସବ ଉତ୍ସାହରେ ସରସ ସତେଜ କରି ରଖେ । ଏହି ପର୍ବର ନାମ ବାଲିଯାତ୍ରା । କିନ୍ତୁ କେତେକ ବିଦ୍ୱାନଙ୍କ ମତରେ କଟକର ଏହି ବାଲିଯାତ୍ରା ସହିତ ବାଲି ବା ବଳୀ ଦ୍ୱୀପକୁ ଯାତ୍ରା କରିବାର କୌଣସି ସଂପର୍କ ବା ସୂଚନା ନାହିଁ ।

କାର୍ତ୍ତିକ ପୂର୍ଣ୍ଣିମା ଦିନ ନଦୀ, ପୁଷ୍କରିଣୀ, ସମୁଦ୍ର ପ୍ରଭୃତିରେ ସ୍ନାନ କରି ଡଙ୍ଗା ଭସାଇବା ସହିତ ତା' କୂଳରେ ଶିବଙ୍କର ପ୍ରତୀକ ଭାବରେ ବାଲୁକା ଲିଙ୍ଗ ସ୍ଥାପନ କରି ପୂଜା କରାଯାଉଥିବାରୁ ଏହା ଗୋଟିଏ ପ୍ରାଚୀନ ଶୈବ ପର୍ବ ବୋଲି କୁହାଯାଏ । କଟକ, ପୁରୀ, ବାଲେଶ୍ୱର ପ୍ରଭୃତି ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲା ସମେତ ସମଗ୍ର ପଶ୍ଚିମ ଓଡ଼ିଶାରେ କାର୍ତ୍ତିକ ପୂର୍ଣ୍ଣିମା ଦିନ ଏହି ପର୍ବ ପାଳିତ ହୁଏ । ମାତ୍ର ସମ୍ବଲପୁର ଅଞ୍ଚଳରେ କଦଳୀ ବାସୁଙ୍ଗାର ବୋଇତ ପରିବର୍ତ୍ତେ ଦୀପ ଭସା ଯାଉଥିଲା । ଏଥିପାଇଁ କନିଅର ଫଳକୁ ବାଉଁଶ ଖଡ଼ିକାରେ ଗୁନ୍ଥି

ତା'ଉପରେ କାଉଁରିଆ କାଠିରେ ବିମାନ କରି ତା' ଉପରେ ବା ଭିତରେ ଦୀପ ଜାଳି ଭସାଇ ଦିଆଯାଉଥିଲା । ପ୍ରଫେସର ପ୍ରହ୍ଲାଦ ପ୍ରଧାନ ଏହି ଦୀପ ଭସାଇବା ଦୃଶ୍ୟ ଓ ବାଲିଯାତ୍ରାକୁ ଦୁଇଟି ସ୍ୱତନ୍ତ୍ର କୃତ୍ୟ ବୋଲି ଉଲ୍ଲେଖ କରି ଲେଖିଛନ୍ତି ''ଦୀପ ଭସାଇବା ନଈ, ପୋଖରୀ ବା ଯେ କୌଣସି ଜଳାଶୟରେ ସଂପାଦିତ ହୁଏ । କିନ୍ତୁ ବାଲିଯାତ୍ରା କେବଳ ନଦୀ ଭିତରେ ହୁଏ । ଏହି ବାଲିଯାତ୍ରାରେ ବାଲୁକା ଲିଙ୍ଗ ନିର୍ମିତ ହୋଇ ପୂଜିତ ହୁଅନ୍ତି । ଅନେକ ଲୋକ ଜମା ହୁଅନ୍ତି । କୀର୍ତ୍ତନ ମଣ୍ଡଳୀ ଆଦି ହୁଏ । ହାଟ ମଧ୍ୟ ବସିଥାଏ । କିନ୍ତୁ ମୁଖ୍ୟ ଉଦ୍ଦେଶ୍ୟ ହେଲା ସୈକତ ଲିଙ୍ଗ ବା ବାଲୁକା ଶିବଙ୍କ ପୂଜା । ଶିବଙ୍କ ସହିତ ଆଜିକାଲି ରାଧାକୃଷ୍ଣ ମଧ୍ୟ ପୂଜିତ ହୁଅନ୍ତି । ଏହା ବୋଧହୁଏ ଶୈବଙ୍କ ଉପରେ ବୈଷ୍ଣବଙ୍କର ପ୍ରଭାବ । କାର୍ତ୍ତିକ ମାସରେ ବିଶେଷକରି ପଞ୍ଚକରେ ସମ୍ବଲପୁରର ସ୍ତ୍ରୀମାନେ ଖୁବ୍ ଭୋରରୁ ଉଠି ମହାନଦୀରେ ସ୍ନାନ କରି ସୂର୍ଯ୍ୟୋଦୟ ପୂର୍ବରୁ ବାଲୁକା ପୂଜା ସାରି ଘରକୁ ଫେରି ଆସନ୍ତି । ଏହାକୁ ସେମାନେ ବାଲୁକା ପୂଜା କହନ୍ତି ।''

କଟକ ମହାନଦୀ କୂଳରେ ପୋତାଶ୍ରୟ ଥିବାର ଉଲ୍ଲେଖ ଏପର୍ଯ୍ୟନ୍ତ କୌଣସି ଠାରେ ମିଳିନାହିଁ । କିନ୍ତୁ ଏହା ଗୋଟିଏ ବାଣିଜ୍ୟ କେନ୍ଦ୍ର, ପୁଣି କେତେଗୁଡ଼ିଏ ଗ୍ରାମକୁ ଘେନି କାଳକ୍ରମେ ଏହା ବର୍ତ୍ତମାନର ରୂପ ଧାରଣ କରିଛି । ମହାନଦୀ ବହୁକାଳ ଧରି ଜଳପଥରେ ଗମନା ଗମନ ଓ ବାଣିଜ୍ୟ ବ୍ୟବସାୟରେ ସାହାଯ୍ୟ କରୁଥିଲା । ଏଠାରେ ଗୋଟିଏ ଗୋଲା ଥିଲା । ବିଶେଷକରି ମହାନଦୀର ଗଡ଼ଗଡ଼େଶ୍ୱର ଘାଟ ସମୀପବର୍ତ୍ତୀ ଅଞ୍ଚଳକୁ ଦେଖିଲେ ଏହା ଅନୁମାନ କରାଯାଏ । ପଣ୍ଡିତ ଗୋବିନ୍ଦ ରଥ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ରଚିତ ତାଙ୍କର 'କଟକ ଦର୍ଶନ' ପୁସ୍ତକରେ ଏ ସଂପର୍କରେ ସୂଚନା ଦେଇଛନ୍ତି । କଟକର ହବିଷାଳୀ ମାନଙ୍କର କାର୍ତ୍ତିକ ବ୍ରତ ଉଦ୍‌ଯାପନ ଓ ବାଲୁକାଶଙ୍କର ସ୍ଥାପନ, ପୂଜା, ଧର୍ମକୃତ୍ୟର ଅଙ୍ଗ ଭାବରେ କଦଳୀ ବାସୁଙ୍ଗାରେ ଡଙ୍ଗା ଭସାଇ 'ଆ, କା, ମା, ଭୈ' ଇତ୍ୟାଦି କହିବା ଏଠାରେ ଏକ ସ୍ୱାଭାବିକ ଧର୍ମକୃତ୍ୟ । କିନ୍ତୁ ଏହି ଉପଲକ୍ଷେ ଏଠାରେ ଜମୁଥିବା ପର୍ବଟିକୁ କେବେଠାରୁ ବାଲିଯାତ୍ରା କୁହାଗଲା, ତାହା ନିଶ୍ଚିତ ଭାବରେ କହିବା ସହଜ ନୁହେଁ । କେତେକଙ୍କ ମତରେ ପ୍ରାଚୀ ନଦୀରେ ବୋଇତ ବାଣିଜ୍ୟ ଚଳୁଥିଲା ଏବଂ ଏହା ସମୁଦ୍ର ସହିତ ସ୍ଥଳ ଭାଗକୁ ସଂଯୋଗ କରୁଥିଲା । ସେମାନଙ୍କ ମତରେ ବାରଙ୍ଗ ଠାରେ ପ୍ରାଚୀ ନଦୀର ଗୋଟିଏ ଗଣ୍ଡ ଥିଲା ଏବଂ ସେଠାରୁ ସମୁଦ୍ର ମଧ୍ୟକୁ ବୋଇତ ଯାଉଥିଲା । ତେଣୁ ସେଠାରୁ ବାଲି ପ୍ରଭୃତି

ଦ୍ୱୀପକୁ ମଧ୍ୟ ବୋଇତ ଯାଉଥିଲା । ତେଣୁ ସେଠାରେ ସାରଙ୍ଗଗଡ଼ର ରାଜାମାନେ କାର୍ତ୍ତିକ ପୂର୍ଣ୍ଣିମା ଦିନ ମହୋତ୍ସବ କରୁଥିଲେ ଏବଂ ସେଠାରୁ ହିଁ ବାଲିଯାତ୍ରା ପର୍ବ ଆରମ୍ଭ ହେଉଥିଲା । ଏହି ମତ ଅନୁସାରେ ବାଲିଯାତ୍ରା କଟକ ଗଡ଼ ଗଡ଼େଶ୍ୱର ଠାରେ ନୁହେଁ, ବାରଙ୍ଗ ଠାରେ ଆରମ୍ଭ ହୋଇଥିଲା । ସ୍ଥାନୀୟ ଲୋକେ ଏବେ ମଧ୍ୟ କଦଳୀ ବାସୁଙ୍ଗାରେ ବୋଇତ ଭସାଇ ବାଲିଯାତ୍ରା ପର୍ବ ପାଳନ କରୁଛନ୍ତି ।

ଧୀରେନ୍ ଦାସ ତାଙ୍କର ବାଲିଯାତ୍ରା ନାଟକରେ ସୁଦୂର ପୂର୍ବ ଏସିଆରେ ଅନୁରୂପ ପର୍ବ ପାଳନ ହେଉଥିବାର ଉଲ୍ଲେଖ କରି ବାଲି ଦ୍ୱୀପପୁଞ୍ଜ ସହିତ ବାଲିଯାତ୍ରା ପର୍ବର ଐତିହାସିକ ପର୍ବ ସଂପର୍କରେ ସୂଚନା ଦେଇଛନ୍ତି । ସଂପ୍ରତି ଥାଇଲାଣ୍ଡରେ କାର୍ତ୍ତିକ ପୂର୍ଣ୍ଣିମା ଦିନର ବୋଇତ ଭସାଣର ଯେଉଁ ଅନୁରୂପ ପର୍ବଟି ପାଳିତ ହେଉଛି, ତାର ନାମ ଲୟ କ୍ରାଥଙ୍ଗ ବା ଆଲୋକ ଭସାଣ (Loy Krathong or floating lights) ପର୍ବ । ବର୍ଷାଋତୁ ଶେଷରେ ଥାଇ ଚାନ୍ଦ୍ର ପଞ୍ଜିକାର ଦ୍ୱାଦଶ ମାସରେ ପୂର୍ଣ୍ଣିମା ଦିନ ସୂର୍ଯ୍ୟାସ୍ତ ସମୟରେ ଏହି ପର୍ବଟି ଅନୁଷ୍ଠିତ ହୁଏ । ନରନାରୀମାନେ କଟକ ପାଖ ମହାନଦୀରେ ବା ବାରଙ୍ଗ ଠାରେ ଥିବା ପ୍ରାଚୀ ଗଣ୍ଡରେ ଦୀପ ଭସାଣ ପର୍ବ କଲା ଭଳି ବ୍ୟାଙ୍କକ୍‌ର 'ଛାଓ ଫ୍ରାୟା' (Chao Phraya) ନଦୀରେ କ୍ରାଥଙ୍ଗ ଭସାନ୍ତି ଏବଂ ଆମ ବୋଇତ ଭସାଣ ବେଳେ 'ଆ, କା, ମା, ଭୈ' ପ୍ରଭୃତି ଗାଇବା ଭଳି 'ଲୟ ଲୟ କ୍ରାଥଙ୍ଗ' ବୋଲି ଗାନ କରନ୍ତି । ଏହାର ଅର୍ଥ 'କ୍ରାଥଙ୍ଗ ଭାସି ଭାସି ଯା' । କ୍ରାଥଙ୍ଗ ଗୁଡ଼ିକ କପ୍ ବା ବୋଟ୍ ଭଳି ଏବଂ କଦଳୀ ପତ୍ର ଓ ଫୁଲରେ ତିଆରି କରାଯାଇଥାଏ । ଏଥିରେ ବତୀ ଜଳାଯାଏ ଓ ଧୂପ ଦିଆଯାଏ । ଥାଇ ଲୋକମାନେ ନିଜ ନିଜ ଗ୍ରାମ ବା ସହର ନିକଟରେ ଥିବା ନଈନାଳ ପ୍ରଭୃତି ଜଳ ସ୍ରୋତରେ ଏହାକୁ ଭସାଇ ଦିଅନ୍ତି । ସେଗୁଡ଼ିକ ମନକୁ ମନ ପବନରେ ଜଳ ସ୍ରୋତରେ ଠେଲି ଠେଲି ହୋଇ ଭାସିଯିବା ବେଳେ ଧୂପର ମହକରେ ଦୁଇକୂଳ ମହକି ଉଠେ ଏବଂ କ୍ରାଥଙ୍ଗର ଶୋଭା ଏବଂ ତା' ଭିତରେ ଜଳୁଥିବା ବତୀର ଆଲୁଅରେ ଜଳସ୍ରୋତ ଅପୂର୍ବ ଶୋଭା ଧାରଣ କରେ । ସଂପ୍ରତି ପିଲା ଓ ଯୁବକ ଯୁବତୀମାନେ କ୍ରାଥଙ୍ଗ ଭସାଇବା ପରେ ଦଳ ଦଳ ହୋଇ ନୌକାରେ ନଦୀରେ ଯାଇ ଏହାର ଶୋଭା ଉପଭୋଗ କରିବା ସଙ୍ଗେ ସଙ୍ଗେ ନୌକା ଭିତରେ ପାରମ୍ପରିକ କ୍ରାଥଙ୍ଗ ଗୀତଗାଇ ବାଣଫୁଟାଇ ନିଜ ନୌକା ଭିତରୁ ଅପର ନୌକାକୁ ଉପହାର ସ୍ୱରୂପ ଫଳମାନ ପକା ପକି ହୋଇ ଉପଭୋଗ କରୁଥିବାର ଲକ୍ଷ୍ୟ କରାଯାଏ । ପୂର୍ଣ୍ଣିମାର ଜହ୍ନ ରାତିରେ ଏହା ବେଶ୍

ଉପଭୋଗ୍ୟ ହୁଏ । ମାତ୍ର ଥାଇଲାଣ୍ଡର ଲୋକ ବିଶ୍ୱାସ ଅନୁସାରେ ଲୟ କ୍ରାଥଙ୍ଗ ପର୍ବଟି ସେମାନଙ୍କ ଜଳଦେବୀ 'ମେ ଖଙ୍କ୍ ଖାଙ୍କ୍'ଙ୍କର ସନ୍ତୋଷ ବିଧାନ ପାଇଁ ପାଳନ କରାଯାଏ । ଭାରତ ସହିତ ଥାଇଲାଣ୍ଡର ସାଂସ୍କୃତିକ ସଂପର୍କ ଅତି ପ୍ରାଚୀନ । ସୁତରାଂ ଭାରତର ପବିତ୍ର ନଦୀ ବା ଜଳ ଦେବୀ 'ଗଙ୍ଗା ମା' ବା ମା' ଗଙ୍ଗାଙ୍କ ସହିତ 'ମେ ଖଙ୍କ୍ ଖାଙ୍କ୍'ଙ୍କର ସୌସାଦୃଶ୍ୟ ରହିବା ସ୍ୱାଭାବିକ୍ ।

ଜଳରାଶି କୃଷକର ସମ୍ପଦ । ତାର ଜୀବନ ସ୍ରୋତ ସହିତ ଜଳଧାରାର ସଂପର୍କ । ମନୁଷ୍ୟ ଏଥିରେ ସ୍ନାନ କରି ଶରୀରକୁ ପରିଚ୍ଛନ୍ନ କରେ ଓ ସ୍ନାନ ମାତ୍ରକେ ତାର ପାପରାଶି ଧୌତ ହୋଇଯାଏ ଓ ସେ ପବିତ୍ର ହୋଇଯାଏ ବୋଲି ଭାବେ । ତେଣୁ ସେ ଜଳଦେବୀଙ୍କୁ କୃତଜ୍ଞତା ଜଣାଇବା ଓ କ୍ଷମାଭିକ୍ଷା କରିବା ପାଇଁ ଏହି ପର୍ବ ପାଳନ କରେ । ଏହା ଥାଇଲାଣ୍ଡର ଗୋଟିଏ ପ୍ରାଚୀନ ପର୍ବ । ଏବେ ଏଥିରେ ବହୁ ପରିବର୍ତ୍ତନ ଘଟି ଏହା କ୍ରମେ ଏକ ଧର୍ମ ନିରପେକ୍ଷ ଆମୋଦଦାୟକ ପର୍ବ ପରି ମନେ ହେଉଛି । ତଥାପି ଏହା ଗୋଟିଏ ଧର୍ମକୃତ୍ୟ । ଲୋକେ ଏବେ ମଧ୍ୟ କ୍ରାଥଙ୍ଗ ଭସାଇବା ବେଳେ ମନ କାମନା ଜଣାଇ ପ୍ରାର୍ଥନା କରନ୍ତି । କ୍ରାଥଙ୍ଗ ଆଲୋକ ବର୍ତ୍ତିକା ଘେନି ଭାସି ଭାସି ଯିବା ବେଳେ ଭୂତ ପ୍ରେତ ପ୍ରଭୃତି ଦୁଷ୍ଟ ଶକ୍ତି ଓ ପାପରାଶିକୁ ଭସାଇ ନିଏ ବୋଲି ବିଶ୍ୱାସ କରାଯାଏ । ଓଡ଼ିଶାରେ କାର୍ତ୍ତିକ ପୂର୍ଣ୍ଣିମା କୃତ୍ୟରେ କାର୍ତ୍ତିକ ମାସ ସାରା ପାହାନ୍ତି ଗାଧୁଆ କରି ହବିଷ ପାଳୁଥିବା ପୁଣ୍ୟାର୍ଥୀ ଓ ପୁଣ୍ୟାର୍ଥୀନୀମାନେ 'ଆ, କା, ମା, ଭୈ, ପାନ ଗୁଆ ଖାଇ, ପାନ ଗୁଆ ତକ ତୋର, ମାସକ ଧର୍ମ ମୋର' ବୋଲି କହି କଦଳୀ ବାସୁଙ୍ଗାରେ ଡଙ୍ଗା ଭସାଇବା ବିଧି ସହିତ ଏହାର କିଛି କିଛି ସାମଞ୍ଜସ୍ୟ ଲକ୍ଷ୍ୟ କରାଯାଏ ।

ସାରଳା ଦାସଙ୍କ ମହାଭାରତର ଆଦି ପର୍ବରେ କୁନ୍ତଭୋଜ ରାଜା କାର୍ତ୍ତିକ ପୂର୍ଣ୍ଣିମା ଦିନ ଗଙ୍ଗାରେ ସ୍ନାନ କରି ଆ, କା, ମା, ଭୈ କୃତ୍ୟ ପାଳନ କରିଥିବାର ବର୍ଣ୍ଣନା ଅଛି । ପୁଣି ଏହି ସମୟରେ ଭୀଷ୍ମ ଏହି ସ୍ନାନକୁ ଆସିଥିବା ଏବଂ ସେଠାରେ କୁନ୍ତଭୋଜଙ୍କ ସହିତ ତାଙ୍କର ମିତ୍ରତା ହେବାର ବର୍ଣ୍ଣନାରୁ ଏ ପ୍ରକାର ପର୍ବ ପର୍ବାଣିରେ ସାମାଜିକ ବନ୍ଧନ ନିବିଡ଼ ହେବାର ସଂକେତ ମିଳୁଛି ।

କାର୍ତ୍ତିକ ପୂର୍ଣ୍ଣିମାରେ ଜଳଦେବୀ ବା ଗଙ୍ଗାଙ୍କର ପୂଜା କାଳକ୍ରମେ ଓଡ଼ିଶାର ଧର୍ମଧାରାରେ ଗଙ୍ଗାଧର ଶିବଙ୍କ ପୂଜା, ବାଲୁକା ପୂଜାରେ ପରିଣତ ହୋଇଥିବା

ସମ୍ଭବ : ପାର୍ବତୀ ସୈକତ ଲିଙ୍ଗ ସ୍ଥାପନ କରି ଭାଦ୍ର ଶୁକ୍ଳ ତୃତୀୟା ଦିନ ଶିବଙ୍କୁ ବର ରୂପେ ପାଇଥିଲେ ବୋଲି ଗୌରୀ ବ୍ରତରେ ବର୍ଣ୍ଣନା ଅଛି । ଏହି ବ୍ରତର ଅନ୍ୟନାମ ବାଲି ତୃତୀୟା । କଳିଙ୍ଗର ନାବିକ ଓ ସାଧବମାନେ ଏହି ଧର୍ମକୃତ୍ୟ ବାଲି ବା ବଳି ଓ ତାର ନିକଟବର୍ତ୍ତୀ ଦ୍ୱୀପପୁଞ୍ଜରେ ଥିବାବେଳେ ପାଳନ କରିଥିବା ଓ ତାହା କାଳକ୍ରମେ ସେଠାରେ ପ୍ରବର୍ତ୍ତିତ ହୋଇଥିବାର ସମ୍ଭାବନାକୁ କୌଣସି ନିଶ୍ଚିତ ପ୍ରମାଣ ନଥିଲେ ମଧ୍ୟ ଅସ୍ୱୀକାର କରି ହେବନାହିଁ ।

କୋରାପୁଟର ଆଦିବାସୀମାନଙ୍କ ମଧ୍ୟରେ ଭାଦ୍ରବ ମାସରେ ବାଲିଯାତ୍ରା ନାମରେ ଗୋଟିଏ ପର୍ବ ପାଳିତ ହୁଏ । ଅବିବାହିତା ଆଦିବାସୀ କୁମାରୀମାନେ ଏଥିରେ ମୁଖ୍ୟ ଅଂଶଗ୍ରହଣ କରନ୍ତି । ଏହା ଭାଦ୍ର ପୂର୍ଣ୍ଣିମାର ପାଞ୍ଚଦିନ ପୂର୍ବରୁ ଆରମ୍ଭ ହୋଇ ପୂର୍ଣ୍ଣିମା ଯିବାର ପାଞ୍ଚଦିନ ପର୍ଯ୍ୟନ୍ତ ଚାଲେ । କୁମାରୀମାନେ ନିକଟବର୍ତ୍ତୀ ନଦୀ ବା ଝରଣାରୁ ଓଦା ବାଲି ସଂଗ୍ରହ କରି ଗୋଟିଏ ଘରେ ସେହି ବାଲିରେ ନାନା ପ୍ରକାର ଶସ୍ୟ ପୋତିବା ଏବଂ ଏହି ଘର ନିକଟରେ ନାଚ ଗୀତ, ପୂଜା ଏବଂ ବଳି ପକାଇବା ଇତ୍ୟାଦି କୃତ୍ୟ ସମ୍ପାଦନ କରିଥାଆନ୍ତି । ପୋତା ହୋଇଥିବା ଶସ୍ୟ ଭିତରୁ ଯେଉଁ ଶସ୍ୟ ପ୍ରଥମେ ଗଜା ଧରେ ସେହି ବର୍ଷ ସେହି ଶସ୍ୟ ଭଲ ଫଳିବ ବୋଲି ବିଶ୍ୱାସ କରାଯାଏ । ପୂଜା ଶେଷରେ ଟାଙ୍ଗୁଡ଼ିରେ ଶସ୍ୟ ବୀଜ ପୋତା ହୋଇଥିବା ବାଲିକୁ ନେଇ ପୁନର୍ବାର ନଦୀ ବା ଝରଣାରେ ବିସର୍ଜନ କରାଯାଏ । ଆଦିବାସୀ ଧର୍ମ ଧାରାର ବିଧି ବିଧାନ ଓ ପରମ୍ପରା ଅନୁସାରେ ଏହା ପାଳନ କରାଯାଏ । ଉର୍ବରତାବାଦ (Fertility Cult) ସହିତ ଏହି ପର୍ବର ସଂପର୍କ । ଏହାଛଡ଼ା ଏହି ମହାନଦୀ ତୀରବର୍ତ୍ତୀ ସୋନପୁରଠାରେ ମଧ୍ୟ ବଳିଯାତ୍ରା ବୋଲି ଗୋଟିଏ ପର୍ବ ପାଳିତ ହୁଏ । ଏହା ଜଣେ ବରୁଆଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ହୁଏ । ମାତ୍ର ଏହା ଆଦିମ ବଳିଯାତ୍ରା ତନ୍ତ୍ରାଚାର ବା ଗୁହ୍ୟ ଯାଦୁ କୃତ୍ୟ ସହିତ ସଂପୃକ୍ତ ଏକ ସ୍ୱତନ୍ତ୍ର ପର୍ବ । ଏହି ମୂଳ ଆଦିବାସୀ ପର୍ବ ବାଲିଯାତ୍ରା, ହୁଏତ କୌଣସି ସମୟରେ କଟକର ମହାନଦୀ ପଠାରେ ପାଳିତ ହେଉଥିବ । କିନ୍ତୁ ବର୍ତ୍ତମାନ ଏହାର କୌଣସି ସ୍ପଷ୍ଟ ସଂକେତ ନାହିଁ ।

କଳିଙ୍ଗର ଦରିଆପାରି ବାଣିଜ୍ୟ ଥିଲା ବୋଲି ଇତିହାସରୁ ଜଣାଯାଏ । ତେଣୁ କୌଣସି ଗୋଟିଏ ପ୍ରାଚୀନ ପର୍ବକୁ ନବ ରୂପ ଦେଇ ଏହି ସ୍ମୃତି ପାଳନ କରିବାରେ କୌଣସି ଅସ୍ୱାଭାବିକତା ନାହିଁ । ସଂପ୍ରତି ବାଲିଯାତ୍ରା ଉତ୍ସବ ଜିପରି ସରକାରୀ ଉଦ୍ୟମରେ ଓ ସ୍ଥାନୀୟ ଲୋକଙ୍କ ସହଯୋଗରେ ଅନୁଷ୍ଠିତ ହେଉଛି,

ତାହା ବାଲିଯାତ୍ରା ପୂର୍ବର ଆୟୋଜନ ଓ ପରର ଉଦ୍‌ଯାପନ ବର୍ଣ୍ଣନା ସମ୍ବଳିତ ସମ୍ବାଦପତ୍ରମାନଙ୍କର ବିବରଣୀରୁ ଜଣାପଡ଼େ । ସରକାର ଏହି ପର୍ବ ପାଇଁ କଟକ ବାଲିଯାତ୍ରା ପଡ଼ିଆରେ ଅନେକ ଉନ୍ନୟନ କାର୍ଯ୍ୟ କରିଛନ୍ତି । ମହାନଦୀ ମୁହାଣ ଠାରେ ୧୯୬୨ରେ ପାରାଦୀପ ବନ୍ଦର ଶୁଭ ଦିଆଯିବା ପରେ ପରେ ଏହି ବନ୍ଦର ପ୍ରତିଷ୍ଠା ଦିନରୁ ବାଲିଯାତ୍ରା ଏକ ନୂଆ ମୋଡ଼ ନେଇଛି । ରାଜ୍ୟର ମୁଖ୍ୟମନ୍ତ୍ରୀ ଏଠାରେ ବୋଇତ ବନ୍ଦାଣ କରିବା ଏବଂ ସଭାରେ ଓଡ଼ିଶା ନୌବାଣିଜ୍ୟ ଦିନର ପରମ୍ପରାକୁ ସ୍ମରଣ କରିବାର ଉତ୍ସବ ଭାବରେ ଏହି କାର୍ତ୍ତିକ ପୂର୍ଣ୍ଣିମା ତିଥିକୁ ବନ୍ଦର କର୍ତ୍ତୃପକ୍ଷଙ୍କ ତରଫରୁ ପାଳନ କରାଯିବା ବିଶେଷ ପ୍ରଣିଧାନଯୋଗ୍ୟ । ତା ୫.୧୧.୧୯୭୯ରେ ପାରାଦ୍ୱୀପଠାରେ ଅନୁଷ୍ଠିତ ବୋଇତ ବନ୍ଦାଣ ଉତ୍ସବରେ ବନ୍ଦର ଅଧ୍ୟକ୍ଷ ତାଙ୍କର ସ୍ୱାଗତ ଭାଷଣରେ କହିଥିଲେ - " ଆମର ଅତୀତ ସ୍ମୃତିକୁ ମନେ ପକାଇବା ପାଇଁ ପାରାଦ୍ୱୀପରେ ଅନୁଷ୍ଠିତ ହେବାକୁ ଯାଉଥିବା ବୋଇତ ବନ୍ଦାଣ ଉତ୍ସବ ସମଗ୍ର ଜାତି ପାଇଁ ଏକ ଗୌରବର କଥା । ସ୍ୱାଧୀନତା ପୂର୍ବରୁ ଏହି ଜାତି ଯେଉଁ ମହାନ୍ ଐତିହ୍ୟ ହରାଇଥିଲା, ଏହି ସାଂସ୍କୃତିକ ଉତ୍ସବ ମାଧ୍ୟମରେ ସେଗୁଡ଼ିକୁ ମନେ ପକାଇ ଆମେ ଆମର ପୂର୍ବ ପୁରୁଷଙ୍କୁ ସମ୍ମାନ ଦେଉଛୁ ।" ଏହି ପ୍ରସଙ୍ଗରେ ତଦାନୀନ୍ତନ ମୁଖ୍ୟମନ୍ତ୍ରୀ ମଧ୍ୟ କହିଥିଲେ- "ଏ ପ୍ରଦେଶର ଲୋକ ଯେ ଯେଉଁଠି ଥାନ୍ତୁନା କାହିଁକି, ଆଜିର ଶୁଭ ଦିନରେ ତାଙ୍କର ଅତୀତ ସ୍ମୃତିକୁ ମନେ ପକାଇ ବୋଇତ ଭସାଇଥାନ୍ତି । ଆଜିର ଏହି ଦିବସରେ ଆମର ପୂର୍ବ ପୁରୁଷ ସାଧବମାନେ ଯେ କେବଳ ବୋଇତ ଭସାଇ ବିଭିନ୍ନ ଦେଶକୁ ଯାଇ ବଣିଜ କରି ଧନ ସଂପଦ ଅର୍ଜନ କରୁଥିଲେ, ତାହା ନୁହେଁ ଏହା ଦ୍ୱାରା ଦେଶ ଦେଶ ମଧ୍ୟରେ ସେମାନେ ସୁ-ସଂପର୍କ ସ୍ଥାପନ କରି ପରସ୍ପର ଭିତରେ ବୈଦେଶିକ ମତ ବିନିମୟ କରୁଥିଲେ ।"

ପ୍ରତ୍ୟେକ ବଡ଼ ବଡ଼ ପର୍ବରେ ଧର୍ମ ସହିତ କିଛି କିଛି ଧର୍ମେତର ବା ଧର୍ମାତିରିକ୍ତ ଅଙ୍ଗ ମଧ୍ୟ ଥାଏ । କଟକ ବାଲିଯାତ୍ରା ମେଳାରେ ନାନା ପ୍ରକାର ଆବଶ୍ୟକୀୟ ଦ୍ରବ୍ୟ ଠାରୁ ସୌଖୀନ ଦ୍ରବ୍ୟର କିଣାବିକା, ନାନା ପ୍ରକାରର ସରକାରୀ ଷ୍ଟଲ ଏବଂ ମେଳା ସ୍ଥାନରେ ଆମୋଦଦାୟକ ନୃତ୍ୟ ସଂଗୀତ ଆୟୋଜନ ଭଳି ଧର୍ମେତର ଦିଗ ମଧ୍ୟ ଲକ୍ଷ୍ୟ କରାଯାଏ । ସମ୍ବାଦପତ୍ରମାନଙ୍କରେ ବାହାରେ - " କଟକରେ ଐତିହାସିକ ବାଲିଯାତ୍ରା ଆରମ୍ଭ ।" ଏହାକୁ କଳିଙ୍ଗର ଅତୀତ ନୌବାଣିଜ୍ୟ ସହିତ ସଂପୃକ୍ତ ପର୍ବ ବୋଲି କହି ଐତିହାସିକ ଉତ୍ସବ ଭାବରେ

ଜାତୀୟ ଗୌରବ ପ୍ରତିଷ୍ଠା ଓ ସ୍ୱାଭିମାନ ଜାଗ୍ରତ କରିବାର ଉଦ୍ୟମକୁ ପାରମ୍ପରିକ ପର୍ବର ନବୀକରଣ ପ୍ରୟାସ ଭାବେ ଗ୍ରହଣ କରାଯାଇପାରେ । ପୁଣି ଓଡ଼ିଶାର ବହୁ ଲୋକ କଥା ଓ ପରମ୍ପରାରେ ସାଧବ କୁଳ ଓ ସେମାନଙ୍କର ଦରିଆପାରି ବୋଇତ ବଣିଜ ସ୍ମୃତି ବନ୍ଧୁ ରହିଥିବାରୁ ଏବଂ ଏ ସଂପର୍କରେ ବହୁ ଐତିହାସିକ ତଥ୍ୟ ଓ ଉପାଦାନ ଓଡ଼ିଶାର ବିଭିନ୍ନ ସ୍ଥାନରୁ ମିଳୁଥିବାରୁ, ପାରମ୍ପରିକ ପର୍ବରେ ଐତିହାସିକତା ଲକ୍ଷ୍ୟ କରିବା ଏପରିକି କି ଆରୋପ କରିବାରେ ଅସ୍ୱାଭାବିକତା ନାହିଁ । ତଥାପି କେହି କେହି ମନେ କରନ୍ତି କଟକର ବାଲିଯାତ୍ରାକୁ 'ଐତିହାସିକ' ରୂପ ଦିଆଯାଇଛି । ଗୋଟିଏ ଜାତିର ଐଶ୍ୱର୍ଯ୍ୟମୟ ଅତୀତର ପ୍ରତିଫଳନ ପାଇଁ ପାରମ୍ପରିକ ପର୍ବକୁ ପିନ୍ଧାଇ ଦିଆଯାଇଛି 'ଐତିହାସିକ ପର୍ବ'ର ସୁନା ମୁକୁଟ ।

–୦–

# ଦୀପଂ ଜ୍ୟୋତିଃ

ସଂଜବେଳେ ତୁଳସୀ ଚଉରା ପାଖରେ ଦୀପଟିଏ ଜଳିଲେ 'ଦୀପଂ ଜ୍ୟୋତିଃ ପରଂବ୍ରହ୍ମ, ଦୀପଂ ଜ୍ୟୋତିଃ ଜନାର୍ଦ୍ଦନ, ଦୀପଂ ଜ୍ୟୋତିଃ ହରତେ ପାପମ୍' ଇତ୍ୟାଦି ବୋଲି ପ୍ରାର୍ଥନା କରାଯାଏ, ପ୍ରଣାମ କରାଯାଏ । ଅବଶ୍ୟ, ଆଜିକାଲି ନବ ଶୈଳୀରେ ନିର୍ମିତ ଅନେକ ଆବାସରେ ଅଗଣା ନାହିଁ କି ଚଉରା ନାହିଁ । ତଥାପି ଯଦି ଘର ଭିତରେ ଦିଅଁଙ୍କ ଘର ବା ଦେବପୂଜା ସ୍ଥାନ ଥିବ, ତେବେ ସେଠାରେ ପ୍ରଦୀପ ଜଳା ଯାଉଥିବ । କିନ୍ତୁ କାର୍ତ୍ତିକ ଅମାବାସ୍ୟା ଦିନ ସକାଳୁ ଘରକୁ ଗୋମୟରେ ଲିପି ଅଥବା ଜଳ ଧୌତ କରି ପବିତ୍ର ରଖିବା ସହିତ ସନ୍ଧ୍ୟା ହେଉ ନ ହେଉଣୁ ଏବଂ ତାହା ପୁଣି ନିଶାର୍ଦ୍ଧ ପର୍ଯ୍ୟନ୍ତ ପ୍ରଦୀପମାଳାରେ ସୁସଜ୍ଜିତ କରାଯାଏ କାହିଁକି ? ନଗର ଜନପଦ ଆଲୋକରେ ଉଦ୍‌ଭାସିତ ହୋଇଉଠେ କାହିଁକି ? କାହିଁକି ଏହି ଅମାବାସ୍ୟା ସନ୍ଧ୍ୟାରୁ ନିଶାର୍ଦ୍ଧ ପର୍ଯ୍ୟନ୍ତ ଅଗ୍ନିକ୍ରୀଡ଼ାର ବିପୁଳ ଆୟୋଜନ ? କାହିଁକି ଉତ୍ସାହ ଓ ନାନା ପ୍ରକାର ଶବ୍ଦ ସହ ବାଣ ଗୁଡ଼ିକରୁ ବାରୁଦରେ ଅଗ୍ନିମିଶି ନାନା ବର୍ଣ୍ଣର ଆଲୋକ ଉଦ୍‌ଗୀରଣ କରି ଦିଗବିଦିଗ ଉଦ୍‌ଭାସିତ କରେ ?

ଗଦାଧର ରାଜଗୁରୁ, ତାଙ୍କର କାଳସାର ବା ଗଦାଧର ପଦ୍ଧତିରେ ଧର୍ମଳ ସଂଗ୍ରହରୁ ପଦ ଉଦ୍ଧାର କରି ଲେଖିଛନ୍ତି-

ଅମାବାସ୍ୟାଂ ତୁଳାଦିତ୍ୟେ ଲକ୍ଷ୍ମୀର୍ନିଦ୍ରାଂ ବିମୁଞ୍ଚତି
ସୁଖରାତ୍ରେରୁଷଃ କାଳେ ପ୍ରଦୀପୋଜ୍ଜଳିତାଳୟେ ।

କେବଳ ଲକ୍ଷ୍ମୀଙ୍କର ସନ୍ତୋଷ ପାଇଁ ଲକ୍ଷ୍ମୀ ପୂଜା ନୁହେଁ, ସେଦିନ ଅଲକ୍ଷ୍ମୀଙ୍କ ପୂଜା ମଧ୍ୟ କରାଯାଏ ।

'ପୂଜୟେଚ୍ଚ ତଥା ଲକ୍ଷ୍ମୀମଲକ୍ଷ୍ମୀ ମଳବାଶିନୀମ୍ ।' ସେଦିନ ବନ୍ଧୁବାନ୍ଧବଙ୍କୁ କୁଶଳ ଜିଜ୍ଞାସା କରି ସଙ୍ଖୋଳିବା କଥା ବୋଲି ମଧ୍ୟ କୁହାଯାଇଛି -

ସୁଶୁଭୈଃ କୁସୁମୈର୍ଗନ୍ଧୈର୍ଦ୍ଧି ଗୋରୋଚନା ଫଳୈ ।
ବନ୍ଧୁନ୍ ବାନ୍ଧବ ବନ୍ଧୂଂଶ୍ଚ ପୃଚ୍ଛେତ୍ କୁଶଳୟାଗିରା ॥

ଏପରି ଲକ୍ଷ୍ମୀ ଏବଂ ଅଲକ୍ଷ୍ମୀଙ୍କ ପୂଜା, ବନ୍ଧୁବାନ୍ଧବ ପଚରା ସଙ୍ଖୋଳା ଏହି ଦିନର ଗୋଟିଏ ବଡ଼ ପୂଜା ଉତ୍ସବ ବୋଲି ଏଥିରୁ ଜଣାଯାଉଥିଲେ ମଧ୍ୟ, ଏହି ତିଥିର ମୁଖ୍ୟ ପର୍ବ ହେଲା - କାଳୀପୂଜା ।

ପୁରାଣରେ ଅଛି କାର୍ତ୍ତିକ ଅମାବାସ୍ୟା ନିଶାର୍ଦ୍ଧରେ ମହାଘୋର, ଉଗ୍ରରୂପିଣୀ ମହାକାଳୀ କୋଟି କୋଟି ଯୋଗିନୀଙ୍କ ସହ ଆବିର୍ଭୂତା ହୋଇଥିଲେ ।

ଡାକିନୀଗଣଙ୍କ ସହ ମହାକାଳୀଙ୍କ ଆବିର୍ଭାବର ତିଥିକାଳ ସମ୍ପର୍କରେ ଉଲ୍ଲେଖ ଅଛି-

କାର୍ତ୍ତିକେ କୃଷ୍ଣପକ୍ଷେତୁ ପଞ୍ଚଦଶ୍ୟାଂ ମହାନିଶି ।
ଆବିର୍ଭୂତା ମହାକାଳୀ ଯୋଗିନୀ କୋଟିଭିଃ ସହ ॥

ଦେବତା ଓ ଅପଦେବତା, ଉଭୟଙ୍କର ପୂଜା ତ ପୃଥିବୀର ବିଭିନ୍ନ ପ୍ରାଚୀନ ସଭ୍ୟତାର ଆଦି ସ୍ତରରେ ଲକ୍ଷ୍ୟ କରାଯାଏ । ତେବେ, ସେଦିନ ନିଶାର୍ଦ୍ଧପର୍ଯ୍ୟନ୍ତ ପ୍ରଦୀପ ସଜାଡ଼ି ରହିବା ପ୍ରଚଣ୍ଡ ଆତସବାଜୀ କ'ଣ ମହାକାଳୀ ଓ ଯୋଗିନୀମାନଙ୍କର ସନ୍ତୋଷବିଧାନ ପାଇଁ କରାଯାଏ ?

କାର୍ତ୍ତିକ ଅମାବାସ୍ୟାର ଅନ୍ୟନାମ ପିପେଇ ଉଆଁସ ବା ପିପେଇ ଅମାବାସ୍ୟା, ପଯା ଶ୍ରାଦ୍ଧ । ଶ୍ରାଦ୍ଧ କୃତ୍ୟ ପିଣ୍ଡଦାନ ପରେ କାଉଁରିଆ ବିଡ଼ାକରେ ଅଗ୍ନି ସଂଯୋଗ କରି ବଡ଼ ବଡ଼ିଆ ବା ପିତୃ ପୁରୁଷଙ୍କ ଉଦ୍ଦେଶ୍ୟରେ କୁହାଯାଏ-

ବଡ଼ ବଡ଼ିଆ ହୋ, ଅନ୍ଧାରେ ଆସି ଆଲୁଏ ଯାଅ
ଗଙ୍ଗାଯାଅ, ଗୟା ଯାଅ, ବାଇଶି ପାହାଚରେ ଗଡ଼ଗଡ଼ଉ ଥାଅ ।

ସ୍ମୃତି ଶାସ୍ତ୍ରମାନଙ୍କରୁ ଶାସ୍ତ୍ରବାକ୍ୟମାନ ଉଦ୍ଧାର କରି କୁହାଯାଇଛି-

ତୁଳା ସଂସ୍ଥେ ସହସ୍ରାଂଶୌ, ପ୍ରଦୋଷେ ଭୂତ ଦର୍ଶୟୋଃ
ଉଲ୍‌କା ହସ୍ତା ନାରାଃ କୁର୍ଯ୍ୟୁଃ, ପିତୃଣାଂ ମାର୍ଗ ଦର୍ଶନମ୍ ।

ଉଲ୍‌କା ଗ୍ରହଣ ମନ୍ତ୍ରଟିରେ କୁହାଯାଇଛି -

ଅସ୍ତ୍ରଶସ୍ତ୍ର ହତାନାଂ ଚ ଭୂତାନାଂ ଭୂତଦର୍ଶୟୋଃ
ଉଜ୍ଜ୍ୱଳଂ ଜ୍ୟୋତିଷଂ ଦେହଂ ଦଦେୟଂ ବ୍ୟୋମ ବର୍ତ୍ତିନା ।

ଉଲ୍‌କାଦାନ କଲାବେଳେ ପୁରୋହିତଙ୍କ ଦ୍ୱାରା ଉଚ୍ଚାରଣ କରାଇ କୁହାଯାଏ-

ଅଗ୍ନିଦଗ୍ଧାଶ୍ଚ ଯେ ଜୀବା ଯୋଽପ୍ୟ ଦଗ୍ଧାଃ କୁଳେମମ
ଉଜ୍ଜ୍ୱଳ ଜ୍ୟୋତିଷାଂ ଦଗ୍ଧାଃ ତେ ଯାନ୍ତୁ ପରମାଂ ଗତି ।

କ୍ରତ୍ୱାଦି ଦେବତାଃ ସର୍ବାଃ ପିତରଶ୍ଚ ମହର୍ଷୟଃ
ସର୍ବେତେ ବ୍ୟପ ଗଚ୍ଛନ୍ତୁ ଅନୟା ଜ୍ୱଳୟା ସହ ।

ବିସର୍ଜନ ମନ୍ତ୍ରରେ କୁହାଯାଏ-

ପିତୃଲୋକ ପରିତ୍ୟଜ୍ୟ ଆଗତା ଯେ ମହାଳୟେ

ଉଜ୍ଜ୍ୱଳଂ ଜ୍ୟୋତିଷାମାର୍ଗଂ ପ୍ରପଶ୍ୟନ୍ତୋ ବ୍ରଜନ୍ତୁ ତେ ।

ଏହାପରେ " ଗୃହଦେବତା ଭେ୍ୟା ଢୀବତ୍ ପିତୃଭ୍ୟଃ ବନ୍ଧୁଭ୍ୟଶ୍ଚ ଦୀପଂ ଦଦ୍ୟାତ୍" ବୋଲି ଉଲ୍ଲେଖ ଅଛି । ସ୍ମୃତି ଶାସ୍ତ୍ରମାନଙ୍କରେ ଉଦ୍ଧାର କରାଯାଇଥିବା ଏହି ସମସ୍ତ କୃତ୍ୟର ବିଧି ବିଧାନ ଗୁଡ଼ିକରେ ପରମ୍ପରାକ୍ରମେ ଚଳି ଆସୁଥିବା ବିଶ୍ୱାସ ପ୍ରତିଫଳିତ ହୋଇଛି । ପିତୃଲୋକଙ୍କ ପ୍ରତି ଓଡ଼ିଆ ହିନ୍ଦୁ ସମାଜର ଏହି ପଯ୍ୟା ଶ୍ରାଦ୍ଧବିଧି ବିଷୟ ବିଚାର କଲାବେଳକୁ, ପାଞ୍ଜିରେ ଏହା ସହିତ ଉଲ୍ଲେଖ ଥିବା ଆଉ ଗୋଟିଏ ବାକ୍ୟ ମଧ୍ୟ ଆଖିରେ ପଡ଼େ - "ମାରୱାଡ଼ିମାନଙ୍କର ଦିୱାଲି ଉପଲକ୍ଷେ ମହୋତ୍ସବ ।"

ମାରୱାଡ଼ିମାନେ ଏବେ ଓଡ଼ିଶାର ଅଧିବାସୀ ଏବଂ ଓଡ଼ିଆ ସମାଜ ସହିତ, ସମ୍ଭବତଃ, ଧର୍ମ କର୍ମରେ ସାମିଲ ହୋଇଛନ୍ତି । ସେଥିପାଇଁ ବୋଧହୁଏ, ଓଡ଼ିଆ ପାଞ୍ଜିମାନଙ୍କର ସେମାନଙ୍କରେ ଦିୱାଲୀ ଉତ୍ସବର ନାମ ଉଲ୍ଲେଖ ରହୁଛି । ଏହି ମାରୱାଡ଼ିମାନେ ଅଳ୍ପ କେତେକ ପୁରୁଷ ହେଲା ଓଡ଼ିଶାକୁ ଆସିଛନ୍ତି । ଏମାନେ ଜୈନ । ମାତ୍ର ଜୈନ ଧର୍ମ ଓଡ଼ିଶାରେ ନୂଆ ନୁହେଁ । ବରଂ ଏହା ଓଡ଼ିଶାର ଗୋଟିଏ ପ୍ରାଚୀନ ଧର୍ମ ।

ଖାରବେଳଙ୍କ ହାତୀଗୁମ୍ଫା ଶିଳା ଲେଖ ଏବଂ ଖଣ୍ଡଗିରିର ବାରଭୁଜି ଗୁମ୍ଫା, ବେମୁକୀ ଗୁମ୍ଫା, ମହାବୀର ଗୁମ୍ଫାମାନଙ୍କରେ ଋଷଭାନାଥଙ୍କ ଠାରୁ ପାର୍ଶ୍ୱନାଥ ଓ ମହାବୀରଙ୍କ ପର୍ଯ୍ୟନ୍ତ ଚବିଶ ତୀର୍ଥଙ୍କରଙ୍କ ଖୋଦିତ ମୂର୍ତ୍ତିରୁ ଏଠାରେ ଜୈନଧର୍ମର ପ୍ରାଚୀନତା ଓ ପ୍ରଭାବ ସମ୍ପର୍କରେ ଅନୁମାନ ହୁଏ । ଡକ୍ଟର ଲକ୍ଷ୍ମୀ ନାରାୟଣ ସାହୁ, ପ୍ରଫେସର ଡକ୍ଟର ନବୀନକୁମାର ସାହୁ, ଡକ୍ଟର ରମେଶ ପ୍ରସାଦ ମହାପାତ୍ର ପ୍ରମୁଖ ଏ ସମ୍ପର୍କରେ ବିସ୍ତୃତ ଆଲୋଚନା କରିଛନ୍ତି । ଖଣ୍ଡଗିରିର ଗୁମ୍ଫାମାନଙ୍କରେ ଋଷଭନାଥ, ପାର୍ଶ୍ୱନାଥ ଓ ମହାବୀରଙ୍କ ମୂର୍ତ୍ତି ବହୁ ସ୍ଥାନରେ ଦେଖାଯାଏ । ଏମାନେ ଏଠାରେ ଅଧିକ ଲୋକପ୍ରିୟ ଥିବେ ବୋଲି, ଏଥିରୁ କେହି କେହି ଅନୁମାନ କରନ୍ତି ।

ଲକ୍ଷ୍ମୀ ନାରାୟଣ ସାହୁ, ତାଙ୍କର ଓଡ଼ିଶାରେ ଜୈନଧର୍ମ ପୁସ୍ତକରେ ଲେଖିଛନ୍ତି - "ଓଡ଼ିଶାରେ ମହାବୀରଙ୍କ ପୂର୍ବରୁ ପାର୍ଶ୍ୱନାଥ ଅତି ପରିଚିତ ଥିଲେ । ପାର୍ଶ୍ୱନାଥ

ଏକ ବସ୍ତ୍ର ହୋଇ ଓଡ଼ିଶାର ଜଙ୍ଗଲମାନଙ୍କରେ ବିଚରଣ କରି ଜୈନ ମଂଦିର ଇତ୍ୟାଦି ସ୍ଥାପନା କରିଥିଲେ । ସେହି ଜଙ୍ଗଲମାନଙ୍କର ସ୍ତ୍ରୀଲୋକ ଏବଂ ପୁରୁଷ ଲୋକମାନଙ୍କ ପାଇଁ ଭିନ୍ନ ଭିନ୍ନ ମଠ ମଧ୍ୟ ଥିଲା ।'' ସେ ପୁଣି ଉଲ୍ଲେଖ କରିଛନ୍ତି - ''ଯେତେବେଳେ ମହାବୀର ନିଜର ଧର୍ମ ପ୍ରଚାର ପାଇଁ ବାହାରିଲେ, ସେ ଖଣ୍ଡଗିରିକୁ ତାଙ୍କର ପ୍ରଧାନ କେନ୍ଦ୍ର କରି ଖଣ୍ଡଗିରିରେ ଥିବା କୁମାର ଓ କୁମାରୀ ପର୍ବତରେ ଦୁଇଟି ଭିନ୍ନ ଭିନ୍ନ ଛାତ୍ରାବାସ ନିର୍ମାଣ କରି ସେ ସମୟରେ ସହଶିକ୍ଷାର ମହା ଆଦର୍ଶ ଦେଖାଇ ଯାଇଛନ୍ତି ।'' ପୁଣି, ତାଙ୍କ ମତରେ - ''ମହାବୀର ଥିଲେ ମହା ସଂଗଂଙ୍କ, ତାଙ୍କର ଶିଷ୍ୟମାନଙ୍କୁ ସେ ଠିକ୍ ମାର୍ଗରେ ଚଳାଇବା ପାଇଁ କେତେଗୁଡ଼ିଏ ଗଣଧର ସୃଷ୍ଟି କଲେ । ଗୋଟିଏ ଗୋଟିଏ ଗଣଧରଙ୍କ ଅଧୀନରେ ହଜାର, ଦୁଇ ହଜାର, ଚାରି ହଜାର ଏପରି ଶିଷ୍ୟ ଥିଲେ ।'' ଖଣ୍ଡଗିରିର ବାରଭୁଜୀ ଗୁମ୍ଫାରେ ମହାବୀର 'ଯୋଗାସନ' ମୁଦ୍ରାରେ ଏବଂ 'କାୟୋତ୍ସର୍ଗ' ମୁଦ୍ରାରେ ଆସୀନ ଥିବାର ମୂର୍ତ୍ତି ଉତ୍କୀର୍ଣ୍ଣ ହୋଇଛି । ଭଗବାନ ମହାବୀର, ଜୈନଧର୍ମର ୨୪ ତମ ତୀର୍ଥଙ୍କର ଏବଂ ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଜନ୍ମ ଓ ଧର୍ମ ପ୍ରଚାର କରିଥିଲେ । ଗୌତମ ଇନ୍ଦ୍ରଭୂତି ତାଙ୍କର ପ୍ରଧାନ ଗଣଧର (ଶିଷ୍ୟ) ଥିଲେ । ଜୈନ ହରିବଂଶ ପୁରାଣରୁ ଜଣାଯାଏ, ମହାବୀରଙ୍କ ନିର୍ବାଣ ଓ ଗୌତମ ଗଣଧରଙ୍କର 'କେବଳ ଜ୍ଞାନ' ପ୍ରାପ୍ତି କାର୍ତ୍ତିକ ଅମାବାସ୍ୟା ତିଥିରେ ଘଟିଥିଲା ।

ଜୈନ ପରମ୍ପରାରେ ଯେଉଁମାନେ ଚରାଚର ଜଗତକୁ ପ୍ରତ୍ୟକ୍ଷ ଜ୍ଞାନ ଦ୍ୱାରା ଜାଣନ୍ତି, ସେମାନେ ପ୍ରତ୍ୟକ୍ଷ ଜ୍ଞାନୀ । ସେମାନଙ୍କୁ 'କେବଳ ଜ୍ଞାନୀ' କୁହାଯାଏ । ଯେଉଁମାନେ ଶାସ୍ତ୍ରରେ ବର୍ଣ୍ଣିତ ପ୍ରତ୍ୟେକ ବିଷୟ ସ୍ପଷ୍ଟ ଭାବରେ ଜାଣନ୍ତି, ସେମାନେ 'ଶ୍ରୁତ କେବଳୀ' ବା ପରୋକ୍ଷ ଜ୍ଞାନୀ । ଭଗବାନ୍ ମହାବୀରଙ୍କ ନିର୍ବାଣ ପରେ ତିନି ଜଣ 'କେବଳ ଜ୍ଞାନୀ' ସ୍ତରରେ ପହଞ୍ଚି ପାରିଥିଲେ । ଗୌତମ ଇନ୍ଦ୍ରଭୂତି ବା ଗୌତମ ଗଣଧର ସେମାନଙ୍କ ମଧ୍ୟରେ ପ୍ରଥମ ।

ଜୈନ୍ ହରିବଂଶ ଅନୁସାରେ ଭଗବାନ ମହାବୀର ମୁକ୍ତିକାମୀ ଲୋକମାନଙ୍କୁ ଧର୍ମ ଉପଦେଶ ଦେଇ ଦେଇ ପାବା ନଗରୀରେ ପହଞ୍ଚିଲେ । ସେ ସେଠାରେ ଗୋଟିଏ ମନୋହର ଉଦ୍ୟାନରେ ଅବସ୍ଥାନ କଲେ ଏବଂ ସେଠାରେ ତିନିବର୍ଷ ସାଢ଼େ ଆଠମାସ ରହିବା ପରେ କାର୍ତ୍ତିକ ଅମାବାସ୍ୟା ପ୍ରାତଃ କାଳୀନ ସଂଧ୍ୟା (ଅର୍ଥାତ୍ ରାତ୍ରିର ଶେଷ ଓ ଦିବସର ଠିକ୍ ଆରମ୍ଭ ବା ସନ୍ଧି) ସମୟରେ ଯୋଗ ନିରୋଧ କରି, କର୍ମ ନାଶ କରି ମୁକ୍ତି ପ୍ରାପ୍ତ ହେଲେ । ତାଙ୍କୁ ପୂଜା କରି, ତାଙ୍କ

ନିକଟରେ ଦୀପ ଜଳାଯାଇ ଥିଲା । ଦୀପ ଆଲୋକରେ ପାବା ନଗରୀ ପ୍ରଶସ୍ତ ହୋଇ ଉଠିଲା । ଏହି ପ୍ରସଙ୍ଗରେ ଲେଖା ଯାଇଛି -

ଜ୍ୱଳଦ୍ ପ୍ରଦୀପାଳିକୟା ପ୍ରବୃଦ୍ଧୟ । ସୁରାସୁରୈଃ ଦୀପିତୟା ପ୍ରଦୀପ୍ତୟ ।
ତଦାସ୍ମ ପାବା ନଗରୀ ସମଂ ତତଃ । ପ୍ରଦୀପିତାକାଶ ତଳା ପ୍ରକାଶତେ ।

ଯେଉଁ ସମୟରେ ଭଗବାନ ମହାବୀରଙ୍କର ମହାପ୍ରୟାଣ ହେଲା, ଠିକ୍ ସେହି ସମୟରେ ତାଙ୍କର ପ୍ରଧାନ ଶିଷ୍ୟ ଗୌତମ ଗଣଧରଙ୍କର କେବଳ ଜ୍ଞାନ ବା ପୂର୍ଣ୍ଣଜ୍ଞାନ ଉଦୟ ହେଲା । ଏହା ଖ୍ରୀଷ୍ଟପୂର୍ବ ୫୫୭ ଅବ୍ଦର ଘଟଣା । ଗୌତମ ଗଣଧର ଭଗବାନ୍ ମହାବୀରଙ୍କ ଉପଦେଶଗୁଡ଼ିକ ଶୁଣି ଅବଧାରଣ କରି ଦ୍ୱାଦଶାଙ୍ଗ ଶ୍ରୁତ ରଚନା କରିଥିଲେ । ସେ ଏହାକୁ ୧୨ ଅଙ୍ଗ ଏବଂ ୧୪ ପୂର୍ବରେ ସଂକଳନ କରିଥିଲେ । ଯେଉଁମାନେ ଏହି ଅଙ୍ଗ ଏବଂ ପୂର୍ବରେ ସମ୍ପୂର୍ଣ୍ଣ ଜ୍ଞାନ ଲାଭ କରିଥିଲେ, - ସେମାନଙ୍କୁ 'ଶ୍ରୁତ କେବଳୀ' କୁହାଯାଉଥିଲା । ଏହି ପରିପ୍ରେକ୍ଷୀରେ ଭଗବାନ ମହାବୀରଙ୍କର ଦେହାବସାନ ଓ ଗୌତମ ଗଣଧରଙ୍କର କେବଳଜ୍ଞାନ ଉଦୟ ତିଥିଟି ଜୈନ ଧର୍ମାବଲମ୍ବୀମାନଙ୍କ ପାଇଁ ମହିମା ମଣ୍ଡିତ ତିଥି । ତେଣୁ ସେମାନେ କାର୍ତ୍ତିକ ଅମାବାସ୍ୟା ପ୍ରାତଃକାଳରେ ପୂଜା ଆରାଧନା କରନ୍ତି । ସନ୍ଧ୍ୟାବେଳେ ପ୍ରଦୀପମାଳାରେ ଗୃହକୁ ସଜାଇ ରଖନ୍ତି । ଗୃହକୁ ମନ୍ଦିର ପରି ପବିତ୍ର କରି ରଖନ୍ତି ।

ମହାବୀରଙ୍କ ମହାପ୍ରାୟାଣ ତିଥିରେ, ହିନ୍ଦୁ ସମାଜର ପୟାଶ୍ରାଦ୍ଧ ବା ପିତୃ ପୁରୁଷଙ୍କୁ ଉଲ୍‌କା ହସ୍ତରେ ଆଲୋକ ଦେଖାଇ ଜ୍ୟୋତିମାର୍ଗରେ ଗମନ କରିବାର କାମନା କରିବା ବିଶେଷ ତାତ୍ପର୍ଯ୍ୟ ପୂର୍ଣ୍ଣ । ଏହି ପ୍ରସଙ୍ଗରେ ସଂଶିତ ଆଲୋଚନାର ଆରମ୍ଭରେ ଯାହା କହିବାକୁ ଚାହୁଁଥିଲି, ତାହା ଏଠାରେ ଉଲ୍ଲେଖ କରାଯାଇ ପାରେ ।

ଆମ ପୂର୍ବ ପୁରୁଷମାନେ ବିଶ୍ୱାସ କରୁଥିଲେ, ପୁଣ୍ୟବନ୍ତ ପିତୃପୁରୁଷଗଣ ମୃତ୍ୟୁ ପରେ ଉଚ୍ଚ ସ୍ୱର୍ଗକୁ ଯାଇ ଦେବ ଲୋକରେ ବାସ କରନ୍ତି । ଦେବଲୋକ ସର୍ବଦା ଆଲୋକମୟ । ଯେଉଁମାନଙ୍କୁ ସ୍ୱର୍ଗଲୋକ ପ୍ରାପ୍ତିର ସୌଭାଗ୍ୟ ମିଳେ ନାହିଁ, ସେମାନେ ଦକ୍ଷିଣର ଅନ୍ଧକାରମୟ ଯମଲୋକ ପ୍ରାପ୍ତ ହୁଅନ୍ତି । ସେଠାରେ ବାସ କରନ୍ତି । ଅଥଚ ଦକ୍ଷିଣରୁ ଉତ୍ତରକୁ ଯିବାର ପଥ ଅଛି । ଧ୍ରୁବ ଓ ଦକ୍ଷିଣାୟନାଦି ବିନ୍ଦୁକୁ ଗୋଟିଏ ରେଖାରେ ଯୋଗ କରି, ସେହି ରେଖାକୁ ବର୍ଦ୍ଧିତ

କଲେ, ସେହି ରେଖାଟି ହିଁ ଏହି ପଥ । ଏହି ପଥର ନାମ - ପିତୃଯାନ । ଏହା ଉତ୍ତର ଦିଗରେ ପିତୃଲୋକକୁ ଯିବାର ପଥ । ସେହି ପରି ଦେବଲୋକକୁ ଯିବାର ପଥ ଅଛି । ଧ୍ରୁବ ତାରା ଏବଂ ଉତ୍ତର ଅୟନାଦି ବିନ୍ଦୁକୁ ଯୋଗ କରୁଥିବା ରେଖାକୁ ବର୍ଦ୍ଧିତ କଲେ, ଯେଉଁ ପଥ ହୁଏ, ତାହା ଦେବଯାନ । ମହାଭାରତରେ ଅଛି ପିତାମହ ଭୀଷ୍ମଦେବଯାନପଥ ପାଇବା ପାଇଁ ଶରଶଯ୍ୟାରେ ଅପେକ୍ଷା କରିଥିଲେ । ତେଣୁ ମହାଳୟା ଦିନ ପିତୃ ଶ୍ରାଦ୍ଧ ପରି ପିତୃଗଣଙ୍କୁ ଦୀପ ଦେଖାଇ ଅନ୍ଧକାରମୟ ଯମଲୋକକୁ ଛାଡ଼ି ପିତୃଯାନ ପଥରେ ମହା ଆଳୟକୁ ଗମନ କରିବାକୁ ମନ୍ତ୍ର ଉଚ୍ଚାରଣ କରି କୁହାଯାଏ । ତେଣୁ ମହାଳୟା ଦୀପାନ୍ୱିତା ଅମାବାସ୍ୟା । ଠିକ୍ ସେହି କାରଣରୁ କାର୍ତ୍ତିକ ଅମାବାସ୍ୟା ମଧ୍ୟ ଦୀପାନ୍ୱିତା । ସେଦିନ ଦୀପାବଳୀ ପାଳନ କରାଯାଏ । ପର୍ଯ୍ୟା ଶ୍ରାଦ୍ଧ ଦିଆଯାଏ ।

-o-

# ଦରିଆପାରି ସମ୍ପର୍କ ଓ ଆମ ପର୍ବ ପର୍ବାଣୀ

ଓଡ଼ିଶାର କେତେକ ପରିବାରରେ ଶ୍ରାବଣ, ଭାଦ୍ର, ଆଶ୍ୱିନ ଓ କାର୍ତ୍ତିକ ମାସ ଗୁରୁବାରମାନଙ୍କରେ ଲକ୍ଷ୍ମୀନାରାୟଣଙ୍କର ଓଷା ପୂଜା କରାଯାଏ । ଏହାକୁ ଚତୁର୍ମାସ୍ୟା-ଗୁରୁବାର ଓଷା କହନ୍ତି । ଏହାର ଓଷା କଥା ଅଛି । ଏଗୁଡ଼ିକ ମାର୍ଗଶିର ମାସ ଗୁରୁବାର ଓଷାକଥା ଓ ଲକ୍ଷ୍ମୀପୁରାଣ କଥାଠାରୁ ନିଆରା । ଏଥି ଭିତରୁ ଆଶ୍ୱିନ ଗୁରୁବାର କଥାରେ ଅଛି, ଲକ୍ଷ୍ମୀ ଠାକୁରାଣୀ ଗୋଟିଏ ବିଧବା ବ୍ରାହ୍ମଣୀର ଓଷା ପୂଜାରେ ସନ୍ତୁଷ୍ଟ ହୋଇ ଚତୁର୍ଥ ପାଳି ଦିନ ଉଭା ହୋଇ କହିଲେ - ''ମୁଁ ତୋତେ ସିଂହଳ ଦ୍ୱୀପରେ ମାଇପି ରାଜା କରାଇବି ।'' ଏହି ଓଷା କଥାଟିର ଦୃଢ଼ ପୌରାଣିକ କି ଐତିହାସିକ ଭିତ୍ତି ନାହିଁ ସିନା, କିନ୍ତୁ **'ସିଂହଳ ଦ୍ୱୀପ'** ଓ **'ମାଇପି-ରାଜା'** ପ୍ରସଙ୍ଗକୁ ଲଘୁ ଭାବରେ ନେଇ ହେଉନାହିଁ ।

'ରାଣୀ' ପରିବର୍ତ୍ତେ 'ମାଇପି-ରାଜା' ପଦଟି ବୈଶିଷ୍ଟ୍ୟବୋଧକ । ପୁଣି ଓଡ଼ିଶାର ଇତିହାସରେ ମହିଳାମାନେ ରାଜପଣ କରିବାର ଦୃଷ୍ଟାନ୍ତ ଅଛି । ଖ୍ରୀଷ୍ଟିୟ ନବ - ଦଶମ ଶତାବ୍ଦୀ ମଧ୍ୟରେ ଭୌମକର ରାଜବଂଶରେ ତ୍ରିଭୁବନ ମହାଦେବୀ-ପ୍ରଥମ, ପୃଥ୍ୱୀଦେବୀ ବା ତ୍ରିଭୁବନ ମହାଦେବୀ-୨ୟ ତ୍ରିଭୁବନ ମହାଦେବୀ-୩ୟ, ଗୌରୀ ମହାଦେବୀ ଓ ଦଣ୍ଡୀ ମହାଦେବୀ ତୋଷାଳୀର ରାଜ-ସିଂହାସନ ମଣ୍ଡନ କରିଥିଲେ, ରାଜଦଣ୍ଡ ଧରିଥିଲେ । ପରମ ଭଟ୍ଟାରିକା, ମହାରାଜାଧିରାଜ, ପରମେଶ୍ୱରୀ ଉପାଧିରେ ଭୂଷିତା ଥିଲେ । ଏହି ସମୟରେ ତୋଷାଳୀ ରାଜ୍ୟ କହିଲେ - ଉତ୍ତରରେ ଦଣ୍ଡଭୁକ୍ତି (ମେଦିନୀପୁର) ଠାରୁ ଦକ୍ଷିଣରେ ମହେନ୍ଦ୍ରଗିରି ପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡ । ଏହା ମହାନଦୀର ଦୁଇପଟେ ଉତ୍ତର ତୋଷାଳୀ ଓ ଦକ୍ଷିଣ ତୋଷାଳୀ ଭାବରେ ବିଭକ୍ତ ଥିଲା । ଏଥିରେ ରାଜପଣ କରୁଥିବା 'ପରମ ମାହେଶ୍ୱରୀ'ମାନେ ଲୋକ ସ୍ମୃତିରେ ପରବର୍ତ୍ତୀ କାଳରେ 'ମାଇପି-ରାଜା' ଭାବରେ ରହିଯାଇଥିବା ବିଚିତ୍ର ବା ବିସ୍ମୟପ୍ରଦ ନୁହେଁ । ରାଣୀ ଶବ୍ଦଟି ରାଜପତ୍ନୀ ଅର୍ଥ ପ୍ରକାଶ କରିପାରେ, ପୁଣି ରାଜତ୍ୱ କରୁଥିବା ଶାସିକାଙ୍କୁ ବି ବୁଝାଇପାରେ । ମାତ୍ର 'ମାଇପି-ରାଜା' ନିର୍ଦ୍ଦିଷ୍ଟ ଅର୍ଥ ପ୍ରକାଶ କରେ । ତେଣୁ ଏହା ଏହି ପରିପ୍ରେକ୍ଷୀରେ ବୈଶିଷ୍ଟ୍ୟ ବୋଧକ ।

ଗୋଟିଏ ଲୋକକଥାରେ ସାଧବ ଘର ସାନବୋହୂ ତା'ର ମନ କାମନା ପ୍ରକାଶ କରି ବୋଲିଛି-

ଶଶୁର ହୋଇବେ ଗାଁ ରାଜନ ଲୋ, ଶାଶୁ ହୋଇଥିବେ ରାଣୀ
ଛଅ ଦେଢ଼ଶୂର ଛଅ ସାଆନ୍ତ ଲୋ, ଛଅ ଯାଆ ସାଆନ୍ତାଣୀ ।
ମୋ ଗିରସ୍ତ ହେବେ କନକ - ରାଜନ, ମୁଁ ହେବି ପାଟରାଣୀ
ପୁଅ ହେଇଥିବି ରାଜକୁମାର ଲୋ, ପୋଥି ଧରି ଗୀତ ଗାଇବ
ଦ୍ୱାରେ ଲଗାଇବି ସୁନା ଟଭା ଗଛ, ନଗି ଧରି ଫୁଲ ତୋଳିବ ।

ଏଥିରୁ ଗ୍ରାମ-ରାଜ୍ୟ ବା ଗୋଟିଏ ଗାଁ ଗୋଟିଏ ରାଜ୍ୟ, ରାଜ୍ୟରେ ସାମନ୍ତ ପଦ ସହିତ କନକ ରାଜନ ବା ସୁବର୍ଣ୍ଣ ଦ୍ୱୀପରେ ରାଜପଣର ସୂଚନା ଓ ପୁଅ ପାଇଁ ବିଦ୍ୟା ଅର୍ଜନ ତଥା ହାତ ପାହାନ୍ତାରେ ଧନ ପ୍ରାପ୍ତିର ବ୍ୟବସ୍ଥା କରିଦେବାର ଯେଉଁ କଳ୍ପନା ଫୁଟିଛି, ତାହା ପ୍ରଣିଧାନ ଯୋଗ୍ୟ । ଏବର ବର୍ମା ବା ମିଆଁମାର, ଥାଇଲାଣ୍ଡର କେତେକ ଅଞ୍ଚଳକୁ ପୂର୍ବେ ସୁବର୍ଣ୍ଣ ଦେଶ କୁହାଯାଉଥିଲା । ଜାଭା, ସୁମାତ୍ରା, ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପମାନ ମଧ୍ୟ ସୁବର୍ଣ୍ଣ ଦ୍ୱୀପ ନାମରେ ବିଦିତ ଥିଲା । ତେଣୁ 'କନକ ରାଜନ' ଏଇଭଳି କୌଣସି ଦ୍ୱୀପରେ ରାଜପଣ ପ୍ରାପ୍ତିର ଆକାଂକ୍ଷା ବା କାମନା ବ୍ୟକ୍ତ କରୁଛି ।

ମନୋରଞ୍ଜନ ପାଇଁ ମୌଖିକ ପରମ୍ପରାରେ ଚଳି ଆସୁଥିବା ଲୋକକଥା ଠାରୁ ସକାମ ପୂଜାବିଧି ଅନ୍ତର୍ଗତ ଓଷା ଅଥବା ବ୍ରତର ଅଙ୍ଗ ଭାବରେ କଥିତ ବା ପଠିତ ଓଷା କଥା, ବ୍ରତ କଥା ଭିତରେ ପାର୍ଥକ୍ୟ ଥିଲେ ବି ଏଗୁଡ଼ିକ ଗୋଟିଏ ସାଂସ୍କୃତିକ ପୃଷ୍ଠଭୂମିର ଫଳ ପୁଷ୍ଟ । ତେଣୁ ଅର୍ଥ ଅବବୋଧ ପାଇଁ ଏକ ଆରକର ପରିପୂରକ । ଉପରେ ଲେଖାଯାଇଥିବା ଆଶ୍ୱିନ ମାସ ଗୁରୁବାର କଥାରେ ଥିବା 'ସିଂହଳ ଦ୍ୱୀପ' ଆଜିର ଶ୍ରୀଲଙ୍କା ନ ହେଲେ ବି କୌଣସି ଗୋଟିଏ ଦ୍ୱୀପ ରାଜ୍ୟ ହୋଇପାରେ । ଓଷାବ୍ରତ ପରି ସକାମ ପୂଜାବିଧିର ଅନ୍ତର୍ଗତ କଥା ବା ଆଖ୍ୟାନ ଉପାଖ୍ୟାନରେ ଯେକୌଣସି ମାନସିକ ଓ ଉଚ୍ଚାକାଂକ୍ଷାର ପ୍ରତିଫଳନ ସ୍ୱାଭାବିକ । ପୁଣି 'ହାତୀ ସୁନା କଳସ ଢ଼ାଳିବା' ଓ ତା' ଫଳରେ ରାଜା ହେବା ଭଳି ବିଶେଷ ଲକ୍ଷଣ (Motif)ଟି ଓଡ଼ିଆ ଲୋକ କଥାମାନଙ୍କରେ ଦେଖାଯାଏ । ଓଷାବ୍ରତ କଥାଗୁଡ଼ିକ ପୁରାକଥା ବା ମିଥ୍ (Myth) ପର୍ଯ୍ୟାୟର ଲୋକ କଥା । ତେଣୁ

ଉପରୋକ୍ତ ଓଷା କଥାର ସଂରଚନା (Structure)ରେ 'ସିଂହଳ ଦ୍ୱୀପ'ରେ ରାଜପଣ ଲାଭ ଭଳି କଥାଂଶଟିର ତାତ୍ପର୍ଯ୍ୟ ଅଛି ।

ଓଡ଼ିଆ ଲୋକକଥା, ପରମ୍ପରା ଓ ସାହିତ୍ୟରେ ସିଂହଳ ଦ୍ୱୀପ ସହିତ ସମ୍ପର୍କର ସଙ୍କେତମାନ ମିଳେ । ଅଚ୍ୟୁତାନନ୍ଦଙ୍କ କୈବର୍ତ୍ତ ଗୀତାରେ ଅର୍ଜୁନଙ୍କର ଗୋଟିଏ ପ୍ରଶ୍ନର ଉତ୍ତର ଦେଇ ଶ୍ରୀହରି ସତ୍ୟଯୁଗର ସ୍ୱୟଂଭୁବ ମନୁଙ୍କର ପୁତ୍ର ପ୍ରିୟବ୍ରତ ରାଜାଙ୍କ ଉପାଖ୍ୟାନ କହିଛନ୍ତି । ପ୍ରିୟବ୍ରତ ହରିଭକ୍ତ ରାଜା । ମହାପ୍ରଳୟ କାଳ ଆସନ୍ନ ହେବାରୁ ଶ୍ରୀହରି ପ୍ରିୟବ୍ରତ ରାଜାଙ୍କୁ କିପରି ସେଥିରୁ ରକ୍ଷା କରିବେ, ତାହାର ଉପାୟ କଲେ । ସେ ରାଜାଙ୍କ ସ୍ନାନ ପାଇଁ ଥିବା ଜଳକୁଣ୍ଡରେ ମୀନ ରୂପରେ ପ୍ରବେଶ କଲେ । ରାଜା ସ୍ନାନ କାଳରେ ଏହି ମୀନଟିକୁ ପାଇ ପ୍ରଥମେ ଚବକା, ପରେ ପରେ ପୋଖରୀ, ନଦୀ ଓ ସମୁଦ୍ରରେ ଛାଡ଼ିବାକୁ ବାଧ୍ୟ ହେଲେ । କାରଣ ମୀନଟିର ଆକାର କ୍ରମେ କ୍ରମେ ବଢ଼ି ବଢ଼ି ଗଲା । ଏହା ହରିଙ୍କର ମାୟା, ତେଣୁ ରାଜା ପ୍ରଥମେ ଜାଣି ନ ପାରିଥିଲେ ସୁଦ୍ଧା, ଶେଷରେ ଅନୁମାନ କରି ସ୍ତୁତି ଆରମ୍ଭ କଲେ । ତାହା ମହାପ୍ରଳୟର ପୂର୍ବ ଦିନର ଘଟଣା । ଶ୍ରୀହରି କହିଲେ -"କାଲି ଦିନ ଦୁଇ ପ୍ରହର ବେଳକୁ ପ୍ରଳୟ ଆରମ୍ଭ ହେବ । ମୁଁ ଗୋଟିଏ ସୁବର୍ଣ୍ଣ ନାବ ପଠାଇବି । ତୁ ସକୁଟୁମ୍ବ ସେଥିରେ ବସିବୁ । ପ୍ରଳୟ ଜଳ ନଭଶ୍ଚୁମ୍ବୀ । ତା'ର ଉତ୍ତାଳ ତରଙ୍ଗ ଭୟଙ୍କର । ତୁ ସେଥିରେ ତ୍ରସ୍ତ ନ ହୋଇ ମୋତେ ଧ୍ୟାନ କରିବୁ ।" ତା'ପରେ ମୀନ ରୂପରେ ଥିବା ନାରାୟଣ କିପରି ନାବକୁ ରକ୍ଷା କରିବେ ଓ ସିଂହଳ ଦ୍ୱୀପ ସୃଷ୍ଟି ହେବ, ତାହା ବର୍ଣ୍ଣନା କରି ଅଚ୍ୟୁତାନନ୍ଦ ଲେଖିଛନ୍ତି-

ମୀନ ରୂପେ କାୟା ମୋର ଶତେକ ଯୋଜନ ।
ଗଭୀର ଜଳରେ ଭେଦିଥିବ ହୋ ରାଜନ ॥
ମୋର ଶିରରୁ ବେନି ଶୃଙ୍ଗ ଯେ ହୋଇବ ।
ମୋଟ ବେନି ସସ୍ର, ଦୀର୍ଘ ଦଶ ସସ୍ର ହେବ ॥
ଜଳ ଭେଦି ଦୁଇ ଲୋମ ଉପରେ ଭାସିବ ।
ସେ ଲୋମେ ବାନ୍ଧିବୁ ନାବ ନିଶ୍ଚଳେ ରହିବ ॥
କ୍ଷୁଧା ତୃଷା ଜଳ ବାୟୁ ଅଗ୍ନି ଭୟ ନାହିଁ ।
ଚାରି ସସ୍ର ଯୁଗ ଯାଏ ବସିଥିବୁ ତହିଁ ॥

ପ୍ରଳୟ ଅନ୍ତରେ ଜଳ ଲୀନ ଯେବେ ହେବ ।
ଏ ବେନି ଶୃଙ୍ଗ ଯେ ମୋର ଏହିଠାରେ ଥିବ ॥
ଏହି ମତେ କଳପ ପ୍ରଳୟ ହୋଇଥିଲା ।
ପ୍ରଳୟ ଉଭାରେ ଶୃଙ୍ଗ ସେଠାରେ ରହିଲା ॥
ତେଣୁ କରି ସିଂହଳ ଯେ ଦ୍ୱୀପ ନାମ କହି ।
ଆଗରୁ ମୁଁ ବିଚାରିଣ ଭିଆଇ ଅଛଇ ॥
ସିଂହଳ ଦ୍ୱୀପର ଯେ ଅଟଇ ଆୟତନ ।
ଲକ୍ଷେ ଯୋଜନ ପୃଥିବୀ ଅଟେ ସେହୁ ସ୍ଥାନ ॥
ସେ ଦେଶରେ ନୃପତି ଯେ ଦାସରାଜା ହୋଇ ।
ରାଜ ଅଂଶେ ଛତ୍ରୀ କେହି କଷି ନ ପାରଇ ॥

ଦାସ ରାଜାଙ୍କ ପ୍ରସଙ୍ଗ ପରେ ଆଲୋଚନା କରିବା । ଏଠାରେ ଉପରୋକ୍ତ ଅଂଶଷ୍ଟି ଉଦ୍ଧାର କରିବାର ଉଦ୍ଦେଶ୍ୟ ହେଲା, ଓଡ଼ିଆ ସାହିତ୍ୟ ଓ ପରମ୍ପରାରେ ସିଂହଳ ଦ୍ୱୀପର ସୃଷ୍ଟି ଓ ଅବସ୍ଥିତି ସଂପର୍କରେ କଳ୍ପିତ ଧାରଣାର ଅବତାରଣା । ଏଠାରେ ଏବେ ପଡ଼ିଛି 'ସିଂହଳ ଦ୍ୱୀପର ମାଇପି ରାଜା'ଙ୍କ କଥା । ଓଷା କଥାର ଏଇ କଥାଂଶଟି ଇତିହାସର ଗୋଟିଏ ଦିଗକୁ ଇଙ୍ଗିତ କରୁଛି ।

ପୂର୍ବ କାଳରେ ବ୍ୟୋମଯାନ ଓ ବ୍ୟୋମ ଯୁଦ୍ଧର କଥା ରାଜାମାନେ ଭାବୁ ନଥିଲେ । ପୁରାଣରେ କୁବେର ଓ ତାଙ୍କଠାରୁ ରାବଣଙ୍କ ଅଧିକାରକୁ ଯାଇଥିବା ଏକମାତ୍ର ବ୍ୟୋମଯାନ ଥିଲା- ପୁଷ୍ପକ । ଗରୁଡ଼, ହଂସ, ମୟୁର ପ୍ରଭୃତି ବିହଙ୍ଗ ନିର୍ଦ୍ଦିଷ୍ଟ ଦେବତାଙ୍କର ବାହାନ ଥିଲେ । ତେଣୁ ରାଜା ବା ସମ୍ରାଟମାନେ ସେ ବିଷୟରେ ଚିନ୍ତା ଖେଳାଉ ନଥିଲେ । ପଦାତିକ, ଅଶ୍ୱାରୋହୀ, ଗଜାରୋହୀ ଓ ରଥାରୋହୀ - ଏହି ଚତୁରଙ୍ଗ ସେନାବାହିନୀ ଧରି ରାଜ୍ୟ ଭିତରେ ଶୃଙ୍ଖଳା, ବହିରାକ୍ରମର ସମ୍ମୁଖୀନ ହେବା ଓ ରାଜ୍ୟ ଜୟ କରିବାର ବ୍ୟବସ୍ଥା ଥିଲା । ଏହା ସ୍ଥଳଭାଗର ରାଜାମାନଙ୍କ ପାଇଁ ଯଥେଷ୍ଟ ଥିଲା । କିନ୍ତୁ ଦ୍ୱୀପ ରାଜ୍ୟର ରାଜାଙ୍କ ସମସ୍ୟା ଭିନ୍ନ । ତାଙ୍କର ନୌବାହିନୀ ଆବଶ୍ୟକ । ବିଭିନ୍ନ ପ୍ରକାରର ଜଳଯାନ ଓ ନୌସେନା ବ୍ୟତୀତ ସେମାନଙ୍କ ପକ୍ଷରେ ବାଣିଜ୍ୟ, ଗମନା ଗମନ ଓ ରାଜ୍ୟର ଅର୍ଥନୀତି ଓ ସୁରକ୍ଷା ବ୍ୟବସ୍ଥା ସମ୍ଭବ ନୁହେଁ । ତେଣୁ ଲୋକକଥା ହେଉ କି

ପୁରାଣକଥା ହେଉ, ସାହିତ୍ୟ ହେଉ ବା ପୁରାଣ ହେଉ, ସେଥିରେ ଦ୍ୱୀପ ରାଜ୍ୟରେ ରାଜ୍ୟ ସ୍ଥାପନ, ରାଜପଣ କଥା ଉଠିଲେ ଏଇ ଚିନ୍ତା ମନରେ ଉଠେ ।

ଓଡ଼ିଆ ଲୋକକଥା ଏବଂ ଓଷାବ୍ରତ କଥାମାନଙ୍କରେ ସାଧବ ଘର ଓ ବୋଇତ ଯାତ୍ରାର ଉଲ୍ଲେଖ ମିଳେ । କିନ୍ତୁ ସାଧବମାନଙ୍କର ବୋଇତ ତ ବାଣିଜ୍ୟ-ତରୀ; ତାହା ରଣ-ତରୀ ନୁହେଁ । ଅବଶ୍ୟ ମୂଲ୍ୟବାନ ପଣ୍ୟଦ୍ରବ୍ୟ ସୁରକ୍ଷା ପାଇଁ ସାଙ୍ଗରେ କିଛି ଯୋଦ୍ଧା ଓ ଅସ୍ତ୍ରଶସ୍ତ୍ର ଅଥବା ସାଗର ଯାତ୍ରା କାଳର ଜଳଦସ୍ୟୁ (ବୋମ୍ବେଟିଆ)ମାନଙ୍କ ଠାରୁ ରକ୍ଷା ପାଇଁ ନିରାପଦରେ ସାଗର ଯାତ୍ରା ଲାଗି ସାଙ୍ଗରେ ପଣ୍ୟବାହୀ ବୋଇତ ଗୁଡ଼ିକ ସହିତ ଗୋଟିଏ ଦୁଇଟି ରଣ-ତରୀ ନେଉଥିବେ । କିନ୍ତୁ କୌଣସି ଲୋକକଥା ବା ଓଷାବ୍ରତ କଥାରେ ସେପରି ବର୍ଣ୍ଣନା ମନେପଡୁ ନାହିଁ । ଷଢ଼େଇକଳା- ଖରସୁଆଁ ଏବେ ସିନା ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ, ସେଠାରେ ଥିବା ଓଡ଼ିଆ କୁମ୍ଭାରମାନଙ୍କ ଭିତରେ ଗୋଟିଏ ବ୍ରତ ଅଛି - ଶିରୀ ସୁବନାଥୀ ବ୍ରତ । ଖରସୁଆଁ ଓ ଚକ୍ରଧରପୁରରୁ ଡକ୍ଟର କୁଞ୍ଜବିହାରୀ ଦାଶ ଏହି କଥାଟି ସଂଗ୍ରହ କରିଥିଲେ । କୁମ୍ଭାର ଦେହୁରୀ ଏହି ବ୍ରତ ପୂଜାରେ ପୌରୋହିତ୍ୟ କରେ । ଏହି ବ୍ରତ କଥାଟି ଜଳଯାତ୍ରା ଓ ଯୁଦ୍ଧ ଅଭିଯାନର କାହାଣୀ । ଓଡ଼ିଶା ସାହିତ୍ୟ ଏକାଡ଼େମୀର ରଜତ ଜୟନ୍ତୀ ଅବସରରେ ପ୍ରକାଶିତ ମନୋଗ୍ରାଫ-ବ୍ରତ ସାହିତ୍ୟ ପୁସ୍ତକରେ ଏହି ବ୍ରତ କଥା ଉପରେ ଆଲୋଚନା କରାଯାଇଛି । କେବଳ ଏହି ବ୍ରତ କଥାଟି ପାଇଁ ''ସିଂହଳ ଦ୍ୱୀପ'' ଓ ଦ୍ୱୀପ ରାଜ୍ୟରେ 'ମାଇପି ରଜା'ଙ୍କ ରାଜପଣ ବିଷୟ କିଞ୍ଚିତ ଅବଧାରଣା କରି ହେଉଛି । ପୁନଶ୍ଚ ଓଡ଼ିଶାର ଶିଳା-ଶିଳ୍ପରେ ନୌସେନାର ଦୃଶ୍ୟ 'ଓ ପାଇକ ଖେଦା' ନାମକ ଗୋଟିଏ ଗ୍ରନ୍ଥରୁ ଏହି ଅନୁମାନର ପୋଷକତା କଲାଭଳି କିଛି କିଛି ତଥ୍ୟ ମିଳୁଛି ।

'ପାଇକ ଖେଦା' ପୋଥିଟି କହ୍ନାଇ ଚମ୍ପତି ବିରଚିତ । ଏହା ସପ୍ତଦଶ ଶତାବ୍ଦୀର କିମ୍ବା ହୁଏତ ତା' ପରବର୍ତ୍ତୀ କାଳର ରଚନା ହେଲେ ବି ସେଥିରେ ସମର ପରମ୍ପରା ଓ ସେ ସମ୍ବନ୍ଧୀୟ ଯେଉଁ ତଥ୍ୟ ସଂଗୃହୀତ ହୋଇଛି, ତାହା ପୁରୁଣା । ଲେଖକ ପ୍ରାଚୀନମାନଙ୍କ ଠାରୁ ତାହା ସଂଗ୍ରହ କରିଛନ୍ତି । କହ୍ନାଇ ଚମ୍ପତି 'ପାଇକ ଖେଦା'ର ସପ୍ତମ ଅଧ୍ୟାୟରେ ଲେଖିଛନ୍ତି -

ପୋତ ଯୁଦ୍ଧ ଗୁଣମାନ ବର୍ଣ୍ଣିବା
ଚାଟମାନଙ୍କ ସନ୍ଦେହ ଫେଡ଼ିବା

ଯାହା ପୂରୁବ ପୁରୁଷଙ୍କ ଟାଣ
ନାହିଁ ପାଇକ କୁଳର ଗହଣ ।
ଶୁଣ ମନ ଦେଇ
ପୂର୍ବ କଥାମାନ ଦେବା ସୂଚାଇ ।

ପାଇକାଳି ଗାଁଆମାନଙ୍କର ଆଖଡ଼ା ଘରେ ପାଇକ ଖେଳ ଶିଖୁଥିବା, ଅଭ୍ୟାସ କରୁଥିବା ଖଣ୍ଡାୟତ ଯୁବକମାନଙ୍କ ପାଇଁ ଏହି ପୋଥିଟି ଉଦ୍ଦିଷ୍ଟ । 'ପାଇକ କୁଳର ଗହଣ'ରୁ କାଳକ୍ରମେ ହଜି ଯାଇଥିବା ପୋତଯୁଦ୍ଧ ବିଷୟ ପାଇକ ଆଖଡ଼ାରେ ଚାଟ ବା ଶିଖାଳିମାନଙ୍କ ଅବଗତି ପାଇଁ ବର୍ଣ୍ଣନା କରି ଲେଖକ ଲେଖିଛନ୍ତି -

ଅଛି ପୋତ ସଶ୍ତ୍ର ଜାତି ପ୍ରକାର
ମାତ୍ର ଆମ୍ଭର ଅଟେ ନଅଘର ।
ବହିତର ଗାଣ୍ଡିଆ ଚୋଟ ମୁଖ୍ୟ,
ବଣିଜରେ ଏହା ସାର ପରଖ୍ ।
ସମରେ ନୁହଇ
ସମରେ ଅଟଇ ସୁରଚାତୁରୀ ।
ଶୁଣ ପୁଣ ରାଜପୁର ଲାଞ୍ଜୁଆ
ଖାଇ ଜଗା ଗଙ୍ଗ ପ୍ରସାଦ ଠିଆ
ନନ୍ଦିଆ ଖୁତୁପ ଗୁରୁ ଏମାନ
ଶୁଣ କହିବା ଗୁଣ ସାବଧାନ ।
ଲାଞ୍ଜୁଆ ଯେ ଚାରୁ
ଦୂରୁ ଦିଶଇ ଯେହ୍ନେ ମହାମେରୁ ।
ବ୍ରହ୍ମ ଜାତି ଯେ ଅଟଇ ଚାତୁରୀ
ବାରି କହିବା ଗୁଣ ଯେ ତାହାରି ।
ଶୁଣ ଖାଇ ଜଗା ଗଙ୍ଗ ପ୍ରସାଦ
ସେ ଯେ ଦୁଇଘର ପ୍ରାୟ ବିଷଦ
ଆଡ଼ପଟ ଘର
ଗଡ଼ ଖାଇରେ ରହିବ ସତ୍ୱର ।

ତାହା ସଙ୍ଗେ ଖୁଣ୍ଟୁପ ରହିଥିବ
ଘର ପେଟରେ ବୁଡ଼ି ରହିଥିବ ।
ନଇଁ କରି ଖୁଣ୍ଟୁପରେ ପଶନ୍ତି
ଜନ ବାହାରୁ ତାହା ନ ଦେଖନ୍ତି ।
ରାଜପୁର ତରୀ
ପାଇକଗଣେ ରଖିବେ ଆଦରି ।

କହ୍ନାଇ ଚମ୍ପତି ତାଙ୍କ ପାଇକ ଖେଦାର ସପ୍ତମ ଅଧ୍ୟାୟରେ ବିଭିନ୍ନ ପୋତର ଗଢ଼ଣ ବର୍ଣ୍ଣନା କରିଛନ୍ତି । ସେଗୁଡ଼ିକୁ ଘେନି କିପରି ଜଳଯୁଦ୍ଧ କରିବାକୁ ହୁଏ, ସେ ସଂପର୍କରେ ମଧ୍ୟ ସୂଚନା ଦେଇଛନ୍ତି । ବହିତ୍ର କାର୍ତ୍ତି ବୈଭବ, ଜଳଯାନ, ଅର୍ଣ୍ଣବ ବିହାର ପ୍ରଭୃତି ନୌଶାସ୍ତ୍ର ବା ପୋତ୍ଯୁଦ୍ଧ ସଂକ୍ରାନ୍ତରେ ବର୍ଣ୍ଣନା ଥିବା ଗ୍ରନ୍ଥଗୁଡ଼ିକ ଏବେ ଦୁଷ୍ପ୍ରାପ୍ୟ । ତେଣୁ ସେ ବିଷୟରେ ଏବେ ଆଲୋଚନା କରାଯାଉ ନାହିଁ । ପ୍ରାଚୀନ କାଳରେ ସାଧବମାନଙ୍କର ବାଣିଜ୍ୟ ତରୀ ଓ ନୌବାହିନୀର ସମର-ତରୀର ପ୍ରଚଳନ ପ୍ରାଚୀନ ଓଡ଼ିଶା ବା କଳିଙ୍ଗରେ ଥିବା କଥା ଅବଧାରିତ । କିନ୍ତୁ ଏବେ ସେ କାଳର ସାଧବ ଓ ନୌବାହିନୀକୁ ଠାବ କରିବା କଷ୍ଟ । ମାତ୍ର ନାବ ଚାଳକ କୈବର୍ତ୍ତମାନେ ଅଛନ୍ତି ।

ଇତିପୂର୍ବରୁ କୈବର୍ତ୍ତ ଗୀତାରୁ ସିଂହଳ ଦ୍ୱୀପର ଉତ୍ପତ୍ତି ବର୍ଣ୍ଣନା ପ୍ରସଙ୍ଗ ଉଦ୍ଧାର କଲାବେଳେ ଦାସ ରାଜାଙ୍କ ନାଆଁ ସେଥିରେ ଥିଲା । ସେହି ଦାସରାଜା କୈବର୍ତ୍ତ ଜାତିର ଆଦି ପୁରୁଷ ବୋଲି କୁହାଯାଏ । ବାଶେଳୀ ସେମାନଙ୍କର ଇଷ୍ଟଦେବୀ । ଚୈତ୍ରମାସ ପୂର୍ଣ୍ଣିମାଠାରୁ ୮ ଦିନ ପର୍ଯ୍ୟନ୍ତ ଓଡ଼ିଶାର କେତେକ ଅଞ୍ଚଳରେ କୈବର୍ତ୍ତମାନେ ବାଶେଳୀ ପୂଜା, ଚଇତି ଘୋଡ଼ାନାଚ ଓ ତା' ସହିତ ଗୀତରେ ପ୍ରଶ୍ନ ଉତ୍ତର ମାଧ୍ୟମରେ ଚଇତି ଘୋଡ଼ାର ଉତ୍ପତି, ଦାସରାଜା ଓ କୈବର୍ତ୍ତ ଜାତିର ସୃଷ୍ଟି କଥା ବର୍ଣ୍ଣନା କରିଛନ୍ତି ।

ଇତିପୂର୍ବରୁ ଅଚ୍ୟୁତାନନ୍ଦ ଦାସଙ୍କ କୈବର୍ତ୍ତ ଗୀତାରୁ କିଛି ଅଂଶ ଉଦ୍ଧାର କରାଯାଇଛି । ସେ ୧୬ଶ ଶତାବ୍ଦୀରେ ଏହା ଲେଖିଥିବାର ଅନୁମାନ କରାଯାଏ । ତାଙ୍କ ଅମଳରେ କୈବର୍ତ୍ତମାନଙ୍କ ମଧ୍ୟରେ ସେମାନଙ୍କ ଜାତିର ସୃଷ୍ଟି, ଜାତିର ଆଦିପୁରୁଷ ଦାସରାଜାଙ୍କ ଜନ୍ମ, ବାଶେଳୀଙ୍କ ମହାତ୍ମ୍ୟ ଆଦି ବୃତ୍ତାନ୍ତ ମୌଖିକ

ପରମ୍ପରାରେ ଚଳୁଥିବ । ସେ ସେଗୁଡ଼ିକ ସଂଗ୍ରହ କରି ପୁରାଣ ରଚନା ପରିପାଟିରେ କୈବର୍ତ୍ତ ଗୀତା ଲେଖି ଯାଇଛନ୍ତି । ଜଗନ୍ନାଥ ଦାସଙ୍କ ଭାଗବତରେ ମଧ୍ୟ ଅଛି-

''ସେ ସୃଷ୍ଟି ସର୍ଗ ଇଚ୍ଛାକରି, ଜଳେ ଯୋଗ ନିଦ୍ରା ବିସ୍ତାରି ।''

ଏବଂ

''ତାର ଶରୀରୁ ସୃଷ୍ଟ ଲୋକ, ବିସ୍ତାର ହୋଇଲା ଅନେକ ।''

ତେଣୁ ନାରାୟଣ ପ୍ରଳୟ ଜଳରେ ଯୋଗ ନିଦ୍ରାରେ ବିରାଜମାନ କରିବା ବେଳେ ତାଙ୍କଠାରୁ ଦାସରାଜା ଓ କୈବର୍ତ୍ତ ଜାତି ସୃଷ୍ଟିର କିମ୍ବଦନ୍ତୀ ଯୋଡ଼ିଦେବାରେ ଅପ୍ରାସଙ୍ଗିକତା ନାହିଁ । ଅଚ୍ୟୁତାନନ୍ଦ ତାହା କରିଛନ୍ତି ।

କୈବର୍ତ୍ତ ଗୀତାରେ ଦାସ ରାଜା ତଥା କୈବର୍ତ୍ତମାନଙ୍କର ଗୋତ୍ର ନାମ 'ନାଗଶ' ବୋଲି ଉଲ୍ଲେଖ ଅଛି । ରନ୍ଧନ ଶାଳାରେ ମାଟି ଅଥବା ରୂପାରେ କୁଣ୍ଡଳୀ ପିତୁଳା ରୂପରେ ନାଗ ମୂର୍ତ୍ତି ସ୍ଥାପନ କରି ପୂଜା କରିବାର ବିଧି ବର୍ଣ୍ଣନା ପ୍ରସଙ୍ଗରେ ଲେଖାଯାଇଛି -

''ଏହିମତେ ପୂଜା ବିଧି କରଇ କୈବର୍ତ୍ତ,
ଇଷ୍ଟ ନାଗଶ ଗୋତ୍ର ଉଚ୍ଚାରି ପୁରୋହିତ ।''

ଐତିହାସିକମାନଙ୍କ ମତରେ ପ୍ରାଚୀନ ନାଗ ସଂପ୍ରଦାୟର କାଣ୍ଡାରୀ (କଣ୍ଡରା) ଓ କୈବର୍ତ୍ତମାନେ ନୌଚାଳନା ଓ ନୌବାଣିଜ୍ୟ ସହିତ ସଂପୃକ୍ତ ଥିଲେ । ଚିଲିକା କୂଳର ଯେଉଁ ମତ୍ସ୍ୟଜୀବୀମାନେ (୧) କୈବର୍ତ୍ତ ବା କେଉଟ (୨) ନିଆରି ବା ଲିଆରି (୩) କାରେଡ଼ିଆ (୪) ଗୋଖା (୫) କଣ୍ଡରା (୬) ତିଅର ପ୍ରଭୃତି ନାନା ଗୋଷ୍ଠୀରେ ପରିଚିତ; ସେମାନଙ୍କ ମଧ୍ୟରୁ କୈବର୍ତ୍ତମାନେ ସବୁ ପ୍ରକାରର ଡଙ୍ଗା, ନାଆ ଆଦି ତିଆରି କରନ୍ତି । କୈବର୍ତ୍ତମାନେ ନିଷାଦ ଜନଗୋଷ୍ଠୀର ଅନ୍ତର୍ଗତ । ଏମାନେ ଶବର ଜନଗୋଷ୍ଠୀ ପରି ଓଡ଼ିଶାର ପ୍ରାଚୀନ ବା ଆଦିମ ଅଧିବାସୀ । ଯେପରି ଜଗନ୍ନାଥଙ୍କ ସହିତ ଶବରମାନଙ୍କର ସଂପର୍କ କିମ୍ବଦନ୍ତୀ ଓ ପରମ୍ପରାରେ ପ୍ରତିଷ୍ଠିତ, ସେହିପରି ଶ୍ରୀମନ୍ଦିର ବେଢ଼ାରେ ଥିବା କଳ୍ପବଟ ସହିତ କୈବର୍ତ୍ତ ସମ୍ପ୍ରଦାୟର ସଂପର୍କ ମଧ୍ୟ କିମ୍ବଦନ୍ତୀ ମାଧ୍ୟମରେ ଗ୍ରଥିତ । ଶ୍ରୀମନ୍ଦିରର ପଶ୍ଚିମ ଦ୍ୱାର ପାଖାପାଖି ବାଶେଳୀ ସାହିରେ ବାଶେଳୀ ଠାକୁରାଣୀଙ୍କ ପୀଠ ବିଦ୍ୟମାନ । ଏହି ବାଶେଳୀ ବା ବାଶୁଳୀ ଦେବୀ 'କଳ୍ପବଟ ଦୁହିତା' ବୋଲି

କିମ୍ବଦନ୍ତୀ ଅଛି । ସମୁଦ୍ର ତଟବର୍ତ୍ତୀ ତୀର୍ଥ ପୁରୁଷୋତ୍ତମ ପୁରୀର ଭୌଗୋଳିକ ଅବସ୍ଥିତି, ପୌରାଣିକ ମହାତ୍ମ୍ୟ ଓ ଐତିହାସିକ ପରମ୍ପରା ସହିତ କୈବର୍ତ୍ତ ଜାତିର ଇଷ୍ଟଦେବୀ ବାଶେଳୀଙ୍କ ଜନ୍ମ ବୃତ୍ତାନ୍ତ ଯେପରି ଗୁନ୍ଥି ହୋଇଯାଇଛି, ତହିଁରୁ ନୌକା ଉଦ୍ଭାବନ, ନୌବାଣିଜ୍ୟ ଓ ସାଗର ବକ୍ଷର ଦ୍ୱୀପ ରାଜ୍ୟ ସହିତ ଜଗନ୍ନାଥ-କୈନ୍ଦ୍ରିକ ଜାତିର ସଂପର୍କ ବିଷୟରେ ସୂଚନା ମିଳେ ।

ଅନନ୍ତ ବର୍ମନ ଚୋଡ଼ଗଙ୍ଗଦେବ (ଖ୍ରୀ.ଅ. ୧୦୪୨-୧୧୧୨) ବର୍ତ୍ତମାନର ଜଗନ୍ନାଥ ମନ୍ଦିର ନିର୍ମାଣ କରାଇଥିଲେ ଓ ତାଙ୍କର ପରବର୍ତ୍ତୀ ରାଜା ଅନଙ୍ଗ ଭୀମଦେବ ଏହି ମୁଖ୍ୟ ମନ୍ଦିରକୁ ଲାଗିଥିବା ଅଂଶଗୁଡ଼ିକର ନିର୍ମାଣ ଓ ମନ୍ଦିରର ପୂଜାବିଧି ଖଞ୍ଜିଥିଲେ । କିନ୍ତୁ ମନରେ ପ୍ରଶ୍ନ ଉଠେ - ଏହି ନିର୍ଦ୍ଦିଷ୍ଟ ସ୍ଥାନରେ ଏତେ ବଡ଼ କୀର୍ତ୍ତି ପ୍ରତିଷ୍ଠା କରାଗଲା କାହିଁକି ? ଉତ୍ତରଟି, ତତ୍‌କ୍ଷଣାତ୍ ହୁଏତ ବାହାରି ଆସିବ - ଏହା ଚୋଡ଼ଗଙ୍ଗଙ୍କ ବହୁ ପୂର୍ବରୁ ପ୍ରତିଷ୍ଠିତ ପ୍ରାଚୀନତମ ଧର୍ମପୀଠ ଥିଲା । ତା' ହେଲେ କେତେ ପ୍ରାଚୀନ ? ଏହାର ଉତ୍ତର ଖୋଜିଲାବେଳେ ବେଦ, ପୁରାଣ ସହିତ ନାନା କିମ୍ବଦନ୍ତୀ, ମହାତ୍ମ୍ୟ, ପୁରାକଥା (Myth) ଉପରେ ଦୃଷ୍ଟିପଡ଼େ ।

ପୁରାଣରେ ଯେଉଁ ଚାରିଯୁଗ କଥା ପଢ଼େ, ସେଥିରୁ ଆମ ସମସାମୟିକ ଯୁଗଟିର ନାମ - କଳିଯୁଗ । ଏହାର ପୂର୍ବବର୍ତ୍ତୀ ଯୁଗ - ଦ୍ୱାପର । ଦ୍ୱାପରର ପୂର୍ବ ଯୁଗଟି ତ୍ରେତା ଓ ତାର ପୂର୍ବବର୍ତ୍ତୀ ଯୁଗ ସତ୍ୟଯୁଗ । ସୁତରାଂ 'ସତ୍ୟଯୁଗ' ପ୍ରାଚୀନତମ ସମୟ । ଇତିହାସ ଦୃଷ୍ଟିରୁ ପ୍ରାଚୀନତମ କାଳଟି ଯେପରି ଦେଖାଯାଉନା କାହିଁକି ପୁରାଣରେ ଏହା ବଡ଼ ମହିମା ମଣ୍ଡିତ । ଇନ୍ଦ୍ରଦ୍ୟୁମ୍ନ ସେହି ପୁଣ୍ୟତମ ସତ୍ୟଯୁଗର ରାଜା । ସେ ପୁରୁଷୋତ୍ତମ ପୁରୀ ବା ପୁରୀକୁ ଆସିବାବେଳେ ଏଠାରେ ଥିବା ନୀଳଗିରିରେ ଅକ୍ଷୟବଟ, ରୋହିଣୀ କୁଣ୍ଡ, ନୀଳମାଧବ ଓ କୃଷ୍ଣାଗୁରୁ ବୃକ୍ଷତଳେ ନୃସିଂହ ଥିଲେ ବୋଲି ସ୍କନ୍ଦ ପୁରାଣ (ଉତ୍କଳ ଖଣ୍ଡ)ରେ ଉଲ୍ଲେଖ ଅଛି । ପୁଣି ଏଠାରେ ଶବର ପଲ୍ଲୀ ଥିଲା । ବର୍ତ୍ତମାନ ଜୈନ, ବୌଦ୍ଧ ଓ ହିନ୍ଦୁ ବୋଲି କୁହାଯାଉଥିବା ଜଗନ୍ନାଥ ଥିଲେ ମୂଳତଃ ଶବର ପୂଜିତ ଦେବତା । ଏତେ ପ୍ରାଚୀନ ଦେବତା ଓ ତାଙ୍କ ପୀଠର ପ୍ରାଚୀନ ତରୁ, ପୁଷ୍କରିଣୀ ଆଦିକୁ କେନ୍ଦ୍ର କରି କିମ୍ବଦନ୍ତୀ, ମହାତ୍ମ୍ୟ, ପୁରାକଥା ବିସ୍ତାରିତ ହେବା ସ୍ୱାଭାବିକ । ଏଠାରେ ଥିବା ପ୍ରାଚୀନ ଓ ପବିତ୍ର ତରୁ କଳ୍ପବଟ ସମ୍ପର୍କରେ ନାନା କିମ୍ବଦନ୍ତୀ ଅଛି । ଶ୍ରୀକ୍ଷେତ୍ରର ମହାତ୍ମ୍ୟ ସହିତ ଏହି ପବିତ୍ର ତରୁର ମହାତ୍ମ୍ୟ ମଧ୍ୟ ପୁରାଣ କୀର୍ତ୍ତିତ ।

ସ୍କନ୍ଧ ପୁରାଣ (ଉତ୍କଳ ଖଣ୍ଡ) ଓ ନୀଳାଦ୍ରି ମହୋଦୟରେ କଳ୍ପବଟର ମହିମା ବର୍ଣ୍ଣିତ ହୋଇଛି । ଓଡ଼ିଆ ଶ୍ରୀମଦ୍ ଭାଗବତ ଦ୍ୱାଦଶ ସ୍କନ୍ଧ (ଏହା ଜଗନ୍ନାଥ ଦାସଙ୍କ ନାମରେ ଭଣିତା ଥିଲେ ମଧ୍ୟ, ପ୍ରକୃତରେ ଜଗନ୍ନାଥଙ୍କ ମୃତ୍ୟୁପରେ ତାଙ୍କର ଶିଷ୍ୟ ମହାଦେବ ଦାସ ତାହା କରିଥିଲେ) ରେ ମଧ୍ୟ ଏହାର ବର୍ଣ୍ଣନା ଅଛି । ମହାପ୍ରଳୟ କାଳରେ ସମଗ୍ର ପୃଥିବୀ ଜଳମଗ୍ନ ହୁଏ, ମାତ୍ର କଳ୍ପବଟ ବୁଡ଼େ ନାହିଁ । ଏକଦା ପ୍ରଳୟ କାଳରେ ନାରାୟଣ ଏହି କଳ୍ପବଟ ମୂଳେ ମାର୍କଣ୍ଡେୟ ମୁନିଙ୍କୁ ଆଶ୍ରୟ ଦେଇଥିଲେ । 'ଦେବ ନାଶନ ବଟ' ବୋଲି ଅନ୍ୟ ଏକ ମହିମା ମଣ୍ଡିତ ବୃକ୍ଷର ଉଲ୍ଲେଖ ଅଛି । ବ୍ରହ୍ମା ସେଥିରୁ ଆଠଟି ପତ୍ର ଆଣି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳର କେତେକ ପବିତ୍ର ସ୍ଥାନରେ ରୋପଣ କରିଥିଲେ । ସେଥିମଧ୍ୟରୁ ଗୋଟିଏ ମହୋଦଧିର ଉତ୍ତରରେ ନୀଳଶୈଳରେ ରୋପିତ ହୋଇଥିଲା । ତାହା ହେଉଛି - କଳ୍ପବଟ । ଏହା ଅକ୍ଷୟ ଅମର । ପ୍ରଳୟ କାଳରେ ଜଳସ୍ତର ଯେତିକି ଉପରକୁ ଉଠେ, ଏହି ବୃକ୍ଷଟି ସେହି ଅନୁସାରେ ବଢ଼ି ବଢ଼ିଯାଏ । ଏହି କଳ୍ପବଟ ପୁଣି ସ୍ୱୟଂ ପରଂବ୍ରହ୍ମ ଭଗବାନ । ଏପରି ବିଶ୍ୱାସକୁ ଘେନି ପୁରାକଥା ମାନ ଗୁନ୍ଥା ହୋଇଛି ।

ଆଦିନାଥ, ବିଷ୍ଣୁ ନାରାୟଣ, ଜଗନ୍ନାଥ, ଶ୍ରୀହରି କୃଷ୍ଣ ଏକ ଓ ଅଭିନ୍ନ ଦେବତା ବୋଲି ଗ୍ରହଣ କରି କୈବର୍ତ୍ତ ଗୀତାର ଆଖ୍ୟାନ ଉପାଖ୍ୟାନ ଗୁନ୍ଥା ହୋଇଛି । ମହାପ୍ରଳୟ, କଳ୍ପବଟ, କଳ୍ପବଟର ଗୋଟିଏ ପତ୍ର ଉପରେ ଜଗନ୍ନାଥ ବିଷ୍ଣୁଙ୍କର ଯୋଗନିଦ୍ରା ଓ ପ୍ରଳୟ ପୟୋଧି ଜଳର ଉତ୍ତାଳ ତରଙ୍ଗରେ ଆନ୍ଦୋଳିତ ବଟପୁଟକୁ ସ୍ଥିର ରଖିବାକୁ ତାଙ୍କ କର୍ଣ୍ଣମୂଳ ମଳିରୁ କୈବର୍ତ୍ତ ଜାତିର ଆଦିପୁରୁଷ ଦାସରାଜାଙ୍କର ଜନ୍ମ । ପ୍ରଳୟାନ୍ତରେ ବଟପତ୍ରର ରୂପାନ୍ତର ଘଟି ମାଈ ଅଶ୍ୱ ଓ ତାହା କାଳକ୍ରମେ କୈବର୍ତ୍ତ କୁଳର ଇଷ୍ଟଦେବୀ ବାଶେଳୀ ରୂପରେ ଆବିର୍ଭୂତ ହେବା, ସିଂହଳ ଦ୍ୱୀପରେ ଦାସ ରାଜାଙ୍କର ବାଣିଜ୍ୟ ଓ ରାଜପଣ, ମହାନଦୀର ମନୋରମ ରମଣୀ ରୂପ ଧାରଣ ଓ ଗିରିରାଜଙ୍କ ସହିତ କେଳି, ସେମାନଙ୍କ କନ୍ୟା ଗିରିକା ସହିତ ଦାସ ରାଜାଙ୍କର ବିବାହ, ଦାସ ରାଜାଙ୍କର ୯୯ ରାଣୀ ଓ ପାଟରାଣୀ ଗିରିମାଙ୍କର ଯଜ୍ଞ ଚରୁ ଖାଇ ସନ୍ତାନ ଲାଭ ଓ ବଂଶ ବିସ୍ତାର, ଦାସ ରାଜାଙ୍କ ବୀର୍ଯ୍ୟ ମହାନଦୀ ଜଳରେ ପଡ଼ିବା ଓ ତାକୁ ରୋହୀ ମାଛ ରୂପରେ ଥିବା ଅଭିଶପ୍ତା ଅପସରା ଭକ୍ଷଣ କରି ଗର୍ଭବତୀ ହେବା ଏବଂ ସେ ଗର୍ଭରୁ ମତ୍ସ୍ୟବତୀ ଓ ମତ୍ସ୍ୟ ରାୟଙ୍କର ଜନ୍ମ, ଦାସରାଜା ସେମାନଙ୍କୁ ପୁତ୍ର କନ୍ୟା ରୂପେ ଗ୍ରହଣ,

ମତ୍ସ୍ୟବତୀଙ୍କ ସହ ପରାଶରଙ୍କ ମିଳନ ଓ ବ୍ୟାସଙ୍କ ଜନ୍ମ, ପରାଶରଙ୍କ ବରଦାନ ଫଳରେ ମତ୍ସ୍ୟବତୀ ଯୋଜନଗନ୍ଧା ସତ୍ୟବତୀ ହେବା ଓ ସୋମବଂଶୀ କ୍ଷତ୍ରୀୟ କୁରୁକୁଳ ରାଜା ଶାନ୍ତନୁଙ୍କ ସହ ବିବାହ, ସେହି ସତ୍ୟବତୀ ଧୃତରାଷ୍ଟ୍ର ପଣ୍ଡୁ ଓ ବିଦୂରଙ୍କର ପିତାମହୀ ରୂପେ କୁରୁକୁଳର ବଂଶରକ୍ଷା ଆଦି ପୁରାକଥା ବା ମିଥ୍‌ଟିର କଥାଂଶ ଓ କୈବର୍ତ୍ତ ଗୀତାର ମୂଳ ଆଖ୍ୟାନ ବା ପ୍ରଧାନ ବିଷୟର ବିଭିନ୍ନ ଉପାଖ୍ୟାନ । ଏହା ଚୈତ୍ର ପୂର୍ଣ୍ଣିମା ଓ ସେହି ଦିନଠାରୁ ଆଠଦିନ ଧରି ହେଉଥିବା କୈବର୍ତ୍ତକୂଳର ବାଶେଳୀ ପୂଜା, ଚଇତି ଘୋଡ଼ାନାଚ ଉତ୍ସବରେ ଏଯାବତ୍ ଉଦ୍‌ଜୀବିତ ଅଛି । ଏହି ପ୍ରଚଳିତ ପରମ୍ପରା (Living Tradition) ଓ ସେଇବାଟେ ପୁରୁଷାନୁକ୍ରମେ ସଞ୍ଚାରିତ ରୀତି ଓ ସନ୍ଦେସର ଅନୁଧ୍ୟାନ ବଡ଼ ଚିତ୍ତାକର୍ଷକ । ପୁରାକଥାଟିର ସଂରଚନା (Structure)କୁ ଅନୁଶୀଳନ କଲେ ପ୍ରକୃତି ଓ ସଂସ୍କୃତି, ଆର୍ଯ୍ୟ ଓ ନୈଷାଦୀ ଜନଗୋଷ୍ଠୀ, ସ୍ଥଳଭାଗ ଓ ଜଳଭାଗ ମଧ୍ୟରେ ସଂପର୍କ ଓ ସମନ୍ୱୟର ବିଚିତ୍ର ସ୍ୱରୂପ ଉଦ୍‌ଭିନ୍ନ ହୁଏ । ଏଠାରେ ବୃକ୍ଷର ଦୃଷ୍ଟାନ୍ତ ନିଆଯାଇପାରେ ।

ବୃକ୍ଷ କେବଳ ସୂର୍ଯ୍ୟ କିରଣରୁ ଉପାଦାନ ଗ୍ରହଣ କରି ଭୂଭାଗର ଜଳବାୟୁରେ ବୃଦ୍ଧିଲାଭ କରେନାହିଁ, ସେ ପାଦପ । ସେ ତାର ପାଦ ଅର୍ଥାତ୍ ପ୍ରଧାନ ମୂଳ ଚେର ତଥା କୈଶିକ ଚେରମାନଙ୍କ ବାଟେ ଜଳସିକ୍ତ ମୃତ୍ତିକାରୁ ରସ ଶୋଷଣ କରି ବଢ଼ିଥାଏ । ଶାଖା, ପ୍ରଶାଖା, ପତ୍ର, ପୁଷ୍ପ, ଫଳ ଧାରଣ କରେ । **ସେହିପରି** ନାନା ସଂସ୍କୃତିର ସମ୍ପର୍କରେ ଆସି ମିଶି ଆହରଣ ଓ ଆତ୍ମୀକରଣ କରି ସମୃଦ୍ଧ ହୋଇଥିବା ଗୋଟିଏ ସଂସ୍କୃତିର ମୂଳ ଚେର, କୈଶିକ ଚେର ଓ ମୃତ୍ତିକା ତଥା ମୃତ୍ତିକାର ରାସାୟନିକ ଗଠନ ଆପାତ ଦୃଷ୍ଟିର ଅନ୍ତରାଳରେ ଥାଏ । ସଂସ୍କୃତିରେ ମୌଳିକ ଜୀବନ ସଂଚାର ପ୍ରକ୍ରିୟା ଲକ୍ଷ୍ୟ କରିବା, ଅନୁମାନ କରିବା ଗୋଟିଏ ଚିତ୍ତାକର୍ଷକ ଅନୁଭବ ।

ଅଚ୍ୟୁତାନନ୍ଦ ଦାସ କୈବର୍ତ୍ତମାନଙ୍କ ପରମ୍ପରାକୁ ମହାଭାରତ ସହିତ ଯୋଡ଼ିଦେଇଛନ୍ତି । ବିଷ୍ଣୁ ଓ ତାଙ୍କ କର୍ଣ୍ଣମୂଳରୁ ଆଦିକୈବର୍ତ୍ତ ଦାସ ବା ଦାସରାଜାଙ୍କ ଜନ୍ମର ବର୍ଣ୍ଣନା କରିବା ସହିତ ସେମାନଙ୍କର ଇଷ୍ଟ ପୂଜାବିଧି ଓ କୌଳିକ ପରମ୍ପରାର ବିଧିବିଧାନ, ଚୈତ୍ର ପର୍ବ, ଡ଼ିଙ୍ଗି ନାବ ପୂଜା ବିଧି ଆଦି ତା ସହିତ ମିଳାଇ ଲେଖିଛନ୍ତି । ବହୁ ଜାତି ଓ ଜନଗୋଷ୍ଠୀର ମହାମିଳନରେ ଗଠିତ ମହାଜାତିକୁ ନଦୀମାନଙ୍କର ସାଗରର ବିପୁଳ ଜଳରାଶିରେ ଏକାକାର ହେବା ସହିତ ତୁଳନା

କହାଯାଇପାରେ । କିନ୍ତୁ ସାଗର ସଂଗମଠାରେ ମୁହାଣ ପାଖରେ ସାଗରରେ ମିଶୁଥିବା ନଦୀକୁ ଜାଣିହେବ । ସଂସ୍କୃତ ମହାଭାରତର ଓଡ଼ିଆ ରୂପ ସାରଳା ଦାସଙ୍କ ମହାଭାରତ (ସଭାପର୍ବ)ରେ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ଆୟୋଜନ ବର୍ଣ୍ଣନା ପ୍ରସଙ୍ଗରେ ଭଣ୍ଡାର ପରିଛା ପଣରେ ଦାୟିତ୍ୱ ନିର୍ବାହ କରୁଥିବା କୃଷ୍ଣଙ୍କ ସହିତ ଦାସ ରାଜାଙ୍କ କଥୋପକଥନ ବର୍ଣ୍ଣନା କରାଯାଇଛି ।

''କଇବର୍ତ୍ତ ନୃପତି ଦେଖି କଲାକ ଅନେକ ପୂଜା ।
କିସ ଅର୍ଥେ ବିଜେ ସ୍ୱାମୀ ଦେବାଧିଦେବ ରାଜା ।
ବଦୟନ୍ତି ଜନାର୍ଦ୍ଦନ ଶୁଣ କଇବର୍ତ୍ତ ରାୟେ ଶ୍ରେଷ୍ଠ ।
ରାଜୁସି ଯାଗ ସଭା ଆସି ହେଲାକ ନିକଟ ।।
ନାବମାନ ସଞ୍ଚିତ କଲୁ କି ହୋ କଇବର୍ତ୍ତ ।
ନନ୍ଦନବନ ହାଦେ ଦିଲାକ ପୁରୁହୂତ ।।
ନିଷାଦ ବୋଇଲା ସ୍ୱାମୀ ଦେଖ ବନମାଳୀ ।
ପଞ୍ଚବିଂଶ ମର୍ଭୁତ ନାବ ମୁଁ ଅଛଇ ବଟାଳି ।।
ଆହୁରି ଅନେକ ନାବ କରିବି ନିରିମାଣ..........''

ଏହି ନିଷାଦ କୈବର୍ତ୍ତ ଗୋଷ୍ଠୀ ଓଡ଼ିଶାର ସଂସ୍କୃତି ଓ ଇତିହାସ ଗଠନରେ ନିଜର ଭୂମିକା ନିର୍ବାହ କରିଛନ୍ତି । ନାନା ପ୍ରକାର ଓ ଆକୃତିର ନାବ ନିର୍ମାଣ ଓ ନାବ ଚାଳକ ଭାବରେ ପ୍ରାଚୀନ ଓଡ଼ିଶାର ଦରିଆପାରି ସମ୍ପର୍କ ଓ ନୌବାଣିଜ୍ୟ, ବସତି ପ୍ରତିଷ୍ଠାରେ ଏମାନଙ୍କର ଭୂମିକା ଅନ୍ୱେଷଣ କଲେ, ଓଡ଼ିଆ ମହାଜାତିର ଇତିହାସର ଏକ ଅଂଶ ଉପରେ ସ୍ୱତଃ ଆଲୋକପାତ ହୁଏ ।

କାର୍ତ୍ତିକ ପୂର୍ଣ୍ଣିମାର ଡଙ୍ଗା ଭସାଣି ହେଉ, ଆଶ୍ୱିନ ଗୁରୁବାର ଓଷା ପାଳନ ହେଉ, ଚୈତ୍ର ମାସରେ କୈବର୍ତ୍ତମାନଙ୍କର ବାଶେଳୀ ପୂଜା ଓ ଘୋଡ଼ାନାଚ ହେଉ, ଏଗୁଡ଼ିକ ଆମର ଜୀବିତ ପରମ୍ପରା । ଏଇଥିରେ ବଞ୍ଚି ରହିଛି ଓଡ଼ିଆ ଜାତିର ସାଂସ୍କୃତିକ ଇତିହାସ ।

–୦–

# ଦିନ ହେଲା ବକର

ଜାନୁଆରୀ ପହିଲା ଦିନଟି ରୋମୀୟ ଦେବତା ଜାନୁସ୍ (Janus)ଙ୍କ ପର୍ବ ଦିନ । ଦ୍ୱାର ଓ ଉନ୍ମୋଚନ ଭଳି କାମର ଦେବତା (the god of door and opening) ଭାବରେ ତାଙ୍କର ମହିମା ରୋମୀୟ ପରମ୍ପରାରେ ବହୁ କୀର୍ତ୍ତିତ । ପ୍ରାଚୀନ କାଳରୁ କେତେକ ପୁରାତନ ସଂସ୍କୃତି ଓ ପରମ୍ପରାରେ ଏପରି ଗୋଟିଏ ଗୋଟିଏ ଦିନ ଜଣେ ଜଣେ ଦେବତାଙ୍କ ପାଇଁ ଖଞ୍ଜା ହୋଇଛି । ସେହିପରି ଚନ୍ଦ୍ର ଓ ସୂର୍ଯ୍ୟ ଗୋଟିଏ ଗୋଟିଏ ନକ୍ଷତ୍ର ଓ ରାଶିରେ ପ୍ରବେଶ କରିବା ଦିନକୁ ମଧ୍ୟ ପର୍ବର ମାନ୍ୟତା ମିଳିଛି । ସେହି ଦିନଗୁଡ଼ିକରେ କିଛି କିଛି ଧର୍ମକୃତ୍ୟ ସଂଯୁକ୍ତ । ସୂର୍ଯ୍ୟ ମକର ରାଶିରେ ପ୍ରବେଶ କରିବା ଦିନଟିର ନାମ - ମକର ସଂକ୍ରାନ୍ତି । ସେ ଦିନଠୁ ପୁଣି ସୂର୍ଯ୍ୟଙ୍କର ଉତ୍ତରାୟଣ ଗତି ଆରମ୍ଭ ହୁଏ । ତେଣୁ ଏହାର ଆଉ ଗୋଟିଏ ନାମ - ଉତ୍ତରାୟଣ ସଂକ୍ରାନ୍ତି । ସୂର୍ଯ୍ୟଙ୍କର ଏପରି ଅୟନ ପରିବର୍ତ୍ତନ ହେତୁ ଏଇଠୁ କ୍ରମେ କ୍ରମେ ଦିନ ବଡ଼ ଓ ରାତି ସାନ ହୁଏ । ଓଡ଼ିଆରେ ପ୍ରବାଦଟିଏ ଅଛି - 'ମକର - ଦିନ ହେଲା ବକର' । ସୂର୍ଯ୍ୟଙ୍କର ଦକ୍ଷିଣାୟନରୁ ଉତ୍ତରାୟଣ ଗତିକୁ ବୋଧହୁଏ ଏପରି କୁହାଯାଇଛି । ଏହି ଦିନ ସୂର୍ଯ୍ୟ ଏବଂ ଶିବଙ୍କର ପୂଜା ହୁଏ ।

ଜାନୁଆରୀ ମାସରେ ପୌଷ ଓ ମାଘ ମାସର କିଛି କିଛି ଅଂଶ ଭୋଗ ହୁଏ । ମକର ସଂକ୍ରାନ୍ତିର ଭୌଗୋଳିକ ଦିଗ ଉପରେ ସୂଚନା ଦେଇ ପଦ୍ମଚରଣ ପଟ୍ଟନାୟକ ଲେଖିଛନ୍ତି - "ମକର କ୍ରାନ୍ତି ଆମ ଦେଶ ଓ ବିଷୁବ ରେଖାର ଦକ୍ଷିଣରେ ଅବସ୍ଥିତ । ସୂର୍ଯ୍ୟଙ୍କର ପ୍ରତୀୟମାନ ଗତି ଯେଉଁ ଦିନଠାରୁ ଦକ୍ଷିଣକୁ ଆରମ୍ଭ ହୁଏ, ସେହି ଦିନଠାରୁ ଦିନ ଆସ୍ତେ ଆସ୍ତେ କମିବାକୁ ଆରମ୍ଭ କରେ । ମକର କ୍ରାନ୍ତି ଛୁଇଁଲେ ଆଉ କମେ ନାହିଁ । ସୂର୍ଯ୍ୟ ପୁଣି ଉତ୍ତରକୁ ଫେରନ୍ତି ଓ ଦିନ ବଡ଼ ହେବାକୁ ଆରମ୍ଭ କରେ । ଶୀତ ଆସ୍ତେ ଆସ୍ତେ କମିବାକୁ ଆରମ୍ଭ କରେ । ଏହି ସଂକ୍ରାନ୍ତି ପ୍ରାୟ ଇଂରାଜୀ ଜାନୁଆରୀ ମାସ ୧୩ କିମ୍ବା ୧୪ ତାରିଖରେ ପଡ଼େ ।" ଏହା ଶାରଦ ଧାନ ଓ ମାଘ ରାଶିର ଅମଳ ସମୟ । ନୂଆ ଅରୁଆ ଚାଉଳ, ନୂଆ ରାଶି, ନୂଆ ଗୁଡ଼, କ୍ଷୀର, ଦହି, ଆଖୁରସ, ନଡ଼ିଆ, ଅଦା, କର୍ପୂର ମିଶାଇ 'ମକର ଚାଉଳ' ତିଆରି ହୁଏ । ସୂର୍ଯ୍ୟଙ୍କୁ ପ୍ରସାଦ ରୂପେ ମକର

ଚାଉଳ ବଢ଼ାଯାଏ । ଶିବ ମନ୍ଦିରମାନଙ୍କରେ ମଧ୍ୟ 'ମକର ଚାଉଳ' ଭୋଗ ଦିଆଯାଏ । ବିଷ୍ଣୁ ମନ୍ଦିରରେ ମଧ୍ୟ ମକର ଚାଉଳ ଭୋଗ ହୁଏ । ଆଦିତ୍ୟ-ହୃଦୟ ସୂର୍ଯ୍ୟ ଚକ୍ରରେ ଅଛି, ସୂର୍ଯ୍ୟ ମାଘ ମାସରେ ଅରୁଣ ଏବଂ ପୌଷ ମାସରେ ବିଷ୍ଣୁ । ସୂର୍ଯ୍ୟ ଦେବତାଙ୍କୁ ତିଳଗଜା ଭୋଗ ଦିଆଯାଏ । ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରରେ ଏହା ଗୋଟିଏ ପ୍ରଧାନ ପର୍ବ, ଏହି ଦିନ ସ୍ନାନାଦି କରି ଲିଙ୍ଗରାଜଙ୍କୁ ଦର୍ଶନ କରିବା ପୁଣ୍ୟପ୍ରଦ (ଦୃଷ୍ଟ୍ୱା ମକର ସଂକ୍ରାନ୍ତି ଲିଙ୍ଗ ତ୍ରିଭୁବନେଶ୍ୱର, ଘୃତ କମ୍ୱଳ ସଂଯୁକ୍ତ ମଗ୍ନିଲୋକ ମବାପ୍ନୁୟାତ) । ଏହା ପୁରୀ ଜଗନ୍ନାଥ ମହାପ୍ରଭୁଙ୍କର ଦ୍ୱାଦଶ ଯାତ୍ରାର ମଧ୍ୟ ଅନ୍ତର୍ଗତ । ଓଡ଼ିଶାର ଗ୍ରାମେ ଗ୍ରାମେ ମନ୍ଦିର ମାନଙ୍କରେ ଏହି ପର୍ବ ପାଳିତ ହୁଏ । ଘରେ ଘରେ ମକର ଚାଉଳ ପ୍ରସ୍ତୁତ କରି ବଡ଼ ବଡ଼ିଆଙ୍କ ଠାରେ ଭୋଗ ଲାଗେ । ବଉଳ ଅମାବାସ୍ୟା ଦିନ ବଉଳ ଓ ମକର ସଂକ୍ରାନ୍ତି ଦିନ ମକର ଚାଉଳ ଆଦାନ ପ୍ରଦାନ କରି ବଉଲ ବସିବା, ମକର ବସିବା ଭଳି ପ୍ରଥା ଓଡ଼ିଶାରେ ଚଳୁଥିଲା । ସଂପ୍ରତି ବଉଳ ଓ ମକର ଶବ୍ଦ ସଂଗାତ ବା ମିତ ଅର୍ଥରେ ବ୍ୟବହୃତ ।

ଓଡ଼ିଶାରେ ବସବାସ କରୁଥିବା ଦକ୍ଷିଣ ଭାରତୀୟମାନେ ମକର ସଂକ୍ରାନ୍ତି ସମୟରେ 'ପୋଙ୍ଗଲ' ପାଳନ କରନ୍ତି । ଏହା ଦକ୍ଷିଣ ଭାରତୀୟ ଆର୍ଯ୍ୟ ଜନଗୋଷ୍ଠୀର କୃଷିପର୍ବ । ଏହି ସମୟକୁ ସୂର୍ଯ୍ୟଙ୍କର ଉତ୍ତରାୟଣ ଗତି ହେତୁ ଦକ୍ଷିଣ ଭାରତରେ କୃଷି ଅମଳ ପାଇଁ ଅନୁକୂଳ ପାଣିପାଗ ହୋଇଥାଏ । ନୂଆ ହୋଇ ଅମଳ ହୋଇଥିବା କୃଷି ଜାତ ଦ୍ରବ୍ୟରେ ଘର ପୂରି ଉଠୁଥାଏ । ତେଣୁ ନୂଆ ଧାନର ଚାଉଳରେ 'ପୋଙ୍ଗଲ' ରନ୍ଧାଯାଏ । 'ପୋଙ୍ଗଲ' ଗୋଟିଏ ତାମିଲ ଶବ୍ଦ । ଏହାର ଅର୍ଥ ଉତୁରି ଆସିବା । କ୍ଷୀରରେ ଚାଉଳ ପକାଇ କ୍ଷୀରି କଲାବେଳେ ଚୁଲିରେ ବସିଥିବା ପାତ୍ରରୁ ଉତୁରି ଆସିବାକୁ ନେଇ ଏହି ଶବ୍ଦଟି ପ୍ରୟୋଗ ହୋଇଛି । ପୋଙ୍ଗଲ ତିନି ଦିନ ବ୍ୟାପି ପର୍ବ, ଏହାର ପ୍ରଥମ ଦିନଟି 'ଭୋଗି ପୋଙ୍ଗଲ' । ଏହା କେବଳ ପାରିବାରିକ ଉତ୍ସବ । ଦ୍ୱିତୀୟ ଦିନଟି 'ସୂର୍ଯ୍ୟ-ପୋଙ୍ଗଲ', ଏହି ଦିନ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ପୋଙ୍ଗଲ ଅନ୍ନ ନୈବେଦ୍ୟ ରୂପେ ବଢ଼ାଯାଏ, ବନ୍ଧୁବାନ୍ଧବ ପଚରା ଶଙ୍ଖୁଳା ଦିନ ଏଇଟି । ତୃତୀୟ ଦିନଟି ''ମଟ୍ଟୁ-ପୋଙ୍ଗଲ'' । ଏହି ଦିନ ଗୋରୁ ଗାଈଙ୍କ ପର୍ବ । କୃଷିରେ ଲାଗୁଥିବା ପଶୁଙ୍କ ପର୍ବ । ସୂର୍ଯ୍ୟ ଓ ଗ୍ରାମ ଦେବତାଙ୍କୁ ଭୋଗ କରାଯାଇଥିବା ପିଠାପଣା ଆଦି ଭୋଗ ଗୋରୁମାନଙ୍କୁ ଖାଇବାକୁ ଦିଆଯାଏ । ଏହା ଗୋମହିଷାଦି ପଶୁଙ୍କର ବେଶ ହେବା

ଓ ଭୂରି ଭୋଜନ ପାଇବାର ଦିନ । ଷଣ୍ଢ ଲଢ଼େଇ ଏହି ଉତ୍ସବର ଗୋଟିଏ ବଡ଼ ଆକର୍ଷଣୀୟ ଦିଗ । ପୋଙ୍ଗଲ ଅବସରରେ ଆଖୁ ଚୋବାଇ ଚୋବାଇ ଖାଇବା ଗୋଟିଏ ବିଧି । ମକର ସଂକ୍ରାନ୍ତିକୁ ଲଗାଇ ତିନି ଦିନ ଦକ୍ଷିଣ ଭାରତରେ ଏପରି ଉତ୍ସବ ଚାଲିଥିବା ବେଳେ ସାରା ଭାରତରେ ଏହା ବିଭିନ୍ନ ଭାବରେ ପାଳିତ ହେଉଥାଏ । ଏହି ସଂକ୍ରାନ୍ତିଟି ଓଡ଼ିଶାର ଆଦିବାସୀ ସଂପ୍ରଦାୟର ପ୍ରଧାନ ପର୍ବ ଦିନ । ନୃତ୍ୟ ଗୀତ ଓ ଖିଆପିଆର ଉତ୍ସବ ।

ଓଡ଼ିଶାର କେତେକ ଅଞ୍ଚଳରେ ମକର ସଂକ୍ରାନ୍ତି ଦିନ 'ବେଣାଟିଆ ଓଷା' ବା କଉଡ଼ିଆ ବିନାୟକ ବ୍ରତ ନାମରେ ଏକ ଓଷା ପାଳିତ ହୁଏ । ପ୍ରାଚୀନ ଓଡ଼ିଆ ଗଦ୍ୟରେ ଲେଖା ବେଣାଟିଆ ଓଷା କଥା ଓଡ଼ିଶାର କେତେକ ଜାଗାରୁ ମିଳିଛି । ଏହି କଥାରୁ ଓଡ଼ିଶା ସହିତ ସିଂହଳର ସଂପର୍କ ବିଷୟରେ ସୂଚନା ମିଳେ । ଏହି କଥାରେ ଅଛି - ଈଶ୍ୱର ପାର୍ବତୀ ପଶା ଖେଳିବାକୁ ମନ କରିବାରୁ, ଈଶ୍ୱର ଏଇ ଖେଳରେ ମଧ୍ୟସ୍ଥତା କରିବାକୁ କୁଶରେ ଗୋଟିଏ ପିତୁଳା ସୃଷ୍ଟି କରି ଜୀବନ୍ୟାସ ଦେଲେ । ସେ ହେଲା କୁଶ ବଟୁ । ଖେଳରେ କିଏ ହାରିଲା ବୋଲି ଶିବ ପଚାରିବାରୁ କୁଶବଟୁ ଅତୁଆରେ ପଡ଼ିଲା । କହିଲା - 'ପିତା ହାରିଲେ' । ଏଥିରେ ଶିବ କ୍ରୋଧ କଲେ । ତାଙ୍କ ଅଭିଶାପରେ କୁଶବଟୁ ଖଣ୍ଡିଆ ମାଢଳ ହୋଇ ଭୋକ ଉପାସରେ ମଣ୍ଡପ କୋଣରେ ପଡ଼ି ରହିଲା । ସେ ପରେ ବେଣାଟିଆ ଓଷା ପାଳି ଶିବଙ୍କର କୃପା ଲାଭ କଲା । ସେ ଓଷା ପାଳିବା ବେଳେ କୋରମେଇ ନାମକ ଝିଅଟିଏ ଈଶ୍ୱର ପାର୍ବତୀଙ୍କ ସ୍ୱପ୍ନାଦେଶ ପାଇ ତାକୁ ପୂଜା ପାଇଁ ଆବଶ୍ୟକ ଦ୍ରବ୍ୟ ଯୋଗାଇ ଦେବାର ବର୍ଣ୍ଣନା ଅଛି । ଈଶ୍ୱରଙ୍କ ଆଶୀର୍ବାଦ ପାଇ କୁଶବଟୁ ଆରୋଗ୍ୟ ଲାଭ କରି ସିଂହଳ ଦ୍ୱୀପରେ ରାଜପଦ ପାଇଲା । ସେ କୋରମେଇକୁ ରାଣୀ କରି ନେଲା ।

ବେଣାଟିଆ ଓଷା କଥାରେ ସିଂହଳ ଦ୍ୱୀପର ଉଲ୍ଲେଖରୁ ଓଡ଼ିଶା ସହିତ ସିଂହଳର କୌଣସି ରାଜ ବଂଶର ସମ୍ପର୍କର ସୂଚନା ମିଳେ । ଶିରି ସୁବଣାଥି କଥାରେ ମଧ୍ୟ ଏପରି ସଂକେତ ଅଛି । ତେବେ ଏହା କେଉଁ ସିଂହଳ ବା ପ୍ରକୃତରେ କେଉଁ ଦ୍ୱୀପକୁ ବୁଝାଉଛି, ତାହା ଅନୁସନ୍ଧାନ ସାପେକ୍ଷ ଓଷା ବ୍ରତମାନଙ୍କରେ ଥିବା ଏପ୍ରକାର ଉଲ୍ଲେଖକୁ କେବଳ ଉଦ୍‌ଭଟ୍ଟ କଳ୍ପନା ବୋଲି ନଭାବି ଏହା ଉପରେ ବିଚାର ଓ ଅନୁସନ୍ଧାନ କରାଯାଇପାରେ ।

-୬-

# ବରଣୀୟ ଶୀତ ବସନ୍ତରେ

ଭାରତୀୟ ପରମ୍ପରାରେ ଆମ୍ବ, ଆମ୍ବଡ଼ାଳ ଓ ଆମ୍ବପତ୍ରକୁ ପବିତ୍ର ଓ ଶୁଭ ବୋଲି ବିଚାର କରାଯାଏ । ଭାରତୀୟ ସାହିତ୍ୟରେ ଏହି ବୃକ୍ଷ ଓ ବକୁଳର ବର୍ଣ୍ଣନା ବହୁ କବିଙ୍କ ଲେଖନୀରେ ଚମତ୍କାର ଭାବରେ ଫୁଟି ଉଠିଛି । ଶୀତ ଋତୁର ପୌଷ ମାସ ବେଳକୁ ଗୋଟିଏ ଗୋଟିଏ ଆମ୍ବ ଗଛରେ ବଉଳ ଧରିବା ଆରମ୍ଭ ହୁଏ । କିନ୍ତୁ ବସନ୍ତ ଋତୁର ଫାଲ୍‌ଗୁନ ପ୍ରାରମ୍ଭରେ ଆମ୍ର କୁଂଜ ଭରା ବଉଳରେ ମହକି ଉଠେ ।

ପ୍ରକୃତିରେ ଧିରେ ଧିରେ ପରିବର୍ତ୍ତନ ଘଟେ । ବହୁ ଶତାବ୍ଦୀ ପୂର୍ବେ ଓଡ଼ିଶାର ପ୍ରାକୃତିକ ପରିସ୍ଥିତି ହୁଏତ ଭିନ୍ନ ଥିବ । ଓଡ଼ିଶାର ପ୍ରାଚୀନ ଓ ପ୍ରସିଦ୍ଧ ଧର୍ମଶାସ୍ତ୍ର ପ୍ରଣେତା ଧବଳାଚାର୍ଯ୍ୟ ତାଙ୍କର 'ଧବଳ - ସଂହିତା'ରେ ଲେଖିଛନ୍ତି - "ପୌଷେତୁ ବକୁଳ କ୍ଷୀର ପାୟସୈଃ ତର୍ପୟେତ୍ ପିତୃନ୍ ।" ସେହି ଅନୁସାରେ ପୌଷ ଅମାବାସ୍ୟାରେ ପିତୃ ତର୍ପଣ ପାଇଁ ବିଧାନ ଖଞ୍ଜା ଯାଇଛି । ପୌଷ ଅମାବାସ୍ୟା ଦିନ ଓଡ଼ିଶାରେ ବକୁଳ ମିଶ୍ରିତ କ୍ଷୀର ପାୟସରେ ପୂର୍ବଜ ମାନଙ୍କର ତର୍ପଣ ବିଧି ଚଳୁଥିବାର ସୂଚନା ଏଥିରୁ ମିଳେ । ଧବଳାଚାର୍ଯ୍ୟଙ୍କ ପରବର୍ତ୍ତୀ ଧର୍ମଶାସ୍ତ୍ରକାରମାନେ ମଧ୍ୟ 'ବକୁଳାଦିଭିଃ ପିତୃ ତର୍ପଣମ୍' ବୋଲି ଉଲ୍ଲେଖ କରିଛନ୍ତି । ଗଦାଧର ରାଜଗୁରୁଙ୍କ କାଳସାର (ଗଦାଧର ପଦ୍ଧତି)ରେ ମଧ୍ୟ ଅନୁରୂପ ବ୍ୟବସ୍ଥାର ସୂଚନା ରହିଛି । ସେହି ଅନୁସାରେ ଓଡ଼ିଆ ପାଞ୍ଜିମାନଙ୍କରେ ଉଲ୍ଲେଖ କରାଯାଇଛି । ବଉଳ ଅମାବାସ୍ୟା ବା ବଉଳ ଉଆଁସ ଓଡ଼ିଶାରେ ଗୋଟିଏ ପ୍ରଧାନ ପର୍ବ ଦିନ ।

ପୌଷ ମାସ ବେଳକୁ ଶାରଦ ଧାନ ଅମଳ ହେଉଥାଏ । ଏହି ନୂଆ ଧାନ ଚାଉଳ ଚୂନାରେ ବଉଳ ଅମାବାସ୍ୟା ଦିନ ବଉଳ ଗଇଁଠା ତିଆରି ହୁଏ । କେତେକ ଜାଗାରେ ଏହାକୁ ବଉଳ-ଗୁଡ଼ି କହନ୍ତି । ବଉଳ ଗଇଁଠା ଓ ଖିରିସା ସହିତ କେଉଁଠି ପୁରମଣ୍ଡା କରାଯାଏ । ସନ୍ଧ୍ୟାବେଳେ ଏହାକୁ ରୋଷେଇ ଘର ଈଶାଣ କୋଣରେ ଥିବା ବଡ଼ ବଡ଼ିଆଙ୍କ ଠାରେ ଭୋଗ ଲଗାଯାଏ । ଏହା ପରେ ଆମ୍ବ ଗଛ ମୂଳେ ପୂଜା କରି, ଗଛ ଉପରକୁ ଗଇଁଠା ପିଠା ପକାଯାଏ । ଏହି

ପୂଜା ପରେ ଆମ୍ବଗଛ ଭଲ ବଉଳିବ ଓ ଫଳ ଧରିବ ବୋଲି ବିଶ୍ୱାସ କରାଯାଏ । କିନ୍ତୁ ପୂର୍ବେ ବସନ୍ତ ଋତୁରେ ଆମ୍ବ ବଉଳରେ କାମଦେବଙ୍କୁ ପୂଜା କରାଯାଉଥିଲା ।

କାଳି ଦାସ (ଖ୍ରୀଷ୍ଟୀୟ ୪ର୍ଥ-୫ମ ଶତାବ୍ଦୀ)ଙ୍କ ସମୟରେ କାମଦେବ ପୂଜା ପ୍ରଚଳିତ ଥିଲା । ଏବେ ଅନଙ୍ଗ ତ୍ରୟୋଦଶୀ, କାମ ମହୋତ୍ସବ ନାମ ପୁରାଣ ସ୍ମୃତି ଗ୍ରନ୍ଥମାନଙ୍କରେ ମିଳୁଛି । ମାତ୍ର କାଳିଦାସଙ୍କ ଅଭିଜ୍ଞାନ ଶକୁନ୍ତଳମ୍ ନାଟକରେ ଏହି ପୂଜାର ସୁନ୍ଦର ବର୍ଣ୍ଣନା ଅଛି । ବସନ୍ତ ଆଗମନରେ ପ୍ରମୋଦ ଉଦ୍ୟାନରେ ନବ ନିଯୁକ୍ତ ସଖୀ ଦ୍ୱୟ ପ୍ରବେଶ କରି ମୁକୁଳିତ ବଉଳ ଶୋଭିତ ଆମ୍ବଗଛ ଗୁଡ଼ିକୁ ଅନାଇ ବିମୋହିତ ହୋଇଛନ୍ତି । ଜଣେ ସଖୀ ଯାହା ଗାଇଛି, ତା'ର ଓଡ଼ିଆ ଅନୁବାଦ କରାଯାଇଛି-

ଲୋହିତ ଧବଳ ସବୁଜ ବନର ଆମ୍ବ ବଉଳ
ଶୁଭ ଆଗମନେ କଲୁ ଧରଣୀକୁ ଶୋଭା ବହୁଳ ।
ବସନ୍ତ ଋତୁର ଜୀବନ ସମ୍ପଦ ଅଟୁରେ ତୁହି
ଆଜରେ ତୋହର ବିପୁଳ ସତ୍କାର କରିବି ମୁହିଁ ।

ଅନ୍ୟ ସଖୀ ଜଣକ ପ୍ରଥମ ସଖୀର ସାହାଯ୍ୟରେ ବଉଳ ଡେମ୍ଫ ଭାଙ୍ଗି କାମଦେବଙ୍କୁ ପୂଜା କରି ବଉଳ ଅଞ୍ଜଳି ଅର୍ପଣ କରି ଗାଉଛି -

ଚୂତ ମୁକୁଳ, ତୋତେ କଲି ଅର୍ପଣ
ହୁଅ ତୁ ଯାଇ କାମଦେବଙ୍କ ବାଣ ।
ପଞ୍ଚ-ପୁଷ୍ପ-ଶାୟକ ମଧ୍ୟେ ତାଙ୍କର
ବିଶିଷ୍ଟ ସ୍ଥାନ ତୁହି ଲଭ ନିକର ।
ଯେଉଁ ବାଳାର ପ୍ରିୟ ଅଛି ବିଦେଶେ,
ତାର ମରମ ଭେଦ କର ବିଶେଷେ ।

ଏହା ବସନ୍ତ ଋତୁରେ ମଦନ ମହୋତ୍ସବ ବା କାମଦେବ ପୂଜାର ବର୍ଣ୍ଣନା । ଚୈତ୍ର ମାସର ଏହି ପର୍ବ କେଉଁଠି ହେଉଥିବ କେଜାଣି, ଓଡ଼ିଶାରେ ହେଉନାହିଁ । ଅବଶ୍ୟ, ବସନ୍ତ ଋତୁର ଫାଲ୍‌ଗୁନ ମାସରେ ମଦନ ମୋହନ କୃଷ୍ଣଙ୍କୁ ଦୋଳିରେ ବସାଇ ମହା ଉଲ୍ଲାସ ଉତ୍ସାହରେ ପୂଜା କରାଯାଉଛି । ତାଙ୍କ ଠାରେ ବଉଳ ଲାଗି

କରାଯାଉଛି । କିନ୍ତୁ ଆମ୍ବ ତୋଟାରେ ବା ଆମ୍ବଗଛ ମୂଳେ କାମଦେବ ପୂଜା ହେଉନାହିଁ । ମାତ୍ର ପୌଷମାସ ଅମାବାସ୍ୟା ସନ୍ଧ୍ୟାରେ ଏବେ ସୁଦ୍ଧା ନବ ବକୁଳର ସ୍ୱାଗତ କରାଯାଉଛି ଗଇଁଠା ଓ ଖିରିସା ଭୋଗ ଚଢ଼ାଇ ।

ସାହିତ୍ୟରେ ଯାହାର ବର୍ଣ୍ଣନା ଅଛି - ''ମତ୍ତ ଦ୍ୱିରେଫଂ - କରିଚୁମ୍ବିତ ଚାରୁପୁଷ୍ପା, ମନ୍ଦାନିଳାକୁଳିତ-ନମ୍ର-ମୃଦୁ-ପ୍ରବାଳାଃ,'' ସେହି - ''ଚୂତାଭିରାମ କଳିକା''ର ଶୁଭ ସ୍ୱାଗତ କରି ଯେଉଁ ବକୁଳ ଅମାବାସ୍ୟା ହୁଏ, ତାର ବିଧି ବର୍ଣ୍ଣନା କରି ଜଣେ କହିଲେ - '' ବଉଳ ଅମାବାସ୍ୟାରେ ଘରେ ଘରେ ବଉଳ ଗଇଁଠା ତିଆରି ହୁଏ । ଏହା କେବଳ ଚାଉଳ ଚୂନାକୁ ଜନ୍ତି, ସେହି ଜନ୍ତଣିକୁ ହାତରେ ବଳି ବଳି ତିଆରି କରାହୁଏ । ନଡ଼ିଆ ଖଣ୍ଡେ ଖଣ୍ଡେ କେହି କେମିତି ପକାନ୍ତି । ଏହା ବାଷ୍ପ ସିଦ୍ଧ ପିଠା । ଏହି ପିଠାରେ ଆମ୍ବଗଛକୁ ପୂଜା କରାଯାଏ ।'' ଆଉ ଜଣେ କହିଲେ - 'ମୁଗ, ଗୁଡ଼ ଜିରା ମିଶା ପୂର ଦେଇ ମଣ୍ଡା ହୁଏ । ଗଇଁଠା ବି ହୁଏ । ଅଟକାଳି ହୁଏ । ଏହିସବୁ ନୂଆ ଚାଉଳର ଚୂନା, ନୂଆ ମୁଗ, ନୂଆ ଗୁଡ଼ରେ ତିଆରି ହୁଏ । ସବୁ ପୂଜା ପାର୍ବଣର ବିଧି ପରି ଆଗ ଈଶାଣ କୋଣରେ ବଡ଼ବଡ଼ିଆଙ୍କଠାରେ ପୂଜା ହୁଏ । ଆମ୍ବ ଗଛଠାରେ ଗଇଁଠା ଭୋଗ ଦିଆହୁଏ । ବିଲରେ ବି ପୂଜା ହୁଏ ।'' ପୁଣି, ବ୍ରାହ୍ମଣ ଗୃହସ୍ଥମାନେ ଯାଉ ବା ଖିରୀରେ ଆମ୍ବବଉଳ ପକାଇ ଦେବ ପୂଜା କରନ୍ତି ବୋଲି ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ (ପୃ-୫୨୭୩)ରେ ଅଛି । ଓଡ଼ିଆ ସଂକ୍ଷିପ୍ତ ଜ୍ଞାନ କୋଷ (ପୃ-୪୦୬)ରେ ଉଲ୍ଲେଖ ଅଛି - 'ମୁଣ୍ଡି ବଉଳ ପକାଇ ଚାଉଳ ଚୂନାରେ ମଣ୍ଡା, ଗଇଁଠା ପିଠା ପାମ୍ପ ସିଦ୍ଧ କରି କରାଯାଏ ଏବଂ କ୍ଷୀରରେ ସାମାନ୍ୟ ମିଠା ପକାଇ ଖିରିସା କରି, ଏଥିରେ ପିଠା ଗୁଡ଼ିକୁ ବୁଡ଼ାଇ ଦେବତାଙ୍କୁ ଭୋଗ ଦିଆଯାଏ ।' ଏପରି ସ୍ଥାନ ଭେଦରେ ପାର୍ଥକ୍ୟ ପରିଲକ୍ଷିତ ହୁଏ ।

ପୌଷ ମାସର ଅମାବାସ୍ୟା ବା ବଉଳ ଅମାବାସ୍ୟା ଦିନ; ପୂଜାରେ ଭୋଗରାଗ, ବିଧିବିଧାନ ଆଦି ଯାହା ହେଉଥିଲେ ମଧ୍ୟ, ଏହା ଯେ 'ବଉଳ' ଓ ତାର ଫଳ ପାଇଁ କାମନା ନିବେଦନ, ଏହା ସ୍ପଷ୍ଟ ।

-୦-

# "ହେ ଅତୀତ କଥା କହ"

ଏଇ ନାମ କରଣ ମୋର ନିଜସ୍ୱ ନୁହେଁ । ପୁଣି ଏହି ବ୍ୟାକୁଳତା ବି ମୋର ନୁହେଁ । ଏହା ଯୋଗେଶ ବାବୁଙ୍କ ବ୍ୟାକୁଳତା !! ସେ ଲେଖିଛନ୍ତି - "ଦୋଳଯାତ୍ରା ଦିନ ଚିନ୍ତା କରୁଥିଲି, କାହିଁକି କେଜାଣି ମନକୁ ମନ କହି ଦେଉଥିଲି, ହେ ଅତୀତ ! କଥା କହ ।" ତା' ପରେ ସେ ଶୁଣିଲେ ଅତୀତର ସ୍ୱର -"ମୁଁ ତ କଥା କହୁଛି, ତୁମେ ଶୁଣି ପାରୁନ । ମୁଁ ବର୍ତ୍ତମାନର ଭିତରେ ହିଁ ଅଛି । ମୋତେ ଛାଡ଼ି ବର୍ତ୍ତମାନ ଛିଡ଼ା ହୋଇପାରିବ ନାହିଁ ।"

ଯୋଗେଶ ବାବୁ ପୁଣି ପଚାରିଲେ- "ଯଦି ଅଛ, ତେବେ କୁହ, ଦୋଳଯାତ୍ରାର ଉତ୍ପତ୍ତି କେବେ ହେଲା ? କେତେ ବର୍ଷ ତଳେ ତୁମେ ତାକୁ ପ୍ରଥମେ ଦେଖିଥିଲ ?"

ସେ ଉତ୍ତର ପାଇଲେ - "ଋଗ୍ ବେଦର କବିଗଣ ସୂର୍ଯ୍ୟଙ୍କର ଉତ୍ତରାୟଣ ଆରମ୍ଭଠାରୁ ନୂତନ ବର୍ଷ ଆରମ୍ଭ କରୁଥିଲେ, ତୁମ ଦୋଳଯାତ୍ରା ତାହାର ସ୍ମୃତି । ଫାଲ୍‌ଗୁନୀ ପୂର୍ଣ୍ଣିମାର ଦୋଳ ଛଅ ସାତ ସହସ୍ର ବର୍ଷ ପୂର୍ବେ ପ୍ରଥମେ ଦେଖିଥିଲି । ଏହାର ଦୁଇ ସହସ୍ର ବର୍ଷ ପୂର୍ବରୁ ଚୈତ୍ର ପୂର୍ଣ୍ଣିମା ଦିନ ଦୋଳ ଦେଖିଥିଲି ।" ଅତୀତ ସହିତ ଏପରି ଆଳାପ ହୁଏତ କାଳ୍ପନିକ। କିନ୍ତୁ ଗୋଟିଏ ଉତ୍ସବ ବା ଧର୍ମକୃତ୍ୟ ବାଟେ ଗୋଟାଏ ମହାନ୍ ଓ ପ୍ରାଚୀନ ସଂସ୍କୃତିର ଇତିହାସକୁ ଫେଡ଼ି ଦେଖାଇବାରେ ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ଆନ୍ତରିକତା, ନିଷ୍ଠା ଓ ବିଶ୍ଳେଷଣ କରିବାର ପଦ୍ଧତି ଅନୁଧ୍ୟାନ କରିବାର କଥା ।

ବର୍ଷକରେ ଦୁଇଥର 'ଦୋଳ' ପର୍ବ ପଡ଼େ । ସେଥି ମଧ୍ୟରୁ ଫାଲ୍‌ଗୁନୀ ମାସ ପୂର୍ଣ୍ଣିମା ଦିନ ପଡୁଥିବା ଦୋଳକୁ ଦୋଳ ବା ଦୋଳଯାତ୍ରା କୁହାଯାଏ । ଶ୍ରାବଣ ପୂର୍ଣ୍ଣିମାରେ ପଡୁଥିବା ଦୋଳକୁ ହିନ୍ଦୋଳ ବା ଝୁଲଣ ଯାତ୍ରା କୁହାଯାଏ । ସୂର୍ଯ୍ୟ ରୂପୀ ବିଷ୍ଣୁ ବର୍ଷକରେ ଏପରି ଦୁଇଥର ଦୋଳରେ ଆରୋହଣ କରନ୍ତି । ଫାଲ୍‌ଗୁନୀ ପୂର୍ଣ୍ଣିମାଦିନ କାଳର କୌଣସି ସମୟରେ ଉତ୍ତରାୟଣ ଆରମ୍ଭ ହୋଇଥିଲା, ସେ ଦିନ ବିଷ୍ଣୁଙ୍କର ଦୋଳ । ପୁଣି, ଯୋଗେଶ ବାବୁ ଲକ୍ଷ୍ୟ କରିଛନ୍ତି, କୌଣସି କୌଣସି ଜାଗାରେ ଚୈତ୍ର ପୂର୍ଣ୍ଣିମାରେ ଦୋଳହୁଏ । ସେଦିନ ବିଷ୍ଣୁଙ୍କର ଉତ୍ତରାୟଣ ଆରମ୍ଭ ।

ଉପରେ ତାଙ୍କ ମତ ଉଦ୍ଧାର କରି କୁହାଯାଇଛି ଫାଲ୍‌ଗୁନୀ ପୂର୍ଣ୍ଣିମାର ଦୋଳ ଛଅ ସହସ୍ର ବର୍ଷ ଅତୀତର ସାକ୍ଷୀ, ଚୈତ୍ର ପୂର୍ଣ୍ଣିମାର ଦୋଳ ଏହାର ଦୁଇ ସହସ୍ର ବର୍ଷ ପୂର୍ବର । ସେ ନିଜ ମତର ପ୍ରମାଣ ଖୋଜି ଲେଖିଛନ୍ତି- ''ଚୈତ୍ର ପୂର୍ଣ୍ଣିମାରେ ଉତ୍ତରାୟଣ ଓ ଆଶ୍ୱିନ ପୂର୍ଣ୍ଣିମାରେ ଦକ୍ଷିଣାୟଣ ଆରମ୍ଭ ହେଉଥିଲା । ଆମେ ଆଶ୍ୱିନ ପୂର୍ଣ୍ଣିମାରେ କୋଜାଗରୀ ଲକ୍ଷ୍ମୀପୂଜା କରି ସେହି ସ୍ମୃତି ପାଳନ କରୁଛୁ । ସେ ସମୟରେ ବର୍ଷାରମ୍ଭ ହୁଏ । ଦିଗ୍ଗଜ ଏଥିପାଇଁ ଲକ୍ଷ୍ମୀଙ୍କୁ ସ୍ନାନ କରାଏ । ଗଜଲକ୍ଷ୍ମୀ ପ୍ରତିମାର ଦୁଇ ପାଖରେ ଦୁଇଟି ହାତୀ ଶୁଣ୍ଢ ଦ୍ୱାରା ଘଟ ଧରି ଲକ୍ଷ୍ମୀଙ୍କ ଶିରରେ ଜଳ ବୃଷ୍ଟି କରୁଥିବାର ଦେଖାଯାଏ । କାଳ ସ୍ରୋତ ପ୍ରବାହିତ ହୋଇ ଚାଲିଲା, ଉତ୍ତରାୟଣ ଆରମ୍ଭ ଫାଲ୍‌ଗୁନୀ ପୂର୍ଣ୍ଣିମାରୁ ପଛେଇ ଯାଇ ମାଘୀ ପୂର୍ଣ୍ଣିମାକୁ ଆସିଲା । ଖ୍ରୀ:ପୂ: ୨୫୦୦ ଅବ୍ଦର କଥା । ପ୍ରଥମେ ମଘାରେ ଦୃଶ୍ୟ ହୋଇ, ପରେ କୃତ୍ରିମ ମଘାର ପୂର୍ଣ୍ଣିମା ଧରାଗଲା । ଏପରି ଉତ୍ତରାୟଣୀ ମାଘୀ ପୂର୍ଣ୍ଣିମା ଖ୍ରୀ:ଅ: ୩୧୯ ପର୍ଯ୍ୟନ୍ତ ଥିଲା । ସେହି ସମୟରେ ଛଅମାସ ପରେ ଶ୍ରାବଣୀ ପୂର୍ଣ୍ଣିମାରେ ଦକ୍ଷିଣାୟନ ହେଲା । ହିନ୍ଦୋଳ ତାର ସ୍ମୃତି, ଉତ୍ତରାୟଣର ମାସକ ପରେ ବସନ୍ତ ଆସେ । ମାଘୀ ପୂର୍ଣ୍ଣିମାରେ ଉତ୍ତରାୟଣ । ଅତଏବ ଫାଲ୍‌ଗୁନୀ ପୂର୍ଣ୍ଣିମାରେ ବସନ୍ତ ପ୍ରବେଶ । ଏପରି ଏହି ପୂର୍ଣ୍ଣିମା ବସନ୍ତ ପୂର୍ଣ୍ଣିମା ସତ୍ୟ, କିନ୍ତୁ ଫାଲ୍‌ଗୁନୀ ପୂର୍ଣ୍ଣିମାରେ ବିଷ୍ଣୁଙ୍କର ଦୋଳ ଓ ନବ ବର୍ଷାରମ୍ଭ । ସେ ଦିନ ମଦନୋତ୍ସବ ହୋଇ ନପାରେ । ଚନ୍ଦ୍ର ୨୭ ଦିନ ପରେ ଫାଲ୍ଗୁନୀ ନକ୍ଷତ୍ରକୁ ଆସନ୍ତି । ସେ ଦିନ ଚୈତ୍ର ଶୁକ୍ଳ ତ୍ରୟୋଦଶୀ । ଏହି ଦିନ ମଦନଙ୍କର ପୂଜା ହୋଇଥିଲା । ସଂସ୍କୃତ ନାଟକରେ ମଦନୋତ୍ସବର ବର୍ଣ୍ଣନା ଅଛି । ହୋଲିକୁ ମଦନୋତ୍ସବ ବୋଲି ଗ୍ରହଣ କରିନେବା ଫଳରେ, କ୍ରମେ ମଦନ ପୂଜା ଅଜ୍ଞାତ ହୋଇଛି । ଏହିପରି ପରବର୍ତ୍ତୀ କାଳରେ ଦୋଳ ସହିତ ବସନ୍ତ ପ୍ରବେଶ ଜନିତ ଉତ୍ସବ ଓ ଆହୁରି ପରେ ମଦନୋତ୍ସବ ଯୁକ୍ତ ହୋଇଛି । ଦୋଳ ସମୟରେ ଲୋହିତରଙ୍ଗର ଫଗୁ ଲଗାଇ ଶାଳଗ୍ରାମ ସ୍ୱରୂପ ସବିତାଙ୍କର ଅଙ୍ଗ ଭୂଷିତ କରାଯାଏ । ଋଗ୍‌ବେଦ୍‌ରେ ସବିତା ହିରଣ୍ୟ ଦ୍ୟୁତି, ହିରଣ୍ୟ ପାଣି । ତାଙ୍କର ରଥ ହିରଣ୍ୟମୟ । ଶୀତକାଳରେ ବାଳରବି ଲୋହିତ ବର୍ଣ୍ଣ ଦିଶନ୍ତି । ଲୋହିତ ଚୂର୍ଣ୍ଣ ଦେଇ ତାହା ସ୍ଥାପିତ କରାଯାଏ । ଏହିପରି ଦୋଳୋତ୍ସବ ଫଲ୍‌ଗୁ ଉତ୍ସବ ହୋଇଛି । ବୋଧହୁଏ, ପିଚ୍‌କାରୀରେ ଲୋହିତ ଜଳ ନିକ୍ଷେପ ସବିତାଙ୍କର ହିରଣ୍ୟ ରଶ୍ମିର ଅନୁକରଣ ।''

ଦିନେ ବିଶ୍ୱାମିତ୍ର ଋଷି ଗାୟତ୍ରୀ ଛନ୍ଦରେ ସବିତାଙ୍କର ଧ୍ୟାନ କରିଥିଲେ । ଆଜି ସେହି ସବିତା ରୂପୀ ବିଷ୍ଣୁଙ୍କର ଦୋଳ ଉତ୍ସବ କାଳର ଗତିରେ ପରିବର୍ତ୍ତନର ପ୍ରଭାବ ବହନ କରି ଆମ ସମାଜରେ ଚାଲୁଛି । ତାରି ଭିତରେ ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି ସୁଦୂର ଅତୀତ ସହିତ ନିଜର ମନକୁ ଯୋଡ଼ି, ଶୁଣିଛନ୍ତି ଅତୀତର ଧ୍ୱନି ।

ଓଡ଼ିଶାର ପ୍ରାଚୀନ ସ୍ମୃତିକାର ଶତାନନ୍ଦାଚାର୍ଯ୍ୟ (୧୧ଶ ଶତାବ୍ଦୀ)ଙ୍କ ଶତାନନ୍ଦ ସଂଗ୍ରହରେ ଅଛି -

ଫାଲ୍‌ଗୁନେ ପୌର୍ଣ୍ଣମାସ୍ୟାଂତୁ କାର୍ଯ୍ୟ ଫଲ୍‌ଗୁ ମହୋତ୍ସବଃ

ଗୋବିନ୍ଦ ଦୋଳୟା କ୍ରୀଡ଼ତ୍ ଅର୍ଯ୍ୟମଣି ଗତେ ବିଧୌ

ଓଡ଼ିଶାରେ ବହୁଳ ପ୍ରଚାରିତ ପଦ୍ମପୁରାଣରେ ଅଛି -

ବିଶେଷତଃ କଳିଯୁଗେ ଦୋଳୋତ୍ସବ ବିଧୀୟତେ

+ + +

ପୂଜୟେତ୍ ବିଧିବତ୍ ଭକ୍ତ୍ୟା ଫଲ୍‌ଗୁ ଚୂର୍ଣ୍ଣେ ଚତୁର୍ବିଧୈଃ

ସିତ ରକ୍ତ ଗୌରପୀତୋ କର୍ପୂରାଦି ବିମିଶ୍ରି ତୈଃ

ବାତ୍ସାୟନ ମଧ୍ୟ କାମସୂତ୍ରରେ ଫାଲ୍‌ଗୁନ ପୂର୍ଣ୍ଣିମାରେ ରଙ୍ଗକ୍ରୀଡ଼ା ସଂପର୍କରେ ଉଲ୍ଲେଖ କରିଛନ୍ତି । ଉପେନ୍ଦ୍ରଭଞ୍ଜ ଲାବଣ୍ୟବତୀ କାବ୍ୟରେ ବସନ୍ତ ଆଗମନରେ ଦେବତାଙ୍କର ଚର୍ଚ୍ଚରୀ ଏବଂ ଲାବଣ୍ୟବତୀ ଓ ସହଚରୀମାନଙ୍କର ରଙ୍ଗକ୍ରୀଡ଼ାର ଚମତ୍କାର ବର୍ଣ୍ଣନା କରିଛନ୍ତି । କିନ୍ତୁ, ଅଚ୍ୟୁତାନନ୍ଦଙ୍କ ବାରମାସୀ କୋଇଲିରେ ଏହି ପର୍ବକୁ ଗୋପରେ ଶ୍ରୀକୃଷ୍ଣଙ୍କ ଫଗୁଖେଳ ଭାବରେ ବର୍ଣ୍ଣନା କରି ଲେଖାଯାଇଛି :

ଫଗୁଣ ମାସରେ ଦୋଳ ଗୋବିନ୍ଦ

ଫଗୁ ଖେଳୁଛନ୍ତି ପରମାନନ୍ଦ

ଅବିର ସଙ୍ଗେ ଝାଳେରି ମିଶାଇ

ଫଗୁ ଖେଳୁଛନ୍ତି ଯଦୁ ଗୋସାଇଁ, ମୋ କାହ୍ନୁରେ ।

ସେହିପରି ସମ୍ବଲପୁର ଅଞ୍ଚଳରେ ଡାଲଖାଇ ଗୀତରେ ସୁଦ୍ଧା ରାଧାମାଧବଙ୍କ ଫଗୁଖେଳର ବର୍ଣ୍ଣନା ଅଛି -

ଫଗୁଣ ମାସରେ ଫଗୁ ଯାତରା ।
ଫଗୁ ଖେଳୁଥିବେ ରାଧା ମାଧବ
ଫଗୁ ଗୁଣ୍ଡିରେ କର୍ପୂର ମିଶାଇ
ଫଗୁ ଖେଳୁଥିବେ ଦୂତିକା ଆନନ୍ଦ ହୋଇକି ତାଳଖାଇରେ ।

ଓଡ଼ିଶାରେ ମାନ୍ୟତା ପାଇଥିବା ବିଶ୍ୱାସ ଅନୁସାରେ ଜଗନ୍ନାଥ ରଥରେ ବାମନ, ଦୋଳରେ ଦୋଳଗୋବିନ୍ଦ, ଚାପ (ଚନ୍ଦନ ଯାତ୍ରା)ରେ ମଧୁସୂଦନ ରୂପରେ ବିରାଜମାନ କରନ୍ତି । ଏହି ସମୟରେ ଓଡ଼ିଶାର ଗୋପାଳମାନେ ଲଉଡ଼ି ଖେଳନ୍ତି । ସେମାନଙ୍କ ଓଗାଳ ବା ପ୍ରଶ୍ନ ଉତ୍ତର ସମ୍ବଳିତ ପଦମାନ ବଡ଼ ଚମତ୍କାର । ନୃତ୍ୟରଙ୍ଗ ସହ ତାହା ଗାନକରି ଲଉଡ଼ି ଖେଳ ଖେଳିଥାନ୍ତି । ସେଥିରେ ଅଛି, ରାଧା ପୂର୍ବ ଜନ୍ମରେ ବର ମାଗିଥିଲେ ଯେ, ''ଏହି ଫଗୁଣରେ ଦୋଳ ଗୋବିନ୍ଦ ବୋଲାଇ, ଫଗୁ ଖେଳୁଥିବା - ଆମ୍ଭେ ଚଉ ଦୋଳେ ଥାଇ'' ।

ଦୋଳ ଉତ୍ସବରେ ଗୋରୁବନ୍ଦାଣ ଓ ଲଉଡ଼ି ଖେଳ ଗୋପାଳ ଜାତିର ସ୍ୱାଭିମାନ ଓ ଗୌରବ ପ୍ରକାଶର ଉତ୍ସବ । ସେମାନଙ୍କ ଲମ୍ବବାଡ଼ି, ଶିକା, ବାହୁଙ୍ଗୀ ଆଦିର ମଧ୍ୟ ମହିମାମୟ ଇତିହାସ ଅଛି । ଶଙ୍ଖ, ବଂଶୀ, ଶିଂଘା ବାଦନ ଭିତରେ ବାଡ଼ିଖେଳ ହୁଏ । ଗୋପାଳ ଓଗାଳରେ ଅଛି -

କାଛଟା ଦେଲେ ପାବନୀ ଗଣେଶ ଘାଗୁଡ଼ି
ମହାଦେବ ଦେଲେ ଯେ ତୁମ୍ଭକୁ ଲମ୍ବବାଡ଼ି
ଶିକା ବାହୁଙ୍ଗୀ ସାବିତ୍ରୀ ଦେଲେ ତୋଷ ହୋଇ
ମଙ୍ଗଳ ନିମନ୍ତେ ଜାମୁଡ଼ାଳ ଆଉଁ ବହି
ବାରଗୁଣେ ଖେଳୁ ଆମ୍ଭେ ଷୋଳଗୁଣେ ନୃତ୍ୟ
ଗୋଷ୍ଠୀରେ ବସିଲେ ଜପୁ ଶ୍ରୀଗୋପାଳ ମନ୍ତ୍ର ।

ଜଣେ ଜଣେ ଦଳପତିଙ୍କ ନେତୃତ୍ୱରେ ଗୋପାଳମାନେ ନୂଆ ଲୁଗା ପିନ୍ଧି ଦଳ ଦଳ ହୋଇ, ହାତରେ ଛୋଟ ଛୋଟ ବାଡ଼ି ଧରି, ତାଳଦେଇ ବାଡ଼ିକୁ ବାଡ଼ିରେ ବଜାଇ ଗୀତ ଗାଇ ଗାଇ ଯିବାର ଦୃଶ୍ୟ ଏବଂ ଗାଁ ଦୋଳମଣ୍ଡପ ପରିକ୍ରମା କରି ଦୋଳିରେ ବିଜେ କରିଥିବା ଠାକୁରଙ୍କୁ ଦର୍ଶନ କରିବା ପରେ

ନଗର ଜନପଦରେ ବାଡ଼ିଖେଳି ଖେଳିକା ଯିବାର ଦୃଶ୍ୟ ବଡ଼ ମନୋରମ । ଏହି ଲଉଡ଼ି ଖେଳରେ ପ୍ରଶ୍ନୋତ୍ତର ମୂଳକ 'ଓଗାଳ' ଛଡ଼ା ରାଧାକୃଷ୍ଣଙ୍କ ଲୀଳା ବିଷୟକ ଗୀତ ମଧ୍ୟ ଗାନ କରାଯାଏ ।

ଉପରେ ଦୋଳକୁ ନବ ବର୍ଷ ପର୍ବ ବୋଲି ଯୋଗେଶ ବାବୁଙ୍କ ମତ ଉଦ୍ଧାର କରି ଯାହା କୁହାଯାଇଛି, ତାହା ଦୋଳବେଦୀରେ ନାୟକ ବା ଜ୍ୟୋତିଷଙ୍କର ନୂଆ ପାଞ୍ଜିପାଠ ଓ ବିଲବାଡ଼ିରେ ହଳିଆ ଭାବରେ ବାର୍ଷିକ ନିଯୁକ୍ତି ପାଇଥିବା ଶ୍ରମଜୀବୀଙ୍କ ବାର୍ଷିକ ଚୁକ୍ତି ଅନୁସାରେ ଟଙ୍କା କଉଡ଼ି ଦିଆନିଆ କିମ୍ବା ପୁରୁଣା ମାଲିକଙ୍କୁ ଛାଡ଼ି ନୂଆ ମାଲିକଙ୍କ ସହ ଚୁକ୍ତ କରିବାରୁ ଅନୁଭବ କରାଯାଏ ।

ସ୍ୱର୍ଗର ଦେବତା ଓ ମର୍ତ୍ତ୍ୟର ମନୁଷ୍ୟଙ୍କ ଭିତର ସାମାଜିକତା ବା ସମ୍ପର୍କର ଅଭିନୟ ଏହି ପର୍ବର ଗୋଟିଏ ଚିତ୍ତାକର୍ଷକ ଦିଗ । ଭକ୍ତ ତ ତାର ଭକ୍ତି ବା କାମନା ଘେନି ମନ୍ଦିର ଦର୍ଶନକୁ ଯାଏ, ଦେବତା ବି ଅନ୍ତତଃ ବର୍ଷରେ ଥରେ ମନ୍ଦିର ଭିତରୁ ବାହାରି ଭକ୍ତ ଦୁଆରକୁ ଆସନ୍ତି । ଏହା ଦୋଳ ଲୀଳାର ଗୋଟିଏ ଅଙ୍ଗ ।

ଗ୍ରାମ ଦେବତା ରାଧାକୃଷ୍ଣ ବା ହରପାର୍ବତୀ ଦୋଳ ବେଦୀକୁ ଯିବା ପୂର୍ବରୁ ଗ୍ରାମର ପ୍ରତ୍ୟେକ ଭକ୍ତଙ୍କ ଘରକୁ ଫଗୁ ଦଶମୀରୁ ଚତୁର୍ଦ୍ଦଶୀ ମଧ୍ୟରେ ଚାଚେରୀ ବିଜେ କରନ୍ତି । ଦିଅଁଙ୍କୁ ଚଉଦୋଳ ବା ବିମାନରେ ବସାଇ ଛତି, ତ୍ରାସ, ଆଡ଼େଣି ସହିତ ଶୋଭାଯାତ୍ରାରେ ଘଣ୍ଟ ଘଣ୍ଟା ବଜାଇ ବଜାଇ ମଶାଲ ଧରି ଏବଂ ସେଥିରେ ଝୁଣା ଛିଞ୍ଚି ଛିଞ୍ଚି ଦ୍ୱାର ଦ୍ୱାର ନେବାର ଦୃଶ୍ୟ ଫାଲ୍‌ଗୁନର ସଂଧ୍ୟାକୁ ଅପୂର୍ବ ମହିମା ପ୍ରଦାନ କରେ । ଗୃହସ୍ଥମାନେ ଦେବତାଙ୍କ ସମ୍ମାନାର୍ଥେ ଦାଣ୍ଡ ବା ଦାଣ୍ଡପିଣ୍ଡା ଗୋବରରେ ଲିପାପୋଛା କରି ରଖିଥାନ୍ତି । ବିମାନ ପହଞ୍ଚିବାମାତ୍ରେ ନୂଆ ବାଉଁଶ ଚାଙ୍ଗଡ଼ା ବା ଡାଲାରେ ସଜଡ଼ା ହୋଇଥିବା ଭୋଗ ବଢ଼ାହୁଏ । ଖଇ, ଉଖୁଡ଼ା ଚଣା ବିଭିନ୍ନ ପ୍ରକାରର ଖଜା, ସାକର, ଫେଣି, ପାଚିଲା କଦଳୀ ସହିତ ଆମ୍ବ କଷି ମଧ୍ୟ ଭୋଗଡାଲାରେ ବଢ଼ାଯାଇଥାଏ । ପୁଣି ସେଥିରେ ଠାକୁରଙ୍କ ପାଇଁ ଫଗୁ ପୁଡ଼ିଆଟିଏ ମଧ୍ୟ ରଖାଯାଇଥାଏ । ବିମାନ ସହିତ ଆସିଥିବା ଭକ୍ତମାନେ ହାତରେ ଫଗୁମୁଣା ଧରିଥାନ୍ତି । ସେମାନେ ସମସ୍ତଙ୍କଠାରେ ଠାକୁରଙ୍କ ଆଶୀର୍ବାଦର ଚିହ୍ନ ସ୍ୱରୂପ ଫଗୁ ବୋଳିଦିଅନ୍ତି । ଗାଁ ଆମ୍ବ ତୋଟା ଦେଇ ବହି ଆସୁଥିବା ଦକ୍ଷିଣା ପବନ ଏହି ସାନ୍ଧ୍ୟ ପରିବେଶକୁ ମଧୁରତର କରେ । ଫଗୁ

ଦଶମୀରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ସ୍ଥାନେ ସ୍ଥାନେ ନାମ ସଂକୀର୍ତ୍ତନ ଏପରି ପବିତ୍ର ପରିବେଶ ସୃଷ୍ଟି କରେ ଯେ, ମନେ ହୁଏ ସତେ ଯେପରି ଦେବତା କିଛି ସମୟ ପାଇଁ ମର୍ତ୍ତ୍ୟକୁ ଓହ୍ଲାଇ ଆସୁଛନ୍ତି । ପୂର୍ଣ୍ଣିମା ବାସିଠାରୁ ଭିନ୍ନ ଭିନ୍ନ ତିଥିରେ ଗୋଟିଏ ଗୋଟିଏ ଗ୍ରାମରେ ଆରମ୍ଭ ହୋଇଯାଏ ଦୋଳ ମେଳଣ । ଆଜିକାଲିକା ସହର ବଜାରର ନୂଆ ଢ଼ଙ୍ଗର ହୋଲି ଖେଳଠାରୁ ଏହି ପାରଂପାରିକ ଫଗୁଖେଳର ଅନୁଭବ ନିଆରା ।

ପୁରୀ ଶ୍ରୀ ଜଗନ୍ନାଥ ମନ୍ଦିରରେ ଫାଲ୍‌ଗୁନ ଶୁକ୍ଳ ଦଶମୀଠୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଦୋଳ ଯାତ୍ରା ପାଳନ କରାଯାଏ । ପ୍ରତି ଦିନ ସନ୍ଧ୍ୟା ଧୂପ ପରେ ପଞ୍ଚପାଣ୍ଡବ (ଲୋକନାଥ, ଯମେଶ୍ୱର, ମାର୍କଣ୍ଡେଶ୍ୱର, ନୀଳକଣ୍ଠେଶ୍ୱର, କପାଳମୋଚନ) ସିଂହଦ୍ୱାର ଠାରେ ଏକତ୍ର ହୁଅନ୍ତି ଏବଂ ଜଗନ୍ନାଥଙ୍କ ପ୍ରତିନିଧି ଭାବରେ ଗୋବିନ୍ଦ, ଶ୍ରୀଦେବୀ ଓ ଭୂଦେବୀଙ୍କ ସହିତ ବିମାନରେ ବସି ସେଠାକୁ ଆସନ୍ତି । ଏହି ଦେବତାମାନେ ମିଳିତ ହୋଇ ଗୀତ, ବାଦ୍ୟ, ଆଲଟ, ଚାମର ସହ ମହାଆଡ଼ମ୍ବରରେ ଜଗନ୍ନାଥ ବଲ୍ଲଭ ମଠ ପର୍ଯ୍ୟନ୍ତ ଯାତ୍ରା କରନ୍ତି ଓ ସେଠାରୁ ମନ୍ଦିରକୁ ବାହୁଡ଼ନ୍ତି । ତ୍ରୟୋଦଶୀ ପର୍ଯ୍ୟନ୍ତ ଜଗନ୍ନାଥ ବଲ୍ଲବ ମଠରେ ଦୋଳ ଉତ୍ସବ ଅନୁଷ୍ଠିତ ହୁଏ । ଚତୁର୍ଦ୍ଦଶୀ ଦିନ ମଧ୍ୟାହ୍ନ ଧୂପ ପରେ ଚାବେରି ବେଶ ଓ ଚାଚେରି ଧୂପ ବିଧି ପାଳିତ ହୁଏ । ପଞ୍ଚୋପଚାରରେ ପୂଜା ହୁଏ । ମୁଦିରସ୍ତ ବା ମୁଦ୍ରହସ୍ତ (ଗଜପତିଙ୍କ ପ୍ରତିନିଧି) ଶ୍ରୀବିଗ୍ରହଙ୍କ ନିକଟରେ ଶୁକ୍ଳ ଅବିର ସମର୍ପଣ । ବନ୍ଦାପନା କରନ୍ତି । ଏହାପରେ ଦୋଳଗୋବିନ୍ଦ ଶ୍ରୀଦେବୀ ଭୂଦେବୀ ଲକ୍ଷ୍ମୀ ମନ୍ଦିରକୁ ପଲଙ୍କରେ ଯାଆନ୍ତି । ଲକ୍ଷ୍ମୀ - ନାରାୟଣଙ୍କ ଅବିର ଖେଳ ହୁଏ । ଦେବଦାସୀ ଲକ୍ଷ୍ମୀଙ୍କ ପକ୍ଷରୁ ମୁଦ୍ରହସ୍ତ ନାରାୟଣଙ୍କ ସହ ଫଗୁ ଖେଳନ୍ତି ।

ପୂର୍ଣ୍ଣିମା ଦିନ ଦୋଳ ବେଦୀକୁ ସୁସଜ୍ଜିତ କରାଯାଇଥାଏ । ଗୋବିନ୍ଦ, ଶ୍ରୀଦେବୀ ଓ ଭୂଦେବୀଙ୍କ ସହିତ ହାତୀଦାନ୍ତ ଖଚିତ ଦୋଳିରେ ବିରାଜମାନ କରନ୍ତି । ସେମାନଙ୍କ ଠାରେ ଫଗୁ ଲାଗି ହୁଏ । ଭୋଗ ଓ ଆମ୍ବକଷି ବଢ଼ାଯାଏ । ଏହାପରେ ଗୋବିନ୍ଦ ଶ୍ରୀଦେବୀ ଓ ଭୂଦେବୀଙ୍କ ସହିତ ଏବଂ ପଞ୍ଚପାଣ୍ଡବ ଯେ ଯାହା ବିମାନରେ ମନ୍ଦିରକୁ ଫେରନ୍ତି । ଶ୍ରୀମନ୍ଦିରରେ ଏହି ଉତ୍ସବ ରାମାନୁଜ (ଖ୍ରୀ:ଅ: ୧୨ଶ ଶତାବ୍ଦୀ)ଙ୍କ ସମୟରେ ପ୍ରବର୍ତ୍ତିତ ହୋଇଥିଲା ବୋଲି ଅନୁମାନ କରାଯାଏ ।

ଦୋଳବେଦୀର ଅଗ୍ନେୟ କୋଣରେ ମେଷା ମନ୍ଦିର (ମେଣ୍ଢା କୁଡ଼ିଆ) ନଡ଼ା, ବାଉଁଶରେ ତିଆରି ହୋଇଥାଏ । ସେଠାରେ ମେଷା ମନ୍ଦିର ଦାହକୃତ୍ୟ ସଂପନ୍ନ ହୁଏ । ବିଷ୍ଣୁ ଓ ଶିବଙ୍କ ଶରୀର ସମ୍ଭୂତ ଅଗ୍ନିରେ ମେଷା ଓ ତା'ର ମନ୍ଦିର ଦଗ୍ଧ କରାଯାଇଥିଲା ବୋଲି ଅଗ୍ନି ସଂଯୋଗ ମନ୍ତ୍ରରେ ସୂଚିତ ହୋଇଛି । ପୁରୀର ଏହି ପରମ୍ପରା ଅନୁସାରେ ଓଡ଼ିଶାରେ ଅନ୍ୟତ୍ର ମଧ୍ୟ ଏହିପରି ଦୋଳଯାତ୍ରା ଓ ମେଣ୍ଢାକୁଡ଼ିଆ ପୋଡ଼ି ଉତ୍ସବ ପାଳନ କରାଯାଇଥାଏ ।

ମଣିଷ ରୋଗମୁକ୍ତ ସମାଜ କାମନା କରେ । ଗୋଟିଏ ନୀରୋଗ ଓ ସୁଖୀ ସମାଜ ହିଁ ଉତ୍ସବର ଆୟୋଜନ ଓ ଅନୁଷ୍ଠାନ କରିପାରିବ ଏବଂ ତାହା ଉପଭୋଗ କରିପାରିବ । ଏହା ମେଷା ଓ ମେଷା ମନ୍ଦିର ଦାହକୃତ୍ୟ ସହିତ ସଂପୃକ୍ତ ଉପାଖ୍ୟାନ (ମିଥ୍)ରୁ ଲକ୍ଷ୍ୟ କରାଯାଏ । ଏଥିରେ ଅଛି, ଦେବତାମାନେ ଶ୍ରୀକୃଷ୍ଣ, ରାଧା ଓ ଗୋପୀମାନଙ୍କ ପାଇଁ ବ୍ରଜପୁରରେ ବସନ୍ତ ଉତ୍ସବ ଆୟୋଜନ କରିଥିଲେ । ମେଷାସୁର (ମେଢ଼ାସୁର) ମାୟାବଳରେ ବିସ୍ଫୋଟକ ପ୍ରଭୃତି ନାନା ରୋଗର ଜୀବାଣୁ ସୃଷ୍ଟି କରି ଏହି ଉତ୍ସବକୁ ପଣ୍ଡ କରିବା ଅଭିପ୍ରାୟରେ ଦେବତା, ଋଷି, ଯାଦବମାନଙ୍କୁ ଯନ୍ତ୍ରଣା ଦେଲା । ସେମାନଙ୍କ ମନର ଆନନ୍ଦ ଓ ଉତ୍ସାହକୁ ନଷ୍ଟ କରି ଉତ୍ସବରେ ଅଂଶ ଗ୍ରହଣ କରିବାର ସୁଯୋଗରେ ବିଘ୍ନ ଘଟାଇଲା । ଶ୍ରୀକୃଷ୍ଣ ଏହା ଲକ୍ଷ୍ୟ କରି ପଞ୍ଚପାଣ୍ଡବ ଓ ଅନ୍ୟ ଦେବତାଙ୍କୁ ସାଙ୍ଗରେ ଘେନି ଫାଲ୍‌ଗୁନ ଶୁକ୍ଳ ଦଶମୀ ଦିନ ଚର୍ଚ୍ଚରୀ ଯାତ୍ରା କଲେ । ନାନା ଭେଷଜ ଚୂର୍ଣ୍ଣରେ ଫଲ୍‌ଗୁ ପ୍ରସ୍ତୁତ କରି ନାନା ରୋଗର ଜୀବାଣୁ ନାଶ କରିବାକୁ ତାହାକୁ ବାୟୁରେ ଉଡ଼ାଇ ଉଡ଼ାଇ ମେଷା ରହୁଥିବା ସ୍ଥାନ ପର୍ଯ୍ୟନ୍ତ ଗଲେ । ସେଠାରେ ଶିବ ଓ ବିଷ୍ଣୁ ନିଜ ନିଜ ଶରୀରରୁ ଅଗ୍ନି ଜାତ କରାଇ, ସେଥିରେ ମେଷାସୁରକୁ ଦଗ୍ଧ କଲେ । ଆଜିର ମେଷା ଗୃହ ଦାହ ସେହି ସ୍ମୃତି ବହନ କରିଛି ବୋଲି ଏହି କଥାକୁ ବିଶ୍ୱାସ କରୁଥିବା ଲୋକେ କହନ୍ତି । ପୁଣି ଏହା ସହିତ ହୋଲିକା ରାକ୍ଷସୀ ପ୍ରହ୍ଲାଦକୁ କୋଳରେ ଧରି ଅଗ୍ନିରେ ପ୍ରବେଶ କରି ଦଗ୍ଧ ହେବା ଏବଂ ପ୍ରହ୍ଲାଦ ନିଜ ପବିତ୍ରତା ଓ ପୁଣ୍ୟ ପାଇଁ ଏହି ପାପ ପ୍ରୟାସରୁ ବର୍ତ୍ତିଯିବା କଥା ଏବଂ କାମଦେବ ମହାଦେବଙ୍କ ତପୋ ଭଙ୍ଗ ପାଇଁ ଅପଚେଷ୍ଟା କରି ନିଜେ ହରକୋପାନଳରେ ଦଗ୍ଧ ହୋଇଯିବା କଥା, ବୈରାଗ୍ୟର ଅଗ୍ନିରେ କାମ ଭାବନା ଦଗ୍ଧ ହେବାର ସ୍ମୃତି, ଏହି ଅଗ୍ନି ଉତ୍ସବ ସହିତ ଜଡ଼ିତ ବୋଲି ଆଉ ଦୁଇଟି ପୌରାଣିକ ଉପାଖ୍ୟାନ (ମିଥ୍)ରୁ ଜଣାଯାଏ । କେତେକ ବିଦ୍ୱାନଙ୍କ ମତରେ ଏହି ''ମିଥ୍''

ବା ପୁରାଣ କଥା ଗୁଡ଼ିକ ଦୋଳ ଉତ୍ସବ ପ୍ରବର୍ତ୍ତିତ ହେବାର ବହୁ ପରେ ବିଭିନ୍ନ ସମୟରେ ଜନମାନସରେ କଳ୍ପିତ ଅଥବା ରୋପିତ ହୋଇଛି । ତଥାପି ଏଥିମଧ୍ୟରେ ଯେଉଁ ବାର୍ତ୍ତା ନିହିତ ଅଛି, ତାହା ପ୍ରଣିଧାନ ଯୋଗ୍ୟ । ପ୍ରତ୍ୟେକ ପର୍ବର ବିଧି ବିଧାନ ଓ ପରମ୍ପରାର ଅନ୍ତରାଳରେ ରହିଛି, ତାହା ପ୍ରଥମେ ପ୍ରବର୍ତ୍ତିତ ହୋଇଥିବା ସମୟର ସ୍ୱର । ପୁଣି ତାର ଅବିକଳ ଅନୁବର୍ତ୍ତନ ଅଥବା ସେଥିରେ କିଛି ପରିବର୍ତ୍ତନ ବା ସଂସ୍କାର କରି, ତାହା ପାଳନ କରିଆସୁଥିବା ସମାଜର ସ୍ୱଭାବକୁ ମଧ୍ୟ ସେଥିରୁ ବୁଝିହୁଏ ।

-୦-

